# ବିଜ୍ଞାନ ଯୁଗରେ ଧର୍ମଯାତ୍ରା

ଡକ୍ଟର ନିଖିଳାନନ୍ଦ ପାଣିଗ୍ରାହୀ



# ବିଜ୍ଞାନ ଯୁଗରେ ଜୀବନ ଯାତ୍ରା

ଡକ୍ଟର ନିଖିଳାନନ୍ଦ ପାଣିଗ୍ରାହୀ
*ପ୍ରାଧ୍ୟାପକ, ପଦାର୍ଥ ବିଜ୍ଞାନ*

*ପ୍ରକାଶକ :*
**ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ**
ବିନୋଦ ବିହାରୀ, କଟକ-୨

**ବିଜ୍ଞାନ ଯୁଗରେ ଜୀବନ ଯାତ୍ରା**

**(ପ୍ରବନ୍ଧ ସଂକଳନ)**

*ଲେଖକ:*

ଡକ୍ଟର ନିଖିଳାନନ୍ଦ ପାଣିଗ୍ରାହୀ
ପ୍ରଥମ ଚନ୍ଦ୍ରପ୍ରଭା ସାହି
ଉତ୍କଳ ଆଶ୍ରମରୋଡ୍ (ବ୍ରହ୍ମପୁର-୭୬୦୦୧)

*ପ୍ରକାଶକ :*

ଶ୍ରୀ ଗଙ୍ଗାଧର ତ୍ରିପାଠୀ
**ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ**
ବିନୋଦ ବିହାରୀ, କଟକ - ୨

*ପ୍ରଚ୍ଛଦ:*

ବିଜୟ ପ୍ରଧାନ

*ମୁଦ୍ରଣ:*

ସଂଗୀତା ପ୍ରିଣ୍ଟର୍ସ, କଟକ

*ପ୍ରଥମ ପ୍ରକାଶ: ୨୦୦୧*

*ମୂଲ୍ୟ :* ଟ. ୪୫.୦୦

**BIGYANA JUGARE JIBANA JATRA**

***Writer :***

Dr. Nikhilananda Panigrahi
Pratham Chndra Prava Sahi
Utkal Ashram Road (Bramhapur - 76001)

***Publisher :***

Sri Gangadhar Tripathy
**PRACHI SAHITYA PRATISTHAN**
Binod Behari, Cuttack - 2

***Printed at :***

Sangita Printers, Cuttack

***Designed by :***

B. Pradhan

***First Edition :*** 2001

***Price :*** Rs. 45.00

# ସମର୍ପଣ

ଏଇ ପୁସ୍ତକଟି ସେଇ ଦାର୍ଶନିକମାନଙ୍କୁ ସମର୍ପିତ, ଯେଉଁମାନେ ସାଂପ୍ରତିକ ଯୁଗରେ ମଣିଷର ଜୀବନ ଯାତ୍ରା କେବଳ ବିଜ୍ଞାନ ଦ୍ୱାରା ବୁଝାଇ ହେବ ବୋଲି ସ୍ଥିର କରିବାରେ ଚେଷ୍ଟିତ ଥିବାବେଳେ ଅଣନିଃଶ୍ୱାସୀ ହୋଇ ସ୍ୱର୍ଗତ ହୋଇଯାଇଛନ୍ତି ।

# ଅସଂଲଗ୍ନ ବ୍ୟକ୍ତିଗତ ପୃଷ୍ଠା

ମୋ ଲେଖକ ଜୀବନ ପ୍ରତି ସିଂହାବଲୋକନ କଲେ, ଯେଉଁ କେତେକ ବ୍ୟକ୍ତିଙ୍କ ନାମ ହଠାତ୍ ମନକୁ ଆସେ, ସେମାନେ ହେଉଛନ୍ତି:

ବାର୍ଟ୍ରାଣ୍ଡ ରସେଲ୍, କାଫ୍‌କା, କାମ୍ୟୁ, ବର୍ଣ୍ଣାଡ୍ ଶ'.... ଜବାହରଲାଲ ନେହେରୁ, ମୋହନ ଦାସ କରମଚାନ୍ଦ ଗାନ୍ଧୀ, ରବୀନ୍ଦ୍ର ନାଥ ଠାକୁର, ରାଜ କାପୁର... ମନୋଜ ଦାସ, ମହାପାତ୍ର ନୀଳମଣି ସାହୁ, ସହଦେବ ସାହୁ, ବୈଦ୍ୟନାଥ ମିଶ୍ର... (ତାଲିକା ଅସମାପ୍ତ)

ଏବଂ

ଗ୍ରନ୍ଥ ମଧ୍ୟରେ ରାମାୟଣ ଓ ମହାଭାରତ— ଯାହାକି ମତେ ପନ୍ଦର ବର୍ଷ ହେବା ପୂର୍ବରୁ ମୁଁ ଆମୂଳଚୂଳ ପଢ଼ି ସାରିଥିଲି...

# ସୂଚୀପତ୍ର



-୦-

# ଚର୍ମ ଚକ୍ଷୁ ଓ ପ୍ରଜ୍ଞା ନେତ୍ର

''ନାହିଁ ମାମୁଁଠାରୁ କଣା ମାମୁଁ ଭଲ'', ''କାଣୀ ବିରାଡ଼ିର କୁଜି ଅସରପା ଉପରେ ଟାଣ'', ''କାଣୀ ହେଲେ ବି କଟକିଆଣୀ'' ଇତ୍ୟାଦି ଯେଉଁ ବହୁବିଧ ପ୍ରବଚନମାନ ସୃଷ୍ଟି ହୋଇଛି ଏବଂ ଏମାନଙ୍କର ବ୍ୟବହାର ଯେପରି ଅଦ୍ୟାବଧି ଲୋକମାନଙ୍କ ଦ୍ୱାରା ବିନା ସଙ୍କୋଚରେ ପ୍ରଚଳିତ ହେଉଛି– ଏଥିଦ୍ୱାରା ହୁଏତ ଆମ ମନର ଭାବ ସ୍ପଷ୍ଟ, ସୁନ୍ଦର ତଥା ଆଳଙ୍କାରିକ ଭାବେ ପ୍ରକାଶିତ ହେଉଛି । କିନ୍ତୁ ଏଇ ସବୁ ପ୍ରବଚନ ମଧ୍ୟରେ ଗୋଟିଏ ବିଷୟ ପରୋକ୍ଷ ଭାବେ ନିଷ୍ଠୁରତା ସହିତ ଘୋଷିତ ହେଉଛି ଯେ, ଆମେ ଅନ୍ଧମାନଙ୍କୁ ଅତି ହେୟ ଦୃଷ୍ଟିରେ ଦେଖୁଛୁଁ ।

ବାସ୍ତବିକ ଆମ ମଧ୍ୟରେ କେତେକ ଲୋକ ଜାଣିଶୁଣି କିମ୍ବା ନିଜ ଅଜାଣତରେ ଅନ୍ଧମାନଙ୍କୁ ଘୃଣା କରୁଥିବାବେଳେ ଅନ୍ୟମାନେ ଦୟାଭାବ ପ୍ରଦର୍ଶନ କରିଥାନ୍ତି । କିନ୍ତୁ ଏହି ପ୍ରକାର ମନୋଭାବ ଦ୍ୱାରା ଆମେ ସେମାନଙ୍କ ଅନ୍ତର୍ନିହିତ ଶକ୍ତି ପ୍ରତି ଅବମାନନା କରୁଛୁ । ସେମାନଙ୍କୁ ଉପଯୁକ୍ତ ସମ୍ମାନ ଓ ସହାନୁଭୂତି ନ ଜଣାଇ ଆମେ ସେମାନଙ୍କ ଆତ୍ମବିଶ୍ୱାସ ପ୍ରତି କୁଠାରାଘାତ କରୁଛୁ । ଏହି ଶୋଚନୀୟ ପରିସ୍ଥିତିରେ ପରିବର୍ତ୍ତନ ଆଣିବା ପାଇଁ ନେତ୍ରହୀନ ବ୍ୟକ୍ତିମାନଙ୍କର କୃତିତ୍ୱ ପ୍ରତି ସର୍ବ ସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିବା ଉଚିତ ହେବ । ଅନ୍ଧମାନଙ୍କ ଅତୀତ ସଫଳତାର ବିବରଣୀକୁ ଦୃଷ୍ଟାନ୍ତ ଭାବେ ପ୍ରତିପାଦନ କଲେ, ଅନ୍ୟ ଦୃଷ୍ଟିହୀନଙ୍କ ଉତ୍ତରୋତ୍ତର ଉନ୍ନତି ହୋଇ ପାରିବ ଏବଂ ଏହା ଦ୍ୱାରା ସେମାନେ ଉପଯୁକ୍ତ ପ୍ରୋତ୍ସାହନ ପାଇବେ ବୋଲି ଆଶା କରାଯାଏ ।

୧୯୩୪ ମସିହାରେ ଲାହୋରରେ ଜନ୍ମିତ ବେଦ ମେହେଟ୍ଟା ମାତ୍ର ତିନି ବର୍ଷ ବୟସରେ ମାନେଞ୍ଜାଇଟିସ୍ ରୋଗରେ ଆକ୍ରାନ୍ତ ହୋଇ ଦୃଷ୍ଟିଶକ୍ତି ସଂପୂର୍ଣ୍ଣ ଭାବେ ହରାଇଥିଲେ । କିନ୍ତୁ ନିଜର ଅଦମ୍ୟ ଦୃଢ଼ତା ଯୋଗୁଁ ସେ ପ୍ରଥମେ ବ୍ରେଲ୍ ପଦ୍ଧତିରେ ଶିକ୍ଷା ଲାଭ କରି ପରବର୍ତ୍ତୀ ଅବସ୍ଥାରେ ଆମେରିକାର ପ୍ରସିଦ୍ଧ ପୋମୋନା କଲେଜ, ହାରଓ୍ୱାର୍ଡ଼ ବିଶ୍ୱବିଦ୍ୟାଳୟ ଓ ବ୍ରିଟେନ୍‌ର ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟରୁ ବିଭିନ୍ନ ଡିଗ୍ରୀ ହାସଲ କରିଥିଲେ । ଅଠରବର୍ଷ ବୟସ ହୋଇଥିବାବେଳେ ଯେଉଁ ବେଦ ମେହେଟ୍ଟା ଲକ୍‌ସ-ସାବୁନ କମ୍ପାନୀର ଏକ ଶବ୍ଦ ଧନ୍ଦା ପ୍ରତିଯୋଗିତାରେ ବିଜୟୀ ହେବା ପାଇଁ ବିଫଳ ହୋଇଥିଲେ, ସେ ୪୮ ବର୍ଷ ବୟସରେ ୨୩,୬୦୦ ଡଲାର ମୂଲ୍ୟର ମ୍ୟାକ୍ ଆର୍ଥର୍ ଫାଉଣ୍ଡେସନ ପୁରସ୍କାର ପାଇବାକୁ ଯୋଗ୍ୟ

ବିବେଚିତ ହୋଇ ପାରିଲେ । ଏଥିରେ ତାଙ୍କ ଦୀର୍ଘଦିନର କ୍ରମବର୍ଦ୍ଧିଷ୍ଣୁ କଠୋର ଅଧ୍ୟବସାୟର ଅକାଟ୍ୟ ପ୍ରମାଣ ମିଳେ ।

ଏହି ସୁପ୍ରତିଷ୍ଠିତ ସାହିତ୍ୟିକ ଓ ସାମ୍ବାଦିକଙ୍କ ସଂପର୍କରେ ସମାଲୋଚକମାନେ ମତ ଦେଇଛନ୍ତି, "ଆଖି ନଥିବା ବେଦ ମେହେଟ୍ଟାଙ୍କୁ ଆଜି ଅନ୍ଧ ବୋଲି କୁହାଯାଇ ନ ପାରେ । ଆଖି ନ ଥିଲେ ମଧ ସେ ଖୁବ୍ ଗଭୀରତା ଭିତରକୁ ଅନ୍ତର୍ଦୃଷ୍ଟିର ସହ ଦେଖି ପାରନ୍ତି । ଶୂନ୍ୟ ଆଖି ଦୁଇଟିକୁ ଛାଡ଼ିଦେଲେ, ସେ ନିଜର ଅନ୍ୟ ସବୁ ଇନ୍ଦ୍ରିୟକୁ 'ଦେଖିବା' ପାଇଁ ପ୍ରୟୋଗ କରନ୍ତି । ତାଙ୍କ ଦୃଷ୍ଟିର ତିନୋଟି ଅଙ୍ଗ ହେଉଛି– ଶ୍ରୁତି, ସ୍ମୃତି ତଥା ସ୍ପର୍ଶ । ସେ ନିଜର ସ୍ପର୍ଶ ଜନିତ ଅନୁଭବର ବିକାଶ ଏଭଳି ସାଧନ କରିଛନ୍ତି ଯେ, ପବନର ଶିହରଣରୁ ମଧ ସାମାନ୍ୟତମ ପରିବର୍ତ୍ତନ ମାପି ନେଇ ପାରନ୍ତି । ଏହା ତାଙ୍କ ସ୍ପର୍ଶ ଦୃଷ୍ଟି । ତାଙ୍କର ଶ୍ରବଣ-ଦୃଷ୍ଟି ମଧ ଏଭଳି ପ୍ରଖର ଯେ, ସ୍ୱର ଏବଂ ଶବ୍ଦର ଆରୋହ, ଅବରୋହ ଛନ୍ଦ-ଲୟ-ତାନକୁ ବେଶ୍ ସୂକ୍ଷ୍ମତାର ସହ ଦେଖିପାରେ ଏବଂ ସେ ନିଜ ମସ୍ତିଷ୍କକୁ ଏକ ନିଜସ୍ୱ କମ୍ପ୍ୟୁଟର ଭଳି ଗଢ଼ି ପାରିଛନ୍ତି । କେତେ ପାଦ ପରେ କେଉଁ ଦିଗରେ କ'ଣ ଅଛି, କିଏ ଅଛି, କେଉଁଠାରେ ଅଛି– ଏସବୁ ସେ ସ୍ପର୍ଶ-ଦୃଷ୍ଟି ଦ୍ୱାରା ଦେଖିପାରନ୍ତି... ସେ ନ୍ୟୁଅର୍କ୍‌ର ପ୍ରବଳ ଜନ-ସମାଗମ ଭିତରେ ଥାଆନ୍ତୁ କିମ୍ବା ଦିଲ୍ଲୀର ଗଳିମୋଡ଼ରେ ଚାଲୁଥାଆନ୍ତୁ– ଅନ୍ୟ ଅନ୍ଧମାନଙ୍କ ଭଳି ସେ କେବେ ଯଷ୍ଟିର ସାହାଯ୍ୟ ନିଅନ୍ତି ନାହିଁ କିମ୍ବା ବିଶେଷ ତାଲିମପ୍ରାପ୍ତ କୁକୁରକୁ ସାଙ୍ଗରେ ନିଅନ୍ତି ନାହିଁ । କୌଣସି ପୁରୁଷ କିମ୍ବା ସ୍ତ୍ରୀଙ୍କ କାନ୍ଧ ଉପରେ ହାତ ରଖି ଚାଲିବା, ଉଠିବା, ବସିବା ମଧ ସେ ପସନ୍ଦ କରନ୍ତି ନାହିଁ । ବେଳେ ବେଳେ ସେ ଝୁଣ୍ଟି ନ ଥିବେ-ଏକଥା ନୁହେଁ ! କିନ୍ତୁ ପ୍ରାୟ ନ ଝୁଣ୍ଟିବା ହିଁ ତାଙ୍କ ପକ୍ଷେ ସ୍ୱାଭାବିକ । ଯଦିବା କେବେ ସେ ଝୁଣ୍ଟି ପଡ଼ନ୍ତି, ତାଦ୍ୱାରା ତାଙ୍କର ମନୋବଳ ଓ ଶାରୀରିକ ବଳ ହ୍ରାସ ହୁଏ ନାହିଁ । ପ୍ରକୃତିର ଶିକାର ହୋଇ ଆଖି ହରାଇଥିବା ମଣଷମାନଙ୍କ ପାଇଁ ତଥା ପେଶାର ଗୋଲାମ ହୋଇ ଆଖି ଥାଉ ଥାଉ ଅନ୍ଧ ହୋଇ ଯାଉଥିବା ମଣିଷମାନଙ୍କ ପାଇଁ ସେ ଆଜି ଏକ ପ୍ରେରଣାର ପ୍ରତୀକ," (ସମାଜ, ରବିବାର – ୨୭/୩/୮୮)

ଏହି ପଂକ୍ତିମାନଙ୍କରେ ନେତ୍ରହୀନ ବେଦ ମେହେଟ୍ଟାଙ୍କ ସମେତ ମିଲଟନ୍, ହୋମେର, ସୁରଦାସ, ଭୀମଭୋଇ ଇତ୍ୟାଦି ମହାନ ବ୍ୟକ୍ତିଗଣ କିପରି ଅସାଧାରଣ କୃତିତ୍ୱର ଅଧିକାରୀ ହୋଇଛନ୍ତି, ସେ ସଂପର୍କରେ ଗୁପ୍ତ ରହସ୍ୟ ଉଦ୍‌ଘାଟିତ ହୋଇଛି । ଶ୍ରୀ ବେଦ ମେହେଟ୍ଟାଙ୍କ ଉପରୋକ୍ତ କାର୍ଯ୍ୟ ପ୍ରଣାଳୀ ଓ ମାନସିକ ପ୍ରକ୍ରିୟା ସମସ୍ତ ନେତ୍ରହୀନ ମହାପୁରୁଷଙ୍କ ଜୀବନୀର ମୂଳ ଅଧ୍ୟାୟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେମାନଙ୍କ ପ୍ରଜ୍ଞାନେତ୍ର ବା ତୃତୀୟଚକ୍ଷୁ ଆମ ସାଧାରଣ ଚର୍ମ-ନୟନଠାରୁ ମୌଳିକ ଭାବେ ପୃଥକ୍ ବୋଲି ଏଥିରୁ ସୂଚିତ ହୁଏ ।

ବେଦ ମେହେଟାଙ୍କ ପରି ସ୍ୱର୍ଗୀୟା ହେଲେନ୍ କେଲାର୍‌ଙ୍କ ବ୍ୟକ୍ତିତ୍ୱ ଅସହାୟ ଦୃଷ୍ଟିହୀନ ବ୍ୟକ୍ତିଙ୍କ ପାଇ ଉତ୍ସାହର ଉତ୍ସ ଖୋଲିଦେବ ବୋଲି ଆମେ ବିଶ୍ୱାସ କରୁଁ । ୧୮୮୦ ସାଲ ଜୁନ୍ ସତାଇଶି ତାରିଖରେ ସେ ଆଲବାମାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କୁ ମୋଟେ ଦେଢ଼ ବର୍ଷ ବୟସ ହୋଇଥିବା ବେଳେ ସେ ଗୁରୁତର ଭାବେ ଅସୁସ୍ଥ ହୋଇ ପଡ଼ିଲେ । ପରେ ଯେତେବେଳେ ସେ ଆରୋଗ୍ୟ ଲାଭ କଲେ, ସେ ସେତେବେଳେ କେବଳ ଶ୍ରବଣ ଶକ୍ତି ହରାଇଲେ ନାହିଁ, ଦୃଷ୍ଟିଶକ୍ତି ମଧ୍ୟ । ତେଣୁ ବେଦ ମେହେଟାଙ୍କଠାରୁ ସେ ଆହୁରି ଅଧିକ ଦୟନୀୟ ପରିସ୍ଥିତିରେ ପଡ଼ିଥିଲେ । ସାମାଜିକ ପ୍ରତିଷ୍ଠା ଲାଭ କରିବା ପାଇଁ ସେ କଠୋର ଜୀବନ-ସଂଗ୍ରାମର ସମ୍ମୁଖୀନ ହେଲେ । ଦୃଢ଼ ମନୋବଳ ଯୋଗୁଁ ତାଙ୍କୁ କୋଡ଼ିଏ ବର୍ଷ ବୟସ ହୋଇଥିବା ବେଳେ, ସେ ରେଡ଼କ୍ଲିଫ୍ କଲେଜରେ ଅଧ୍ୟୟନ ଆରମ୍ଭ କଲେ ଏବଂ ଚାରି ବର୍ଷ ପରେ ଅନର୍ସ ସହ ସ୍ନାତକ ଡିଗ୍ରୀ ହାସଲ କଲେ । ସେଇ କଲେଜରେ ସଂପୂର୍ଣ୍ଣ ସୁସ୍ଥସବଳ ଥିବା ଏବଂ ଦେଖାଶୁଣା କରି ପାରୁଥିବା ସମସ୍ତ ଛାତ୍ରୀଙ୍କଠାରୁ ସେ ଅଧିକା ନମ୍ବର ରଖି ପାଶ୍ କରିବା ଉଲ୍ଲେଖନୀୟ ।

ଏହି ଦୁର୍ଲ୍ଲଭ ସଫଳତା ପାଇଁ କେଲାର୍ ବ୍ରେଲ୍ ପଦ୍ଧତିର ଆଶ୍ରୟ ନେଇଥିଲେ । ପୁଣି ମଣିଷର ଶବ୍ଦ ଶୁଣିବା ପାଇଁ ସେ ଏକ ଭିନ୍ନ ଉପାୟ ଅବଲମ୍ବନ କରିଥିଲେ । ସେ ବକ୍ତାର ଗଳା ଉପରେ ନିଜ ଆଙ୍ଗୁଠି ରଖି ଯେଉଁ ସ୍ପନ୍ଦନ ଅନୁଭବ କରୁଥିଲେ, ସେଥିରୁ ବକ୍ତାର ବକ୍ତବ୍ୟ ସଂପର୍କରେ ସମସ୍ତ ବିଷୟ ଅବଗତ ହେଉଥିଲେ । ତାଙ୍କ ଚରିତ୍ରର ଏକ ଆକର୍ଷଣୀୟ ଗୁଣ ହେଉଛି ଯେ, ବିକଳାଙ୍ଗ ହୋଇଥିବା ସତ୍ତ୍ୱେ ସେ କେବେ ହୀନମନ୍ୟତାର ଶୀକାର ହୋଇ ନଥିଲେ ଓ ସମସ୍ତ ସହପାଠୀଙ୍କ ସହିତ ଉତ୍ତମ ସାମାଜିକ ସଂପର୍କ ରଖିପାରିଥିଲେ ; ତେଣୁ ସମସ୍ତେ କେବଳ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯାଇ ନ ଥିଲେ; ତାଙ୍କର ଭୂୟସୀ ପ୍ରଶଂସା ମଧ୍ୟ କରୁଥିଲେ ।

ଜୀବନୀକାର ଡଗଲାସ କୋଲିଏର୍ ଲେଖିଛନ୍ତି, ''ହେଲେନ୍ କେଲାର କିଛି ଶୁଣି ପାରୁ ନଥିଲେ କିମ୍ବା ଦେଖି ପାରୁ ନ ଥିଲେ ସୁଦ୍ଧା ତାଙ୍କ ଚତୁର୍ଦ୍ଦିଗରେ ଯାହା ଯାହା ଘଟୁଛି, ସେଇ ସଂପର୍କରେ ଅନ୍ୟମାନଙ୍କ ଅପେକ୍ଷା ତାଙ୍କର ଧାରଣା ଅଧିକ ସ୍ପଷ୍ଟ ଥାଏ । ସାଧାରଣ ଲୋକମାନେ ଯାହା ଜାଣି ପାରୁ ନଥିଲେ, ସେ ତାହା ବେଶ୍ ଭଲ ଭାବେ ଜାଣିପାରୁଥିଲେ । ଯଥା:- ଫୁଲର ମହକ, ଧୂଆଁର ଦୁର୍ଗନ୍ଧ, ଭିଜାମାଟିର ବାସ୍ନା । ଏପରିକି ବିଭିନ୍ନ ସହରର ଗନ୍ଧବାରି ସେ ସେଇ ସହରର ନାମ କହିପାରୁଥିଲେ... ତାଙ୍କର ଶକ୍ତି ଅସୀମ ଥିଲା । ଦ୍ୱିତୀୟ ମହାଯୁଦ୍ଧ ବେଳେ ସେ ଯୁଦ୍ଧ କ୍ଷେତ୍ରକୁ ଯାଇ ଚକ୍ଷୁ ହରାଇଥିବା ସୈନିକ, ନାବିକ ଓ ବିମାନ କର୍ମଚାରୀଙ୍କ ସହିତ ଆଳାପ ଆଲୋଚନା କରି ସେମାନଙ୍କୁ ସତ୍‌ସାହସ ଦେଉଥିଲେ । ଯୁଦ୍ଧ ସମାପ୍ତ ହେବା ପରେ ବିଭିନ୍ନ ଦେଶ ଭ୍ରମଣ କରି ନିଜ ଦୃଷ୍ଟାନ୍ତ ଦ୍ୱାରା ସେ ସେମାନଙ୍କୁ ଉତ୍ସାହିତ କରୁଥିଲେ ।''

ହେଲେନ୍ କେଲାର, ବେଦ ମେହେଟ୍ଟା ଇତ୍ୟାଦି ବହୁ ବିଶିଷ୍ଟ ବ୍ୟକ୍ତି ରୋଗାକ୍ରାନ୍ତ ହେବା ଯୋଗୁଁ ଦୁଇଟି ଯାକ ଆଖି ହରାଇ ଥିବାବେଳେ, ଅନ୍ୟ କେତେକ ବ୍ୟକ୍ତି ଭିନ୍ନ ଭିନ୍ନ କାରଣରୁ ଗୋଟିଏ ଲେଖାଏଁ ଆଖି ହରାଇଥିବା ଦୃଷ୍ଟାନ୍ତ ରହିଛି । ଏହି ହତଭାଗା ଏକ ଆଖିଆମାନେ ନିଜ ନିଜ କ୍ଷେତ୍ରରେ କିପରି କୃତିତ୍ୱ ଲାଭ କରିଛନ୍ତି ଓ ସେମାନଙ୍କ ମାନସିକ ଅବସ୍ଥା କଣ, ତାହା ଜାଣିବା ପାଇଁ ଆମ ମନରେ କୌତୁହଳ ଜାତ ହୋଇଥାଏ । ଏହି ମର୍ମରେ ଆମେ ପ୍ରଖ୍ୟାତ କବି ମଲିକ ମହମ୍ମଦ ଜୟସୀଙ୍କ ବିଷୟରେ ଆଲୋଚନା କରିବା, ଯିଏକି ବସନ୍ତ ରୋଗରେ ପୀଡ଼ିତ ହୋଇ ଅତି କୁତ୍ସିତ ହେବା ସଙ୍ଗେ ସଙ୍ଗେ ନିଜର ଗୋଟିଏ ଆଖି ହରାଇଥିଲେ । ଏକଦା ଶେର ଶାହ ସୁରୀ ଯେତେବେଳେ ତାଙ୍କୁ ଦେଖି ଖୁବ୍ ହସିଲେ, ସେ ଅତି ଦୁଃଖର ସହିତ ନିଜ ମନୋବେଦନା ତାଙ୍କୁ ଜଣାଇଥିଲେ, ''ମୋ ପ୍ରତି ନୁହେଁ, ମୋ ସ୍ରଷ୍ଟା ପ୍ରତି ତମର ହସିବା ଉଚିତ୍ ।''

କବି ଜାୟସୀ ଏହା ଦ୍ୱାରା ନିଜର ଅସହାୟତା ପ୍ରକାଶ କରିଥିଲେ ସୁଦ୍ଧା ସୃଷ୍ଟିକର୍ତ୍ତାଙ୍କ ନିକଟରେ ନିଜକୁ ସମର୍ପଣ କରି ମାନସିକ ଶାନ୍ତି ପାଇଥିଲେ । କିନ୍ତୁ ପଞ୍ଜାବର ମହାରାଜା ରଣଜିତ ସିଂହ, ଯିଏକି ଜାୟସୀଙ୍କ ପରି ବସନ୍ତ ରୋଗ ଯୋଗୁଁ ଗୋଟିଏ ଆଖି ହରାଇଥିଲେ, ସେ ନିଜ ବିକଳାଙ୍ଗକୁ ଏକ ସ୍ୱତନ୍ତ୍ର ଦୃଷ୍ଟିକୋଣରୁ ଦେଖିଥିଲେ । ଥରେ ଖୁସଖତ୍ ନବିସ ନାମକ ଜଣେ ମୁସଲମାନ ''କୋରାନ ସରୀଫ'' ଶୀର୍ଷକ ଗୋଟିଏ ବହି ଲେଖିଲେ ଏବଂ ଏହି ପୁସ୍ତକଟିକୁ ଦଶ ହଜାର ଟଙ୍କାରେ ବିକ୍ରୀ କରିବା ପାଇଁ ଗ୍ରାହକ ଖୋଜିଲେ । କିନ୍ତୁ ଏତେ ଦାମ ଦେଇ କେହି ବହିଟି କିଣିବା ପାଇଁ ରାଜି ହେଲେ ନାହିଁ । ଦିନେ ସେ ମହାରାଜା ରଣଜିତ ସିଂଙ୍କ ବୈଦେଶିକ ମନ୍ତ୍ରୀ ଫକୀର ଅଜିଜୁଦ୍ଦିନଙ୍କୁ ଭେଟି ବହିଟି କିଣିବା ପାଇଁ ପ୍ରବର୍ତ୍ତାଉଥିଲେ । କିନ୍ତୁ ବହିଟିର ଚଢ଼ା ଦାମ ଯୋଗୁଁ ମନ୍ତ୍ରୀ ମହାଶୟ ଅମଙ୍ଗ ହେଉଥାନ୍ତି ।

ଏହି ସମୟରେ ମହାରାଜା ରଣଜିତ ସିଂ ଦଶହଜାର ଟଙ୍କା ଦେଇ ବହିଟି ବିନାଦ୍ୱିଧାରେ କିଣି ନେଲେ । ଏହା ଦେଖି ଖୁସଖତ୍ ନବିସ ଆଶ୍ଚର୍ଯ୍ୟ ହୋଇଗଲେ, କାରଣ ସେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ ଯେ, ମହାରାଜା ରଣଜିତ ସିଂ ଜଣେ ଶିଖ୍ ହୋଇ ମୁସଲମାନଙ୍କ କୋରାନ-ଗ୍ରନ୍ଥ କିଣିବେ । ଏହାର କାରଣ ବୁଝାଇବାକୁ ଯାଇ ମହାରାଜା ରଣଜିତ ସିଂ କହିଲେ, ''ଭଗବାନ ମତେ ଗୋଟିଏ ଆଖି ଦେବା ପଛରେ ଯଥେଷ୍ଟ ତାତ୍ପର୍ଯ୍ୟ ରହିଛି । ଏହା ଦ୍ୱାରା ଶିଖ୍, ମୁସଲମାନ, ହିନ୍ଦୁ ଇତ୍ୟାଦି ସବୁ ପ୍ରକାର ଧର୍ମକୁ ମୁଁ ଏକା ପରି ଦେଖିବା ଉଚିତ ବୋଲି ସେ ଇଚ୍ଛା ପ୍ରକାଶ କରୁଛନ୍ତି ।''

ବେଳେ ବେଳେ କର୍ତ୍ତବ୍ୟ ସଂପାଦନ କରିବା ସମୟରେ ବିଶିଷ୍ଟ ବ୍ୟକ୍ତିମାନେ ନିଜର ମୂଲ୍ୟବାନ ଆଖି ହରାଇଥାନ୍ତି । ତଥାପି ସେମାନେ ପରବର୍ତ୍ତୀ ଜୀବନରେ ଧୈର୍ଯ୍ୟଚ୍ୟୁତ ନ

ହୋଇ ବିଭିନ୍ନ ସମସ୍ୟାକୁ ବୀରତ୍ୱ ସହକାରେ ମୁକାବିଲା କରିଛନ୍ତି । ୧୯୪୧ ମସିହାରେ ଇହୁଦୀ ସେନାପତି ମୋସେ ଦୟାନ୍ ନାଜି ସୈନ୍ୟଙ୍କ ସହ ଯୁଦ୍ଧ କରୁଥିବା ବେଳେ ଶତ୍ରୁ ପକ୍ଷର ମେସିନ୍‌ଗନ୍‌ରୁ ଗୁଳି ବାଜିବା ଫଳରେ ଗୋଟିଏ ଆଖି ହରାଇଥିଲେ । ଇଂଲଣ୍ଡର ଲର୍ଡ଼ ନେଲସନ ମଧ୍ୟ କର୍ସିକା ଦ୍ୱୀପରେ ଯୁଦ୍ଧରତ ଥିବାବେଳେ ଏହି ପ୍ରକାର ଦୁର୍ଦ୍ଦଶାର ଶିକାର ହୋଇଥିଲେ । ଏହା ସତ୍ତ୍ୱେ ସେମାନଙ୍କ ଭବିଷ୍ୟତ ଜୀବନ ଅନ୍ଧକାରାଚ୍ଛନ୍ନ ହୋଇ ନଥିଲା ।

ଅନ୍ଧ ତଥା ଏକ-ଆଖିଆମାନଙ୍କର ଯେ ଅସଂଖ୍ୟ ଉଲ୍ଲେଖନୀୟ କୃତିତ୍ୱ ରହିଛି—ଏଥିରେ କୌଣସି ସନ୍ଦେହ ନାହିଁ । ତଥାପି ଆମେ ସେମାନଙ୍କ ମହାନ ସାଫଲ୍ୟମାନଙ୍କ ପ୍ରତି ବିଶେଷ ଆଲୋକପାତ କଲେ, କେହି କେହି ହୁଏତ ''ହାତୀ ଏବଂ ଛଅ ଅନ୍ଧ'' ପ୍ରସଙ୍ଗ ଉଠାଇ ଆମକୁ ବିଭ୍ରାନ୍ତ କରିବାକୁ ଚେଷ୍ଟା କରିବେ । ବହୁ ପୁରାତନ କାଳରୁ ଗୋଟିଏ ଲୋକକଥା ପ୍ରଚଳିତ ଅଛି ଯେ, ଏକଦା ଛଅ ଜଣ ଅନ୍ଧ ବ୍ୟକ୍ତି ହାତୀ କେଉଁ ଆକାରର ପ୍ରାଣୀ ଜାଣିବାକୁ, ତାର ଶରୀରରେ ହାତ ବୁଲାଇଲେ । ସେମାନଙ୍କ ମଧ୍ୟରୁ ଜଣେ ହାତୀର ଲାଙ୍ଗୁଡ଼ ଧରି ତାହା ଦଉଡ଼ିଟିଏ ବୋଲି କହିବା ବେଳେ ଅନ୍ୟ ଜଣେ ଶୁଣ୍ଢଟି ଧରି ତାହା ସାପ ବୋଲି ମତ ଦେଲା । ତୃତୀୟ ଜଣକ ହାତୀର ଗୋଡ଼ରୁ ଜାଣି ପାରିଲା ଯେ, ସେ ଖମ୍ବ ପରି । ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଅନ୍ଧମାନେ ହାତୀର ପିଠି, ଦାନ୍ତ ଓ କାନ ଧରି ହାତୀର ଆକାର ଯଥାକ୍ରମେ କାନ୍ଥ, ଠେଙ୍ଗା ଓ କୁଲା ପରି, ବୋଲି ନିଃସନ୍ଦେହରେ ଘୋଷଣା କଲେ ।

ଏହି ପ୍ରକାରେ ହାତୀର ସ୍ୱରୂପ ନିର୍ଦ୍ଧାରଣ କରି ସେମାନ ନିଜ ନିଜ ଦାବୀରେ ଅଟଳ ରହିଲେ ଓ ପରସ୍ପର ମଧ୍ୟରେ ଝଗଡ଼ା ଆରମ୍ଭ କରି ଦେଇଥିଲେ । ଦୃଷ୍ଟି ବଦଳରେ ସ୍ପର୍ଶ-ଅନୁଭୂତି ସେମାନେ ପ୍ରୟୋଗ କରିବା ଯୋଗୁଁ ଏପରି ପ୍ରମାଦ ଘଟିଲା ବୋଲି କୁହାଯାଇ ପାରେ । ସେମାନେ ଯଦି ହାତୀର ଶରୀର ଅଣ୍ଡାଳି ଜାଣିବା ପରିବର୍ତ୍ତେ ସ୍ୱଚକ୍ଷୁରେ ଦେଖିପାରିଥାନ୍ତେ, ତାହାହେଲେ ସମସ୍ତେ ହାତୀର ପ୍ରକୃତ ଆକାର ସଂପର୍କରେ ଏକମତ ହୋଇ ପାରିଥାନ୍ତେ ବୋଲି ଆମ ମଧ୍ୟରୁ କେହି କେହି ଯୁକ୍ତି ବାଢ଼ି ପାରନ୍ତି ।

କିନ୍ତୁ ଉପରୋକ୍ତ ଯୁକ୍ତି ବୋଧହୁଏ ଠିକ୍ ନୁହେଁ —ବିଶେଷତଃ ଆଧୁନିକ ଯୁଗରେ, ଯେତେବେଳେ କି ଅନ୍ଧମାନଙ୍କୁ ସ୍ପର୍ଶ-ଅନୁଭୂତି ସଂପର୍କରେ ବିଶେଷ ତାଲିମ ଦିଆଯାଉଛି । ପ୍ରକୃତରେ ପଶ୍ଚିମ ଜର୍ମାନୀର ବନ୍‌ଠାରେ କୋଇଁ—ସଂଗ୍ରହାଳୟର ଦ୍ୱିତୀୟ ମହଲାରେ ଯେଉଁ ମ୍ୟୁଜିଅମ୍‌ଟି ଖୋଲା ଯାଇଛି, ତାହା ମୁଖ୍ୟତଃ ଦୃଷ୍ଟିହୀନ କିମ୍ବା ଦୁର୍ବଳ ଦୃଷ୍ଟି ସଂପନ୍ନ ବ୍ୟକ୍ତିଙ୍କ ପାଇଁ ଉଦ୍ଦିଷ୍ଟ । ସେଠାରେ କ୍ଷୁଦ୍ରାତିକ୍ଷୁଦ୍ର କୀଟ ପତଙ୍ଗଠାରୁ ଆରମ୍ଭ କରି ପଶୁପକ୍ଷୀ ସମେତ ବିଶାଳକାୟ ହାତୀମାନଙ୍କର ଅସ୍ଥିସଂଗ୍ରହ କରି ରଖାଯାଇଛି । ସ୍ୱତନ୍ତ୍ର ଭାବେ ପ୍ରସ୍ତୁତ ଏହି ଅସ୍ଥିମାନଙ୍କୁ ଛୁଇଁ ଅନ୍ଧମାନେ ବିଶ୍ୱର ବିଭିନ୍ନ ପଶୁପକ୍ଷୀ ଓ କୀଟ ପତଙ୍ଗ ସଂପର୍କରେ ସମ୍ୟକ ଜ୍ଞାନ ଲାଭ କରି ପାରିବେ ବୋଲି ଏହି ମ୍ୟୁଜିଅମ୍‌ର ଉଦ୍ୟୋକ୍ତାମାନଙ୍କର ମୂଳ ଲକ୍ଷ୍ୟ । ତେଣୁ ପୃଥିବୀର ଅନ୍ୟାନ୍ୟ ସଂଗ୍ରହାଳୟମାନଙ୍କରେ ''ଦୟା କରି ହାତ ମାରନ୍ତୁ ନାହିଁ'' ବୋଲି

ଫଳକ ଝୁଲା ଯାଇଥିବା ବେଳେ, ବନ୍‌ର ଉପରୋକ୍ତ ସଂଗ୍ରହାଳୟରେ ''ଦୟା କରି ହାତ ମାରନ୍ତୁ'' ବୋଲି ଦର୍ଶକମାନଙ୍କୁ ଅନୁରୋଧ କରାଯାଉଛି ।

ସଂପ୍ରତି ବୈଜ୍ଞାନିକ ପଦ୍ଧତିରେ ନେତ୍ରହୀନମାନଙ୍କର ଜ୍ଞାନକୁ ଉନ୍ନତ କରିବା ପାଇଁ ଯେଉଁ ତତ୍ପରତା ପ୍ରକାଶ ପାଉଛି, ତାହା ମାନବୀୟ ଦୃଷ୍ଟିକୋଣରୁ ଅବଶ୍ୟ ସ୍ୱାଗତଯୋଗ୍ୟ । ଏହି ଦିଗରେ ପ୍ରଗତି ଯାହା ହେଉନା କାହିଁକି, ବର୍ତ୍ତମାନ ଆମ ମନରେ ଗୋଟିଏ ମୌଳିକ ପ୍ରଶ୍ନ ଉଠୁଛି :-ଆମମାନଙ୍କୁ ଭଗବାନ ଯେଉଁ ଆଖି ଦୁଇଟି ଦେଇଛନ୍ତି, ତାହା କଣ ସବୁ କ୍ଷେତ୍ରରେ ଆବଶ୍ୟକ ?

ଏଠାରେ ସ୍ୱୀକାର କରିବା ଉଚିତ ହେବ ଯେ, ଆଖି ମଣିଷର ଏକ ମହତ୍ତ୍ୱପୂର୍ଣ୍ଣ ଅଂଗ ଏବଂ ସମସ୍ତେ ଏହା ଉପରେ ସାଂଘାତିକ ଭାବେ ନିର୍ଭରଶୀଳ । ତଥାପି ଆଖିର ଖୋଲା ବ୍ୟବହାର ଯୋଗୁଁ ଯେ ବିପଦ ନିମନ୍ତ୍ରିତ ହୋଇଥାଏ ଏହା ଅନୁଭବୀମାନେ ଜାଣି ପାରିବେ । ଏହାର ଦୃଷ୍ଟାନ୍ତ ହେଉଛି ବିଚାରପତିମାନଙ୍କର କାର୍ଯ୍ୟ ଓ କର୍ତ୍ତବ୍ୟ । ବିଚାରକମାନେ କୌଣସି ମାମଲାର ରାୟ ପ୍ରସ୍ତୁତ କରିବା ବେଳେ ଆଖିରେ ଅନ୍ଧପୁଟୁଳି ବାନ୍ଧିଲେ, ନିରପେକ୍ଷତା ବଜାୟ ରହିବ ବୋଲି ଚିନ୍ତାଶୀଳ ବ୍ୟକ୍ତିମାନେ ମତ ଦେଇଥାନ୍ତି । ପ୍ରକୃତରେ ଆଖିରେ ଅନ୍ଧପୁଟୁଳି ପିନ୍ଧିଥିବା ବ୍ୟକ୍ତି କିପରି ନିର୍ଭୁଲ ଓ ନିଷ୍ପକ୍ଷ ବିଚାର କରି ପାରନ୍ତି, ତାର ପ୍ରମାଣ ମହାଭାରତରୁ ମିଳେ ।

ଅନ୍ଧ ଧୃତରାଷ୍ଟ୍ରଙ୍କୁ ଗାନ୍ଧାରୀ ବିବାହ କରିବା ପରେ ଅନୁଭବ କଲେ ଯେ, ସେ ସ୍ୱାମୀଙ୍କ ସୁଖ ଦୁଃଖରେ ସମଭାଗୀ ହେବା ଶାସ୍ତ୍ରସମ୍ମତ । ତେଣୁ ନିଜ ଆଖିରେ ଅନ୍ଧପୁଟୁଳି ପିନ୍ଧି ଅନ୍ଧୁଣୀ ଭାବେ ଦିନ ବିତାଇଲେ । ଏହି ସ୍ଥିତିରେ ଆମେ ଅନୁମାନ କରି ପାରୁଁ ଯେ, ସେ ବାହାର ଦୁନିଆ ବିଷୟରେ କିଛି ଜାଣି ପାରୁ ନଥିବେ । କିନ୍ତୁ ଆମର ଏହି ଧାରଣା ଯେ ପୂରାପୂରି ଭୁଲ୍, ଏହା ମହାଭାରତର ପରବର୍ତ୍ତୀ ଘଟଣାମାନଙ୍କରୁ ପ୍ରତୀତ ହୁଏ ।

ଗାନ୍ଧାରୀ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ସୁସଂପର୍କ ରହୁ ଏବଂ ମହାଭାରତ-ଯୁଦ୍ଧ ନ ଘଟୁ ବୋଲି ସର୍ବଦା ପ୍ରଯତ୍ନଶୀଳା ଥିଲେ । କିନ୍ତୁ ପରିଶେଷରେ ଯେତେବେଳେ ତାଙ୍କର ମନସ୍କାମନାର ବିପରୀତ ଫଳ ହେଲା ଏବଂ ନିଜର ଶତପୁତ୍ର ରଣକ୍ଷେତ୍ରରେ ନିହତ ହେଲେ, ସେ ଶୋକାଭିଭୂତ ହୋଇ ପଡ଼ିଲେ । ସେ ଅନ୍ଧ ଭାବେ ଜୀବନ କଟାଉଥିଲେ ସୁଦ୍ଧା ବେଶ୍ ଭଲ ଭାବେ ଜାଣିପାରୁଥିଲେ ଯେ, ବିନାଶକାରୀ ମହାଭାରତ-ଯୁଦ୍ଧ ପାଇଁ ଶ୍ରୀକୃଷ୍ଣଙ୍କ କୂଟନୀତି ମୂଳତଃ ଦାୟୀ । ତେଣୁ ଶ୍ରୀକୃଷ୍ଣଙ୍କୁ ଦୋଷୀ ସାବ୍ୟସ୍ତ କରି ସେ ନିଷ୍ଠୁର ଅଭିଶାପ ଦେଲେ, ''ତୁମେ ବିଶେଷ ରୂପେ ଚେଷ୍ଟା କରିଥିଲେ, କୁରୁ-ପାଣ୍ଡବ ଭାଇମାନଙ୍କ ମଧ୍ୟରେ ଏ ଯୁଦ୍ଧ କଦାପି ହୋଇ ନଥାନ୍ତା । ସେଥିଲାଗି ମୁଁ ତୁମକୁ ଅଭିଶାପ ଦେଉଛି— ଯଦି ପତିସେବା

ଦ୍ୱାରା ମୋର ନିଷ୍ଠା ଅର୍ଜିତ ହୋଇଛି, ତେବେ ସେହି ପ୍ରଭାବରୁ ତୁମେ ଯେପରି କୌରବ ପାଣ୍ଡବମାନଙ୍କ ଜ୍ଞାତି-ବିନାଶ ରୋକିବାରେ ଉପେକ୍ଷା କରିଛ, ସେହିପରି ତୁମର ଜ୍ଞାତିବର୍ଗ ତୁମ ଦ୍ୱାରା ହିଁ ନଷ୍ଟ ହେବେ ଏବଂ ଆଜିଠାରୁ ୬୭ ବର୍ଷ ଭିତରେ ତୁମେ ଜ୍ଞାତି ଓ ପୁତ୍ରହୀନ ହୋଇ ବନଚାରୀ ହେବ .. ପରିଣାମରେ ଅତି କୁତ୍ସିତ ଉପାୟରେ ନିଧନ ପ୍ରାପ୍ତ ହେବ ।'' (ଚରିତ ଚିନ୍ତାମଣି; ପଣ୍ଡିତ ନୀଳକଣ୍ଠ ରଥ)

ମହାଭାରତର ଘଟଣା କ୍ରମରୁ ଜଣାଯାଏ ଯେ, ଗାନ୍ଧାରୀଙ୍କ ଏହି କଠୋର ଅଭିଶାପ ସଫଳ ହୋଇଥିଲା । ତେବେ ଏଠାରେ ଲକ୍ଷ୍ୟ କରିବା କଥା ଯେ, କୌଣସି ଅଭିଶାପ ଫଳପ୍ରସୂ ହେବା ପାଇଁ, ତା ପଛରେ ସତ୍ୟ, ନ୍ୟାୟ ଓ ଯୁକ୍ତିଯୁକ୍ତତା ରହିବା ଆବଶ୍ୟକ । ତେଣୁ ଗାନ୍ଧାରୀ ଶ୍ରୀକୃଷ୍ଣଙ୍କୁ ଯେଉଁ ଶାପ ଦେଲେ, ତାହା ଯଥାର୍ଥ ହୋଇ ଥିବାରୁ ହିଁ ସଫଳ ହୋଇଥିଲା । ଆମ ନ୍ୟାୟାଳୟରେ ଯେପରି ନ୍ୟାୟମୂର୍ତ୍ତିମାନେ ଆଖିରେ କଳାକନା ବାନ୍ଧି ନିକିତିଟିଏ ଧରି ନ୍ୟାୟ-ଅନ୍ୟାୟ ତଉଲିବା ଚିତ୍ର ଅଙ୍କିତ ହୋଇଛି; ଠିକ୍ ସେପରି ସତେ ଯେମିତି ଗାନ୍ଧାରୀ ଅନ୍ଧପୁଟୁଳି ବାନ୍ଧି ଶ୍ରୀକୃଷ୍ଣଙ୍କ କାର୍ଯ୍ୟ କଳାପର ନ୍ୟାୟୋଚିତ ବିଚାର କରିବାରେ ସମର୍ଥ ହୋଇଥିଲେ ! ଏଥିରୁ ଅନୁମେୟ ଯେ, ଆବଶ୍ୟକ ସ୍ଥଳେ ଆଖିକୁ ବନ୍ଦ କରିବା ଯୋଗୁଁ ମହତ ଉଦ୍ଦେଶ୍ୟ ସାଧିତ ହୋଇଥାଏ ।

ପୁଣି ଏହି ଚର୍ମଚକ୍ଷୁ ସିଧାସଳଖ ଭାବେ ବ୍ୟବହାର କଲେ, ଆମେ ଏମିତି ଭୁଲଭଟକା ଆଡ଼କୁ ଟାଣି ହୋଇ ଯାଉ ଯେ, ଆମେ ନିଜକୁ ଶତ ଧିକ୍କାର କରିଥାଉଁ ଏବଂ ଆଖି ଫୁଟିଯାଇଥିଲେ ବରଂ ଭଲ ହୋଇଥାନ୍ତା ବୋଲି ବିଚାର କରିଥାଉଁ । ଏହି ପ୍ରସଙ୍ଗରେ ମରୁଭୂମିରେ ମରୁଯାତ୍ରୀମାନେ କିପରି ମରୀଚିକା ପଛରେ ଧାଇଁ ନିଜ ଆଖି ଉପରୁ ଅସ୍ଥା ହରାଇଥାନ୍ତି, ତାହା ବିଚାର କରାଯାଇପାରେ । ଅବଶ୍ୟ ମରୀଚିକା ଦ୍ୱାରା ଉଭୟ ବିଜ୍ଞ ଓ ମୂର୍ଖ ବ୍ୟକ୍ତି ପ୍ରତାରିତ ହୋଇଥାନ୍ତି । ତେଣୁ ଏଥିରେ ଆଖିର ଦୋଷ ଯେତିକି ନାହିଁ, ତାଠାରୁ ଅଧିକ ଦୋଷ ରହିଛି ପ୍ରକୃତିର—ଈଶ୍ୱରଙ୍କ ସୃଷ୍ଟିର । ତଥାପି ଆଖି ଯେ ସମସ୍ତଙ୍କୁ ସବୁ ପ୍ରକାର ପରିସ୍ଥିତିରେ ସବୁବେଳେ ସାହାଯ୍ୟ କରିପାରିବ, ଏହା ଭାବିବା ଅନୁଚିତ । ଉଦାହରଣ ସ୍ୱରୂପ, ଆଖି ଦୁଇଟି ଅଛି ବୋଲି କୌଣସି ମୂର୍ଖ ପଣ୍ଡିତ ହୋଇ ଯିବ ନାହିଁ; ବରଂ ତାର ମୂର୍ଖାମି ଲୁଚି ରହିବା ପରିବର୍ତ୍ତେ ଅତି ଶୀଘ୍ର ପ୍ରକାଶିତ ହୋଇଯିବ । ଏହାର ଦୃଷ୍ଟାନ୍ତ ହେଉଛି ବହୁ ଲୋକ-ମୁଖରେ ପ୍ରଚାରିତ ''ଜନ୍ମବର୍ତ୍ତର କଥା'' ।

ଏକଦା ଜନୈକ ଶିଷ୍ୟ ଗୁରୁକୁଳରେ ବହୁବର୍ଷ ରହି କଠୋର ପରିଶ୍ରମ କଲେ ଏବଂ ଜ୍ୟୋତିଷଶାସ୍ତ୍ରରେ ପାରଙ୍ଗମତା ହାସଲ କଲେ । ଏଥିରେ ଗୁରୁଦେବ ଅତିଶୟ ପ୍ରୀତ ହୋଇ ଶିଷ୍ୟର ପାଣ୍ଡିତ୍ୟ ପ୍ରଦର୍ଶନ କରିବା ପାଇଁ ରାଜ ଦରବାରକୁ ଗଲେ । ଶିଷ୍ୟଙ୍କୁ ପରୀକ୍ଷାପୂର୍ବକ,

ମହାରାଜା ନିଜ ହାତମୁଠା ମଧ୍ୟରେ ସୁନାମୁଦିଟିଏ ଲୁଚାଇ ରଖି ବସ୍ତୁଟିର ନାମ ଜ୍ୟୋତିଷ ବିଦ୍ୟା ଦ୍ୱାରା ଘୋଷଣା କରିବା ପାଇଁ ଆହ୍ୱାନ ଦେଲେ । ଶିଷ୍ୟ ଅତି ସତର୍କତାର ସହିତ ଗଣନା କରି ଜଣାଇଲେ ଯେ, ରାଜାଙ୍କ ହାତରେ ଏମିତି ଗୋଟିଏ ବସ୍ତୁ ଅଛି ଯାହାକି ସଂପୂର୍ଣ୍ଣ ଗୋଲାକାର; ପୁଣି ତାର ମଧ୍ୟଭାଗରେ ଗୋଲାକୃତିରେ ଶୂନ୍ୟସ୍ଥାନ ରହିଛି । ମହାରାଜା ଶିଷ୍ୟଙ୍କର ଏହି ନିର୍ଭୁଲ ଗଣନାରେ ପ୍ରୀତ ହୋଇ ସାଧୁବାଦ ଜଣାଇଲେ ଏବଂ ବସ୍ତୁଟିର ଠିକ୍ ନାମ ନିର୍ଧାର୍ଯ୍ୟ ଭାବେ ପ୍ରକାଶ କରିବା ପାଇଁ ଆଦେଶ ଦେଲେ । ଶିଷ୍ୟଙ୍କର ଆଖି ସେତେବେଳେ ଉତ୍‌ଫୁଲ୍ଲିତ ହୋଇ ଝଲସୁଥାଏ ଏବଂ ସେ କାଳ ବିଳମ୍ବ ନ କରି ରୋକଠୋକ୍ ଭାବେ ଉତ୍ତର ଦେଲେ, ''ମହାରାଜା ! ଆପଣଙ୍କ ହାତମୁଠାରେ ନିଶ୍ଚୟ ଘୋରଣାର ଉପର-ଚକିଟିଏ ଅଛି ।''

ଏହାଶୁଣି ମହାରାଜା ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ଶିଷ୍ୟଙ୍କୁ ଧିକ୍କାରପୂର୍ବକ ଜଣାଇଲେ, ''... ହାତମୁଠାରେ ଘୋରଣାର ଚକି ରହିବା କଣ ସମ୍ଭବପର ? ... ହେ ମହାମୂର୍ଖ ! ଜ୍ୟୋତିଷଶାସ୍ତ୍ର ଜ୍ଞାନ ଦିଏ ସମସ୍ତଙ୍କୁ— ଅନ୍ଧକୁ; ଜନ୍ମାନ୍ଧକୁ ମଧ୍ୟ । ମାତ୍ର ସାଧାରଣ-ଜ୍ଞାନ ନ ଥିବା ଅର୍ଥାତ୍ ଜନ୍ମ-ବର୍ବରକୁ ନୁହେଁ—ଆଖିଥିବା ଅନ୍ଧକୁ ନୁହେଁ !''

ଏହି ଯେଉଁ ସାଧାରଣଜ୍ଞାନ ରହିତ ଜନ୍ମବର୍ବରର କଥା ବର୍ଣ୍ଣିତ ହେଲା, ଏହା ଏକ ବିରଳ ଘଟଣା ଅର୍ଥାତ୍ ଏକ ବ୍ୟତିକ୍ରମ ଉପରେ ପର୍ଯ୍ୟବସିତ ବୋଲି କେହି କେହି ମତ ଦେଇ ପାରନ୍ତି । କିନ୍ତୁ ଆମେ ଯଦି ବାସ୍ତବ ଜଗତ ସହିତ ସୁପରିଚିତ, ତାହାହେଲେ ଅତି ଅନାୟସରେ କହି ପାରୁଁ ଯେ, ଆମ ଭିତରୁ ଅନେକେ ପ୍ରକୃତରେ ଆଖି ଥାଉଁ ଥାଉଁ ଅନ୍ଧ । ଆଜିକାଲି ଯେଉଁ ଅସଂଖ୍ୟ ସଡ଼କ-ଦୁର୍ଘଟଣା ଘଟୁଛି ଏହା ପଛରେ ମୂଳ କାରଣ ହେଉଛି ଚାଳକମାନେ ନିଜ ଆଖି ଥାଉଁ ଥାଉଁ ଦେଖନ୍ତି ନାହିଁ; ନତୁବା ଦୁର୍ଘଟଣାଗ୍ରସ୍ତ ବ୍ୟକ୍ତିମାନଙ୍କୁ ରାସ୍ତା ଦେଖିବା ପାଇଁ ସୁଯୋଗ ବା ଅବକାଶ ଦିଅନ୍ତି ନାହିଁ । ଦିନ ଥିଲା, ଯେତେବେଳେ ଲୋକେ କହୁଥିଲେ ଯେ, ଯଦି ଜଣେ ଅନ୍ଧ ଅନ୍ୟ ଗୋଟିଏ ଅନ୍ଧକୁ ବାଟ କଢ଼ାଏ, ତାହାହେଲେ ଦୁଇ ଜଣ ଯାକ ଗାତରେ ପଡ଼ି ନାଶ ହୋଇଯିବେ । କିନ୍ତୁ ଆଜିକାଲି ଯେଉଁ ବ୍ୟକ୍ତି ଗାଡ଼ି ଚଳାଇ ଦୁର୍ଘଟଣା ଘଟାଉଛି ତାର ଆଖି ଅଛି ଏବଂ ଯିଏ ଦୁର୍ଘଟଣାର ଶୀକାର ହେଉଛି, ତାର ମଧ୍ୟ ଆଖି ଅଛି । ତେଣୁ ଏହି ଅବିଶ୍ୱାସ୍ୟ ପରିସ୍ଥିତିରେ ଆମେ କହିବା ଉଚିତ ହେବ ଯେ, ଦୁର୍ଘଟଣା ପାଇଁ ଅନ୍ଧ ଯେତିକି ଦାୟୀ ନୁହେଁ, ଆମ ପରି ଭଲ ଆଖିଥିବା ଲୋକେ ତାଠାରୁ ଅଧିକ ଦାୟୀ ।

ଥରେ ହେଲେନ କେଲାରଙ୍କୁ ପଚରାଗଲା, ''ଆଖି ଓ କାନ ମଧ୍ୟରୁ କେଉଁଟା ମଣିଷ ପାଇଁ ଅଧିକ ଆବଶ୍ୟକ ?'' ସେ ଉତ୍ତର ଦେଇଥିଲେ, ''ଅନ୍ଧ ହେବାଠାରୁ କାଲ ହେବା

ଅଧିକ ଦୁର୍ଭାଗ୍ୟଜନକ ।'' ଆମେ ଏହି ଉତ୍ତରଟିକୁ ମୋଟାମୋଟି ଭାବେ ଗ୍ରହଣ କରିବା ଉଚିତ ହେବ; କାରଣ କେଲାର ବାଲ୍ୟକାଳରୁ ଉଭୟ ଦୃଷ୍ଟିହୀନ ଓ ବଧିର ହୋଇଥିବା ଯୋଗୁଁ ସେ ଭୁକ୍ତଭୋଗୀ ଏବଂ ତାଙ୍କ ମନ୍ତବ୍ୟ ନିଜ ଅନୁଭୂତି ଦ୍ୱାରା ସମର୍ଥିତ । ସେ ଆଖିକୁ କମ୍ ଗୁରୁତ୍ୱ ଦେବା ନିଶ୍ଚିତ ଭାବେ ପ୍ରଣିଧାନଯୋଗ୍ୟ । ସାଧାରଣ ଲୋକେ ଆଖିକୁ ଯେଉଁ ପରିମାଣରେ ମହତ୍ତ୍ୱପୂର୍ଣ୍ଣ ବୋଲି ଭାବୁଛନ୍ତି, ସେ ତାହା ଏକ ଅତିରଂଜନ ବୋଲି ହୃତ୍‌ବୋଧ କରୁଛନ୍ତି । ତେଣୁ ଚକ୍ଷୁ ପ୍ରତି ଆମର ଅତିରଂଜିତ ମନୋଭାବ ରହିବା ପରିବର୍ତ୍ତେ ଯଥୋଚିତ ମନୋଭାବ ରହିବା ଉଚିତ ।

ତେବେ ବିଭିନ୍ନ ଦିଗରୁ ଆଖିକୁ ବିଚାର କରିବା ପରେ ଆମ ମନରେ ଧାରଣା ଜନ୍ମେ ଯେ, ଆଖିର ଦୁଇଟି ବିଶେଷତ୍ୱ ରହିଛି, ଯାହାକି ଚର୍ମଚକ୍ଷୁ ଓ ପ୍ରଜ୍ଞାନେତ୍ର ଦ୍ୱାରା ପରିଚାଳିତ । ଏଇ ଦୁଇଟିର କାର୍ଯ୍ୟକାରିତା ପରସ୍ପର ଉପରେ ନିର୍ଭରଶୀଳ ନ ହୋଇ ପାରେ ଏବଂ ପ୍ରତ୍ୟେକେ ସ୍ୱତନ୍ତ୍ର ଭାବେ ନିଜର ସତ୍ତା ବଜାୟ ରଖି ପାରନ୍ତି ମଧ୍ୟ । ତେଣୁ ପ୍ରଜ୍ଞାନେତ୍ର ଥାଇ ସୁଦ୍ଧା ଜଣେ ବ୍ୟକ୍ତିର ଚର୍ମଚକ୍ଷୁ ନ ଥାଇପାରେ । ଅପର ପକ୍ଷେ, କାହାରି କାହାରି ପ୍ରଜ୍ଞାନେତ୍ର ନଥାଇ କେବଳ ଚର୍ମଚକ୍ଷୁ ରହିଥାଏ । ସେ ଯାହା ହେଉନାଁ କାହିଁକି, ମଣିଷ ନୈସର୍ଗିକ, ବୌଦ୍ଧିକ କିମ୍ବା ଆଧ୍ୟାତ୍ମିକ ଜଗତର ଉଚ୍ଚସ୍ତରରେ ପହଞ୍ଚିବା ପାଇଁ ପ୍ରଜ୍ଞାନେତ୍ର ଆବଶ୍ୟକ କରେ ଏବଂ ଏହି କ୍ଷେତ୍ରରେ ଚର୍ମଚକ୍ଷୁର ଭୂମିକା ଗୌଣ ମନେହୁଏ । ତେଣୁହେଲେନ୍ କେଲାର୍ ଆଖିକୁ କମ୍ ଗୁରୁତ୍ୱ ଦେବା ବିଷୟ ଏହିପରିପ୍ରେକ୍ଷୀରେ ଯଥାର୍ଥ ବୋଲି ପ୍ରତୀତ ହୁଏ । ବାସ୍ତବିକ ତପସ୍ୟାରତ ମୁନି ଋଷିମାନେ ନିଜ ଚର୍ମଚକ୍ଷୁକୁ ମୁଦ୍ରିତ କରି ପ୍ରଜ୍ଞାନେତ୍ର ଉନ୍ମୀଳନ କରିବା ପାଇଁ ଚେଷ୍ଟିତ ହେବା ଏକ ଅତିମାନବୀୟ ଯୋଜନା ବୋଲି ଆମେ ମନେ କରୁଁ । ଏହି ପୃଷ୍ଠଭୂମିରେ ଆଜନ୍ମ ଅନ୍ଧ ମଧ୍ୟ ଦିବ୍ୟଦୃଷ୍ଟି ପ୍ରାପ୍ତ ହେବା ସମ୍ଭବପର ।



# ବିଜ୍ଞାପନର ରାଜତ୍ୱ

ଆପଣଙ୍କ ପ୍ରେମିକାକୁ ଆପଣ କିପରି ବିସ୍ମୟଭରା ଆନନ୍ଦରେ ଆମୋଦିତ କରି ପାରିବେ ? ଏଥିପାଇଁ କେତେକ ଉପାୟ ଆପଣ ଚିନ୍ତା କରି ପାରନ୍ତି । ତନ୍ମଧ୍ୟରୁ ଗୋଟିଏ ପରୀକ୍ଷିତ କୌଶଳ ହେଉଛି ଯେ, କୌଣସି ଏକ ସମ୍ବାଦପତ୍ରର ପ୍ରଥମ ପୃଷ୍ଠାଟିକୁ ପୂରା ଛାଇ ଯିବା ପରି, ଆପଣଙ୍କ ପ୍ରେମିକାର ନାମୋଲ୍ଲେଖ କରି ଗୋଟିଏ ବିଜ୍ଞାପନ ଛାପି ଦିଅନ୍ତୁ, ''ପ୍ରିୟେ ! ତୁମେ ମୋତେ ବିବାହ କରିବ ?''

ସକାଳୁ ସମ୍ବାଦପତ୍ରରେ ଆଖି ପକାଇବା କ୍ଷଣି ଆପଣଙ୍କ ପ୍ରେମିକା ଯଦି ହଠାତ ନିଜ ନାମରେ ଏଇ ବିରାଟ ବିଜ୍ଞାପନଟି ଦେଖି ପକାଇବେ ତାହାହେଲେ ସେ ଆଶ୍ଚର୍ଯ୍ୟର ସହିତ ଭାବିବେ– ସେ ସ୍ୱପ୍ନ ଦେଖୁ ନାହାନ୍ତି ତ ? ସେ ମନକୁ ମନ ବିସ୍ମୟର ସହିତ ପଚାରିବେ– ଯୁଦ୍ଧ ଶାନ୍ତି, ବନ୍ୟା ବାତ୍ୟା, ସଭା ସମିତି ଖବର ଗଲା କୁଆଡ଼େ ? ରାଷ୍ଟ୍ରପତି ପ୍ରଧାନମନ୍ତ୍ରୀଙ୍କର ବିବୃତି କିମ୍ବା ଗସ୍ତର ନାଁ ଗନ୍ଧ ନାହିଁ; କିନ୍ତୁ ସାରା ପ୍ରଥମ ପୃଷ୍ଠାଟିକୁ ତାଙ୍କ ନାଁଟି ମାଡ଼ି ବସିଛି– ସତେ ଯେମିତି ସେ ଜଗତର ପାଟରାଣୀ !

ଏମିତି ବିସ୍ମୟ-ବିସ୍ତାରିତ ଅବିଶ୍ୱାସରେ ଆତ୍ମ ବିସ୍ମୃତ ହୋଇ ସେ ତା ପର ଦିନ ସମ୍ବାଦପତ୍ରରେ ଆପଣଙ୍କ ନାଁରେ ବିଜ୍ଞାପନଟିଏ ମୁଦ୍ରଣ କରି ଯଥାଯଥ ପ୍ରେମ-ସମ୍ଭାଷଣ ଜଣାଇବେ–'' ହଁ; ପ୍ରାଣେଶ୍ୱର ! ମୁଁ ବିବାହ ପାଇଁ ରାଜି ଅଛି !!''

ଉପରୋକ୍ତ ବିଜ୍ଞାପନ-ଯୁଗଳ କପୋଳକଳ୍ପିତ ନୁହେଁ । ନରୱେ ଦେଶର ଫ୍ରେଡେରିକ୍ ଷ୍ଟାଡ୍‌ଠାରେ ରହୁଥିବା ୪୪ବର୍ଷ ବୟସ୍କ ପ୍ରେମିକ ଏଗିଲ୍ ସିଭରସନ୍ ଓ ତାଙ୍କ ପ୍ରେମିକା ଟୋଞ୍ଜେ କୋଲ୍‌ଙ୍କ ମଧ୍ୟରେ ଦୀର୍ଘ ଦିନ ଧରି ପ୍ରେମ ଚାଲିବା ପରେ, ସେମାନଙ୍କ ବିବାହ ପ୍ରସ୍ତାବ ଅଗଷ୍ଟ ୧୯୮୯ରେ ଏପରି ବିଚିତ୍ର ଢ଼ଙ୍ଗରେ ଖବରକାଗଜର ବିଜ୍ଞାପନ ଦ୍ୱାରା ବାସ୍ତବ ରୂପ ଗ୍ରହଣ କରିଥିଲା ।

ଏଠାରେ ସିଭରସନ୍‌ଙ୍କ ତାରିଫ ନ କରି ରହି ହେଉ ନାହିଁ । ତାଙ୍କର ବିଚିତ୍ର ଉଦ୍‌ଭାବନୀ ଭାବନା ଯୋଗୁଁ ଚିରାଚରିତ ''ବିଜ୍ଞାପନ''ର ରୂପରେଖ ବଦଳିଗଲା । ତାଙ୍କର ଉର୍ବର ଚିନ୍ତା ଯୋଗୁଁ ''ବ୍ୟବସାୟିକ ବିଜ୍ଞାପନ''ର ନୂତନ ଦିଗ ଉନ୍ମୋଚିତ ହୋଇ ପାରିଲା । ବିଜ୍ଞାପନର ସୀମା ସରହଦ ବର୍ଦ୍ଧିତ କରି ତାକୁ ସମୃଦ୍ଧିଶାଳୀ ଓ ଚିତ୍ତାକର୍ଷକ କରିବା ପାଇଁ

ସିଉରସନ- ଟୋଙ୍ଗେ - ଯୋଡ଼ି ପରି ଆହୁରି କେତେକ ଯୁବକ ଯୁବତୀ ନିଜ ସୃଜନଶୀଳ ପ୍ରତିଭା ପ୍ରୟୋଗ କରିବାକୁ ଆଗେଇ ଆସନ୍ତେ କି !

ଅବଶ୍ୟ ସିଉରସନ୍‌ଙ୍କର ଆମେ ଯେପରି ସ୍ତୁତିଗାନ କରୁଛେଁ, ଏହା କେତେକ ବ୍ୟକ୍ତିଙ୍କର ଗାତ୍ରଦାହ କରିପାରେ । ଆମର ଏହି ନିନ୍ଦୁକମାନେ କହିପାରନ୍ତି ଯେ, ସମ୍ବାଦପତ୍ର ହେଉଛି ରାଷ୍ଟ୍ରର ଚତୁର୍ଥ ସ୍ତମ୍ଭ । ସମାଜକୁ ମୁଣ୍ଡ ଉପରେ ସସମ୍ମାନେ ଟେକି ଧରିବା, ତାର କର୍ତ୍ତବ୍ୟ । ତେଣୁ ଆମ ନିନ୍ଦୁକମାନେ କ୍ଷୁବ୍ଧ ହୋଇ ପ୍ରଶ୍ନ କରି ପାରନ୍ତି– ପ୍ରଥମ ପୃଷ୍ଠାରେ ଦେଶ ବିଦେଶର ପ୍ରମୁଖ ସମ୍ବାଦ ପ୍ରକାଶ ନକରି ସିଉରସନ୍ ନାମଧେୟ କୌଣସି ଏକ ଅଖ୍ୟାତ କର୍ମଚାରୀର, ତାର ପ୍ରେମିକା ସହିତ ବୈବାହିକ ସମ୍ବନ୍ଧ ସଂପର୍କରେ ନିହାତି ବ୍ୟକ୍ତିଗତ ବିଷୟଟିଏ ମୁଦ୍ରିତ କରିବା କେତେଦୂର ଯୁକ୍ତିଯୁକ୍ତ ? ଏହି ପ୍ରକାର ଚୁଗୁଲିଆ ବୁଦ୍ଧି ବା ପିଲାଳିଆମି ଦେଖାଉଥିବା ସମ୍ବାଦପତ୍ରଟି କିପରି ସମ୍ମାନାସ୍ପଦ ଓ ଦାୟିତ୍ୱସଂପନ୍ନ ବୋଲି ଦାବୀ କରି ପାରିବ ? ପ୍ରେମିକାକୁ ଆଶ୍ଚର୍ଯ୍ୟରେ ହତବାକ୍ କରିବା ପରି ଏକ ନିକୁଛିଆ କାମରେ ମାତି ସମ୍ବାଦପତ୍ରଟି ନିଜ କ୍ଷମତାର ଅପବ୍ୟବହାର କରିଛି ବୋଲି କହି ଆମ ନିନ୍ଦୁକମାନେ ଆମକୁ ଶାନ୍ତିରେ ବସାଇ ଦେବେ ନାହିଁ ।

ସେ ଯାହାହେଉ, ଏହି ପ୍ରକାର ଚମକପ୍ରଦ ବିଜ୍ଞାପନ ଦ୍ୱାରା ଉକ୍ତ ସମ୍ବାଦପତ୍ର-ମାଲିକ ଯେ ବେଶ୍ ଦୁଇ ପଇସା ଅଧିକା ରୋଜଗାର କରିଥିବେ — ଏହା ସମସ୍ତେ ସ୍ୱୀକାର କରିବେ । ତେବେ ଏପରି ମଧ୍ୟ ପତ୍ର ପତ୍ରିକା ପ୍ରକାଶକ ଅଛନ୍ତି, ଯେଉଁମାନେ ଏହି ଧରଣର ଚାଞ୍ଚଲ୍ୟକର କିମ୍ବା ରୁଚି ଗର୍ହିତ ବିଜ୍ଞାପନ ମୁଦ୍ରିତ କରି ଅର୍ଥ-ଆଦାୟ କିମ୍ବା ପତ୍ରିକାର ଫାଲତୁ ପ୍ରସାରକୁ ଉତ୍ସାହିତ କରିବା ପାଇଁ ନୀତି ଦୃଷ୍ଟିରୁ ବିରୋଧ କରିଥାନ୍ତି ।

ଯେଉଁମାନେ ମାଡ୍ରାସର 'ଚାନ୍ଦମାମା ପ୍ରକାଶିନୀ' ତରଫରୁ ଏକଦା ପ୍ରକାଶିତ ହେଉଥିବା ''ଦି ହେରିଟେଜ'' ନାମକ ମାର୍ଜିତ-ରୁଚିସଂପନ୍ନ ପତ୍ରିକାର ନଭେମ୍ବର ୧୯୮୯ ସଂଖ୍ୟାର ସଂପାଦକୀୟ ପଢ଼ିଥିବେ, ସେଥିରୁ ସେମାନେ ବେଶ୍ ଜାଣି ପାରୁଥିବେ, ''ହେରିଟେଜ ପତ୍ରିକା ଏମିତି ବିଜ୍ଞାପନ ଛପାଇବାକୁ ଚାହେଁ ନାହିଁ, ଯାହାଦ୍ୱାରା ପାଠକ କୁପଥଗାମୀ ହେବ ଏବଂ ତା ମନରେ ହିଂସା, ଦ୍ୱେଷ ଓ କାମପ୍ରବୃତ୍ତି ଉଜ୍ଜୀବିତ ହେବ । ଏହା କେବଳ ବିଜ୍ଞାପିତ ବସ୍ତୁ ବା ବିଷୟର ଗୁଣକୁ ପ୍ରଚାରିତ କରିବାକୁ ଚାହେଁ । 'ହେରିଟେଜ୍'ର ଏହି ପ୍ରକାର ମନୋବୃତ୍ତି ଯୋଗୁଁ ବହୁ ବିଜ୍ଞାପନଦାତା ସେଇ ପତ୍ରିକା ପ୍ରତି ବିମୁଖ ହେଲେ... ସରକାରୀ ବିଜ୍ଞାପନ ଗୁଡ଼ିକ ଊଣା ଅଧିକେ ଦୋଷମୁକ୍ତ । କିନ୍ତୁ ହେରିଟେଜ ପତ୍ରିକାଠାରୁ କମ୍ ପ୍ରସାରିତ ହେଉଥିବା ପତ୍ରିକାମାନ ସରକାରୀ ବିଜ୍ଞାପନ ପାଉଥିବା ବେଳେ ହେରିଟେଜ ଏହି ସୌଭାଗ୍ୟରୁ ବଂଚିତ । ଏହାର ରହସ୍ୟ ହେରିଟେଜ ପତ୍ରିକା-କର୍ତ୍ତୃପକ୍ଷ ଜାଣି ପାରୁ ନାହାନ୍ତି ।

ଯଦି କାଗଜ କଲମରେ ଅତିରଂଜିତ ପ୍ରସାର ସଂଖ୍ୟା ଦେଖାଇ ସରକାରୀ ବିଜ୍ଞାପନ ହାସଲ କରାଯାଇଥାଏ ତାହାହେଲେ ହେରିଟେଜ ଏହା କରି ପାରିବ ନାହିଁ ।''

ପ୍ରକାଶ ଥାଉକି, ଏହି ସମ୍ପାଦକୀୟର ପରବର୍ତ୍ତୀ ସଂଖ୍ୟାପରେ 'ହେରିଟେଜ'ର ପ୍ରକାଶନ ଆର୍ଥିକ କ୍ଷତି ସମେତ ଅନ୍ୟ କେତେକ କାରଣରୁ ବନ୍ଦ କରାଗଲା । ସେ ଯାହାହେଉ, ଏହି ସଂପାଦକୀୟର ଅନ୍ୟତ୍ର ସଂପାଦକ ଶ୍ରୀ ମନୋଜ ଦାସ ଯେଉଁ ଦୋଷାରୋପ କରିଛନ୍ତି, ତାର ସାରାଂଶ ହେଉଛି, ''କ୍ଷୋଭର ବିଷୟ ଯେ, ଯେଉଁମାନେ ହେରିଟେଜକୁ ଭଲ ପାଉଛନ୍ତି ଏବଂ ଶତମୁଖରେ ତାର ପ୍ରଶଂସା କରୁଛନ୍ତି, ସେମାନଙ୍କ ମଧ୍ୟରୁ ସମସ୍ତେ ନ ହେଲେ ସୁଦ୍ଧା ଅନ୍ତତଃ ଯେଉଁ କେତେକଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ, ସେଇ ବ୍ୟକ୍ତିମାନେ ଏଇ ପତ୍ରିକାଟିକୁ ନ କିଣି ଚଳଚ୍ଚିତ୍ର, କ୍ରୀଡ଼ା କିମ୍ବା ଅନ୍ୟାନ୍ୟ ଚାକଚକିଆ ପତ୍ରିକା କିଣୁଛନ୍ତି । ଆମେ ଦୁଃଖିତ ଯେ, ଆମ ବୁଦ୍ଧିଜୀବୀମାନେ ଇନ୍ଦ୍ରିୟଉତ୍ତେଜନାକାରୀ ଜୀବାଣୁ ଦ୍ୱାରା ସଂକ୍ରମିତ ହୋଇଥିବା ଯୋଗୁଁ କୁତୁକୁତୁ ହେବାକୁ ପସନ୍ଦ କରିଥାନ୍ତି ।''

ଶ୍ରୀ ମନୋଜ ଦାସ ସାଂପ୍ରତିକ ବୁଦ୍ଧଜୀବୀଙ୍କର ରୁଚିରେ ଯେଉଁ ଅଧୋଗତି ଘଟିଛି, ସେଥିପ୍ରତି ବିଶେଷ ଆଲୋକପାତ କରି ସମଗ୍ର ବିଷୟଟିକୁ ଯୁକ୍ତିଯୁକ୍ତ ଭାବେ ଆଲୋଚନା କରିବା ପାଇଁ ସୁଯୋଗ ଦେଇଛନ୍ତି । ଯଦି ଦୋଷଗ୍ରସ୍ତ ସମାଜର ଜାଗ୍ରତ ପ୍ରହରୀଭାବେ କାର୍ଯ୍ୟ କରିବାକୁ ଥିବା ବୁଦ୍ଧିଜୀବୀମାନେ ବଜାରୀ, ବାଲୁଙ୍ଗା ଓ ବଦମାଶଙ୍କ ପରି ଖଳ, ସିନେମାର ଶସ୍ତା ପତ୍ରିକା କିମ୍ବା ରାଜନୈତିକ ଗୁଜବ ପ୍ରଚାର କରୁଥିବା ସମ୍ବାଦ-ପତ୍ର ପ୍ରତି ମନ ବଳାନ୍ତି, ତାହାହେଲେ ବିଜ୍ଞାପନ ଦାତାମାନେ କାହାରି ପାଇଁ ସୁସ୍ଥ ବିଜ୍ଞାପନ ଛାପିବେ ? ଲଫଙ୍ଗାଠାରୁ ଆରମ୍ଭ କରି ତଥାକଥିତ ବୁଦ୍ଧିଜୀବୀମାନେ— ସମସ୍ତେ ଯଦି ହାଲୁକା କିମ୍ବା ଶସ୍ତା ମନୋରଞ୍ଜନକାରୀ ସମ୍ବାଦ ଓ କାମୋଦ୍ଦୀପକ ଦୃଶ୍ୟ ପାଇଁ ନ୍ୟୁଜ୍‌ଷ୍ଟଲ ଖୋଜି ବୁଲୁଥିବେ, ତାହାହେଲେ ଶ୍ରୀ ମନୋଜ ଦାସ ନିର୍ମଳ ବିଜ୍ଞାପନ ପାଇଁ ଆତୁର ହୋଇ ଅପେକ୍ଷା କରିବା କେତେ ଦୂର ଫଳପ୍ରସୂ ହେବ ? ସତ କହିଲେ ତଥାକଥିତ ଦୋଷ ମୁକ୍ତ ସରକାରୀ ବିଜ୍ଞାପନ ମାନ ଆମ ବୁଦ୍ଧିଜୀବୀଙ୍କ ସମେତ ସମସ୍ତଙ୍କୁ ପାଣିଚିଆ ଓ ଅନାକର୍ଷଣୀୟ ମନେ ହେଉ ନଥିବ କି ?

ଏଇ କଥା ସତ ଯେ, ସମାଜର ଶୁଭଚିନ୍ତକମାନେ ବିଜ୍ଞାପନଗୁଡ଼ିକୁ ସୁସଂଯତ କରିବା ପାଇଁ କେତେକ କଟକଣା ଜାରି କରିବା ପାଇଁ ପ୍ରୟାସୀ । ଏହି ପ୍ରସଙ୍ଗରେ ପାର୍ଲ୍ୟାମେଣ୍ଟରେ ମେଁ ୧୯୮୭ରେ ଉପସ୍ଥାପିତ କରାଯାଉଥିବା ''ଦୂରଦର୍ଶନରେ ବ୍ୟବସାୟିକ ବିଜ୍ଞାପନ ପ୍ରସାରଣ ବିଧି'' ଉଲ୍ଲେଖନୀୟ । ମହିଳାମାନଙ୍କର ଅଂଗ ତଥା ସେମାନଙ୍କ ସମ୍ମାନହାନିଜନକ କୌଣସି ଚିତ୍ର କିମ୍ବା ପରିବାରରେ ଅଧସ୍ତନ ରୂପେ କାର୍ଯ୍ୟ କରିବା ପାଇଁ ସେମାନଙ୍କୁ ଉସାହିତ

କରିବା ପରି ବିଜ୍ଞାପନମାନ ପ୍ରଦର୍ଶନ କରିବାକୁ ଏଥିରେ ବାରଣ କରାଯାଇଛି । ବିଜ୍ଞାପନରେ କେଉଁ ୩୩ଟି ବିଷୟ ଦେଖାଇବା ଉଚିତ– ତାର ଏକ ତାଲିକା ପ୍ରସ୍ତୁତ କରାଯାଇଛି । ସର୍ବୋପରି ଗୁଳିଚାଳନା, ବୋମାବର୍ଷଣ, ଚିତ୍କାର, ଅଟ୍ଟହାସ୍ୟ ଭଳି ଦର୍ଶକମାନଙ୍କୁ ବିବ୍ରତ କରି ପାରିବା ବିଷୟମାନ ପ୍ରଦର୍ଶନ କରିବା ଅନୁଚିତ । ପୁଣି ଜ୍ୟୋତିଷ, ଚିଟପଣ୍ଡ, ମହାଜନି କାରବାର, ଘରୋଇ ସଞ୍ଚୟ ଯୋଜନା, ବିଦେଶୀ ଜିନିଷ ସଂପର୍କିତ ବିଜ୍ଞାପନ ପାଇଁ ଅନୁମତି ନିଷିଦ୍ଧ କରାଯାଇଛି । ଯାହାହେଉ, କଟକଣାମାନ କେଉଁ ଧରଣର ଓ କେତେ ଦୂର କଡ଼ା ହେବ– ତାହା ବିବାଦୀୟ ।

ବ୍ୟବସାୟିକ ବିଜ୍ଞାପନ ଉପରେ ଯେଉଁ ବିବିଧ କଟକଣାମାନ ଜାରି କରାଯାଇ ପାରେ ଏବଂ ବିଭିନ୍ନ ସମାଜସେବୀ ସଂଗଠନ ଓ ଅନ୍ୟାନ୍ୟ ମତଲବୀ ଗୋଷ୍ଠୀ ବାଦପ୍ରତିବାଦ, ବିକ୍ଷୋଭ ଦ୍ୱାରା ଯେମିତି ଚାପ ସୃଷ୍ଟି କରିପାରନ୍ତି, ଏଥିରେ ବହୁ ବିଜ୍ଞାପନଦାତା ଶଙ୍କିତ ଓ ଭୟଭୀତ ହେବା ଅସମ୍ଭବ ନୁହେଁ । ଏମିତି ବି ହୋଇପାରେ ଯେ, ଏହି ବିଜ୍ଞାପନ ଦାତା–କମ୍ପାନୀମାନେ ହୁଏତ ପତ୍ରପତ୍ରିକାକୁ ବିଜ୍ଞାପନ ଦେବେ ନାହିଁ ଏବଂ ଯଦିବା ଦେବେ, ତାହାହେଲେ ''ପୃଷ୍ଠା ଦାନ କରୁଛୁ'' (ସ୍ପେସ୍ ଡୋନେଟେଡ୍) ବୋଲି କୌଣସି ଚିହ୍ନ ନଥିବା ଖଣ୍ଡେ ଧଳା କାଗଜ ଛାପିବା ପାଇଁ ନିରାପଦ ମଣିବେ । ଏହା ଦ୍ୱାରା ବିଜ୍ଞାପନ ଛାପୁଥିବା ଖବର କାଗଜ ବିଜ୍ଞାପନ – ହାରରେ ତାର ପାଉଣା ଅବଶ୍ୟ ପାଇବ । କିନ୍ତୁ ବିଜ୍ଞାପନଦାତା-କମ୍ପାନୀର ଉତ୍ପାଦିତ ବସ୍ତୁର, ବିଜ୍ଞାପନ ଯୋଗୁଁ, ବିକ୍ରୀରେ କେତେ ଦୂର ଉନ୍ନତି ହୋଇ ପାରିବ ? ପାଠକମାନେ ପତ୍ର ପତ୍ରିକାରେ ବିଜ୍ଞାପନ ନାମରେ ଏଇ ଧରଣର ଧଳା ଶୂନ୍ୟ ଅନାକର୍ଷଣୀୟ ସ୍ଥାନ ଦେଖି ପ୍ରଲୋଭିତ ହୋଇ ପାରିବେ କି ?

ଏଠାରେ ସ୍ମରଣ କରାଯାଇପାରେ ଯେ, ବିଜ୍ଞାପନ ମଧ୍ୟ ଗୋଟିଏ କଳା ଏବଂ କଳାରେ କଳ୍ପନା ରହିବା ଆବଶ୍ୟକ । ତେବେ କଳାରେ ଶୁକ୍ଳ/କୃଷ୍ଣ/ରଂଗୀନ ଅଂଶର ପରିମାଣ ସ୍ଥିର କରିବା ଏକ ବିବାଦୀୟ ବିଷୟ ହୋଇଥିବା ଯୋଗୁଁ ଆମେ ଏଥିରେ ସଂପୃକ୍ତ ହେବାକୁ ଚାହୁଁ ନାହୁଁ । ଯେଉଁମାନେ ବ୍ୟବସାୟିକ ବିଜ୍ଞାପନ ଉପରେ କଟକଣା ଜାରି କରିବାକୁ ଚାହୁଁଛନ୍ତି, ସେମାନେ ଏଥିରେ ମୁଣ୍ଡ ଖେଳାନ୍ତୁ । ତେବେ ଆମେ ଜାଣିବାରେ ବ୍ୟବସାୟିକ ବିଜ୍ଞାପନର ମୂଳ ଉଦ୍ଦେଶ୍ୟ ହେଉଛି ନିଜ ବ୍ୟବସାୟର ପ୍ରସାର.. ଏବଂ, ଯେତେଦୂର ସମ୍ଭବ, ''ସ୍ପେସ ଡୋନେଟେଡ'' ପରି ବିଜ୍ଞାପନ ଦ୍ୱାରା ଏହି ଉଦ୍ଦେଶ୍ୟ ଉତ୍ତମ ଭାବେ ସାଧିତ ନ ହୋଇ ପାରେ ।

ସମ୍ବାଦପତ୍ରରେ ସିନା ''ସ୍ପେସ ଡୋନେଟେଡ'' ପରି ବିଜ୍ଞାପନ ବଳିବ । କିନ୍ତୁ ରେଡ଼ିଓରେ ଏହାର ପଶ୍ନ ଉଠୁ ନଥିବା ଯୋଗୁଁ କେତେକ ବ୍ୟକ୍ତି ବେଶ୍ ଆଶ୍ୱସ୍ତ ହେବେ ।

ଏଠାରେ ସ୍ପଷ୍ଟ କରିଦେବା ଉଚିତ ହେବ ଯେ, ବିଜ୍ଞାପନ ସଂପର୍କରେ ଆଲୋଚନା କରିବା ବେଳେ, ରେଡ଼ିଓର ବିଶେଷ ଗୁରୁତ୍ୱ ଥାଉ ବା ନଥାଉ; ଟିଭି ପ୍ରତି ଆମ ଦୃଷ୍ଟି ସ୍ୱତଃ ଆକର୍ଷିତ ହୋଇଯାଏ । ବିଭିନ୍ନ ସମୀକ୍ଷାରୁ ଜଣାଯାଏ ଯେ, ପ୍ରାୟ ପ୍ରତ୍ୟେକ ବିଷୟରେ ଓ ବିଭାଗରେ ସଂବାଦପତ୍ର କିମ୍ବା ରେଡିଓ ଅପେକ୍ଷା ଦୂରଦର୍ଶନ ଯଥେଷ୍ଟ ପ୍ରଭାବଶାଳୀ । ଏହାର ପ୍ରମାଣ ହିସାବରେ ରାମାୟଣ ଓ ମହାଭାରତ ପରି ଟିଭି ଧାରାବାହିକର ଅସାଧାରଣ ଲୋକପ୍ରିୟତାକୁ ନିଆଯାଇପାରେ । ତେବେ ମନରେ ପ୍ରଶ୍ନ ଉଠୁଛି: ଏମାନଙ୍କର ବାସ୍ତବ ସ୍ଥିତି ଓ ସ୍ୱରୂପ କଣ ହୋଇପାରେ ?

ଉଦାହରଣ ଭାବେ, ରାମାୟଣ ବିଷୟରେ ବିଚାର କରାଯାଉ । ଅତି ଜ୍ଞାନୀ ଓ ଅଜ୍ଞାନୀଙ୍କ ପାଇଁ ଏହାର ତାତ୍ପର୍ଯ୍ୟ ସଂପର୍କରେ ପୃଥକ୍ ପୃଥକ୍ ଭାବେ ବିଶ୍ଳେଷଣ କରାଯାଇପାରେ । ବୟୋଜ୍ୟୋଷ୍ଠନେତା ଓ ବିଶିଷ୍ଟ ପଣ୍ଡିତ ଶ୍ରୀ କମଳାପତି ତ୍ରିପାଠୀଙ୍କ ମତ ଏହି ମର୍ମରେ ଉଲ୍ଲେଖନୀୟ, "ମୁଁ ଟିଭିରେ ରାମାୟଣ ସିରିଆଲ୍ କେବେ ଦେଖି ନାହିଁ । ମୁଁ ଏହାକୁ କେବେ ଦେଖିବାକୁ ଚାହେଁ ନାହିଁ । କାରଣ ମୁଁ ତୁଳସୀ ରାମାୟଣ ଶହେରୁ ଅଧିକ ଥର ଓ ବାଲ୍ମିକୀ ରାମାୟଣ ଆଠଥର ପଢ଼ି ସାରିଛି ।" (ଷ୍ଟେଟ୍‌ସ୍‌ମ୍ୟାନ୍, ୩୧.୭.୮୮) । ଅବଶ୍ୟ ଶ୍ରୀ ତ୍ରିପାଠୀଙ୍କ ମତ ପ୍ରତିନିଧିମୂଳକ ନ ହୋଇପାରେ । ତଥାପି ତାଙ୍କ ମତର ଯଥେଷ୍ଟ ସମର୍ଥକ ଥାଇ ପାରନ୍ତି ବୋଲି କେହି କେହି ଯୁକ୍ତି କରିପାରନ୍ତି ।

ପଣ୍ଡିତମାନଙ୍କର ରାମାୟଣ ଧାରାବାହିକ ପ୍ରତି ଏହି ପ୍ରକାର ସମ୍ଭାବିତ ଅନାସକ୍ତି ଥିବାବେଳେ ଯେଉଁମାନେ ବାଳୁତ— ଯାହାରକି ଜ୍ଞାନ ବିଶେଷ ବିକଶିତ ହୋଇ ନାହିଁ— ସେମାନେ ଏହି ଧାରାବାହିକୀକୁ କେଉଁ ଦୃଷ୍ଟିରେ ଦେଖିଥାନ୍ତି ? ଏଇ କଥା ସତ ଯେ, ସେମାନେ ନିର୍ନିମେଷ ନୟନରେ ଏହି ପୌରାଣିକ ଧାରାବାହିକୀ ଦେଖିଥାନ୍ତି; କିନ୍ତୁ ଭିନ୍ନ ଦୃଷ୍ଟିରେ । ସେମାନେ ସାଧାରଣତଃ ମାଙ୍କଡ଼ାମି କିମ୍ବା ଯୁଦ୍ଧ ପରି ରୋମାଞ୍ଚକାରୀ ଦୃଶ୍ୟରେ ବେଶୀ ଆଗ୍ରହୀ ହୋଇଥାନ୍ତି । ଏହାର ଯତ୍‌କିଂଚିତ ସୂଚନା ବା ଲକ୍ଷଣ ୧୯୮୮ ସାଲରେ ଶିଶୁଦିବସ ଉପଲକ୍ଷେ ଓଡ଼ିଶା ସରକାରଙ୍କ ଜିଲ୍ଲା କ୍ରୀଡ଼ା ସଂସ୍ଥା ପକ୍ଷରୁ ସମ୍ବଲପୁରରେ ଅନୁଷ୍ଠିତ ହୋଇଥିବା ଗୋଟିଏ କୌତୁକ ପୋଷାକ (ଫେନ୍‌ସି ଡ୍ରେସ) ପ୍ରତିଯୋଗିତାରୁ ଜଣାଯାଏ । ସେଥିରେ ପ୍ରାୟ ଶହେ ଜଣ ପ୍ରତିଯୋଗୀଙ୍କ ମଧ୍ୟରୁ କୋଡ଼ିଏ ଜଣ ହନୁମାନ ବେଶ ସାଜି ଥିଲେ ଓ ଯୁଦ୍ଧ କରିବା ଭଂଗୀରେ ଗଦା ହଲାଇ ପ୍ରତିଯୋଗିତା-ସ୍ଥଳରେ ଅବତୀର୍ଣ୍ଣ ହୋଇଥିଲେ ! ତତ୍‌କାଳୀନ ଜନପ୍ରିୟ ଟିଭି ସିରିଆଲ୍ ରାମାୟଣର ଏହା ପ୍ରଭାବ ବୋଲି ମନେ କରାଯାଏ ।

ଠିକ୍ ସେମିତି ଇତ୍ୟବସରରେ ଧନୁଶର ପିଲାଙ୍କ ଭିତରେ କେମିତି ପ୍ରିୟ ହୋଇ ଉଠିଛି, ତାର ରିପୋର୍ଟ ବହୁ ସୂତ୍ରରୁ ମିଳୁଛି । ବିଭିନ୍ନ ଚକ୍ଷୁ-ଚିକିତ୍ସାଳୟରୁ ପ୍ରାପ୍ତ ସମ୍ବାଦରୁ ଜଣାଯାଏ

ଯେ, ଆଜିକାଲି ବହୁ ଶିଶୁ କୌତୁକରେ ଧନୁଶର ଚଳାଇବା ଯୋଗୁଁ ନିଜର ମୂଲ୍ୟବାନ ଆଖି ଦୁର୍ଘଟଣାବଶତଃ ହରାଇଥାନ୍ତି । ଏହାର ମୁଖ୍ୟ କାରଣ ହେଉଛି ଯେ, ଶିଶୁମାନେ ଉକ୍ତ ପୌରାଣକ ଧାରାବାହିକୀ ଦେଖି ଧନୁର୍ବିଦ୍ୟା ପ୍ରତି ଆକର୍ଷିତ ହେଉଛନ୍ତି ଏବଂ ନିଜ ଅବସର ବିନୋଦନ ବେଳେ ଧନୁଶର ଚାଳନାରେ ମାତୁଛନ୍ତି । ଫଳରେ ପୂର୍ବେ ପିଲାଙ୍କ ମଧ୍ୟରେ ଯେଉଁ ବନ୍ଧୁକ ପ୍ରିୟ ଖେଳନା ସାମଗ୍ରୀ ହୋଇଥିଲା, ତାର ସ୍ଥାନ ବର୍ତ୍ତମାନ ଧନୁଶର ଗ୍ରହଣ କରୁଛି । ସତେ ଯେମିତି ଟିଭି ଯୋଗୁଁ ଆମେ ଆମ ପ୍ରାଚୀନ ପରଂପରା ଫେରି ପାଇଲେ !

ଏହି ଧାରାବାହିକୀର ପୌରାଣିକ ବିଷୟବସ୍ତୁ ପିଲାଙ୍କ ମୁଣ୍ଡରେ କେତେ ଦୂର ପଶୁଛି, ତାହା ଆମେ ଜାଣୁ ନାହୁଁ । କିନ୍ତୁ ଯୁଦ୍ଧ ଦୃଶ୍ୟ ଯେ ସେମାନଙ୍କୁ ବେଶ୍ ଭଲ ଭାବେ ଜାବୁଡ଼ି ଧରୁଛି, ଏଥିରେ କୌଣସି ସନ୍ଦେହ ନାହିଁ । ଅଜ୍ଞାନୀ ବାଳୁତମାନେ ରାମାୟଣ-ମହାଭାରତର ବିଭିନ୍ନ ଅଧ୍ୟାୟରେ ପ୍ରଦର୍ଶିତ ହେଉଥିବା ଧନୁର୍ବିଦ୍ୟାର ଆକର୍ଷଣୀୟ ଓ ଆନନ୍ଦଦାୟକ ଅଂଶରେ ଏତେ ଦୂର ଆତ୍ମବିସ୍ମୃତି ହୋଇଯାଉଛନ୍ତି ଯେ, ଉକ୍ତ ପୁରାଣ ଶାସ୍ତ୍ରରେ ଥିବା ଗୂଢ଼ତତ୍ତ୍ୱ ଓ ନୀତିଶାସ୍ତ୍ର ପାଇଁ ସେମାନେ ଅବକାଶ ପାଉ ନାହାନ୍ତି । ସେତେବେଳେ ଆମ ମନରେ ଧାରଣା ଜନ୍ମେ—ସତେ ଯେମିତି ଧନୁଶର ବିଜ୍ଞାପନ ପାଇଁ ଏହି ଧାରାବାହିକୀମାନ ସର୍ଜନା କରାଯାଇଛି ମାତ୍ର ।

ଏହି ପରିସ୍ଥିତିରେ ଜଣେ ମନ୍ତବ୍ୟ ଦେଇପାରେ ଯେ, କୌଣସି ଧନୁଶର-ନିର୍ମାଣ କମ୍ପାନୀ ପ୍ରତ୍ୟକ୍ଷ ଭାବେ ଶତ ସହସ୍ର ବିଜ୍ଞାପନ ବଳରେ ଯାହା ହାସଲ କରି ପାରି ନଥାନ୍ତା, ତାହା ଏହି ପୌରାଣିକ ଧାରାବାହିକୀର ପ୍ରସାରଣରୁ, ଅବାଞ୍ଛିତ ହେଲେ ସୁଦ୍ଧା, ସମ୍ଭବ ହୋଇ ପାରିଲା । ତେଣୁ ବିଜ୍ଞାପନର ଯେ ଏମିତି ପରୋକ୍ଷ ରୂପ ଥାଇପାରେ, ତାହାର ସୂଚନା ଏଥିରୁ ମିଳୁଛି ।

ପ୍ରକୃତ ତଥ୍ୟକୁ ପୃଷ୍ଠଭୂମିରେ ଲୁଚାଇ ରଖି ନିଜ ଇପ୍‌ସିତ କୌଣସି ଏକ ବିଷୟ ବା ବସ୍ତୁ ଆଡ଼କୁ ଲୋକମାନଙ୍କୁ ପ୍ରଲୋଭିତ କରିବା ବିଜ୍ଞାପନର ଉଦ୍ଦେଶ୍ୟ ହୋଇଥାଏ । ଏହି ମାନଦଣ୍ଡ ଅନୁସାରେ ଉକ୍ତ ଦୁଇଟି ଧାରାବାହିକୀକୁ କେହି କେହି ଧନୁଶରର ପ୍ରସାର-ପ୍ରସଙ୍ଗରେ ମାପି ପାରନ୍ତି, ଏବଂ ଏହି ସିରିଆଲ୍‌ଦ୍ୱୟ ସଂପର୍କରେ କଟୁ ଓ ପ୍ରତିକୂଳ ମନ୍ତବ୍ୟ ଦେଇ ପାରନ୍ତି । ଏହା ଅତି ଦୁର୍ଭାଗ୍ୟଜନକ ମନେ ହେବ । ତେବେ ଏଥିପାଇଁ ଏହି ସିରିଆଲ୍‌ମାନଙ୍କର ପ୍ରଯୋଜକମାନଙ୍କୁ ଦୋଷ ନ ଦେଇ ଆମକୁ ପ୍ରକୃତ କାରଣ ଅନ୍ୟତ୍ର ଖୋଜି ବାହାର କରିବାକୁ ପଡ଼ିବ ।

ନଭେମ୍ବର ୧୯୮୮ରେ "ଜାତୀୟ ଗଣମାଧ୍ୟମ ଅନୁଧାନ ସଂସ୍ଥା" ତରଫରୁ ୮୪ଟି ସହରରେ ଥିବା ୩୦୦ଟି ସ୍କୁଲ୍‌ର ୨,୮୫୦ ଜଣ ଛାତ୍ରଙ୍କ ଉପରେ ଗୋଟିଏ ସର୍ଭେ କରାଯାଇଥିଲା । ସେଥିରୁ ଜଣା ଗଲା ଯେ, ସେମାନଙ୍କ ମଧ୍ୟରୁ ଯେଉଁ ୯୦ ଭାଗ ସ୍କୁଲଛାତ୍ର

ଟିଭି ଦେଖନ୍ତି, ସେମାନେ ବିଜ୍ଞାପନଗୁଡ଼ିକୁ ବେଶ୍ ଆଗ୍ରହର ସହିତ ଲକ୍ଷ୍ୟ କରିଥାନ୍ତି । ପ୍ରାୟ ୩୩୦ଟି ଯାଏଁ ବିଜ୍ଞାପନ ସେମାନେ ଅକ୍ଳେଶରେ ମନେ ରଖିଥାନ୍ତି । ପୁଣି ଯେଉଁ ବିଜ୍ଞାପନଗୁଡ଼ିକ ସମ୍ବାଦପତ୍ରରେ ଆକର୍ଷଣୀୟ ଲାଗୁ ନଥାଏ, ସେଗୁଡ଼ିକ ଟିଭିରେ କୁଆଡ଼େ ସେମାନଙ୍କୁ ଅତି ଚମତ୍କାର ଦେଖାଯାଏ । ଏତଦ୍‌ବ୍ୟତୀତ ଟିଭିରେ ଚିତ୍ରହାର, ଚଳଚ୍ଚିତ୍ର ପ୍ରତି ସେମାନେ ଯେତେଦୂର ଆଗ୍ରହୀ ହୋଇଥାନ୍ତି, ଯୁକ୍ତିସି କାର୍ଯ୍ୟକ୍ରମ ତଥା ବିଜ୍ଞାନ ସମ୍ବନ୍ଧୀୟ ଓ କୁଇଜ କାର୍ଯ୍ୟକ୍ରମ ପ୍ରତି ସେମାନେ ସେତେଦୂର ବୀତସ୍ପୃହ ହୋଇଥାନ୍ତି ।

ଏଥିରୁ ସ୍ପଷ୍ଟ ହୁଏ ଯେ, ସେମାନେ ଟିଭି କାର୍ଯ୍ୟକ୍ରମକୁ ହାଲୁକା ମନୋରଞ୍ଜନର ଏକ ମାଧ୍ୟମ ବୋଲି ବିଚାର କରନ୍ତି । ଏଣୁ ଆଶଙ୍କା ଜନ୍ମେ ଯେ, ଯେଉଁ ପିଲାମାନେ ଟିଭିକୁ "ଇଡ଼ିଏଟ୍‌ସବକ୍ସ" ବୋଲି ଗ୍ରହଣ କରିଥାନ୍ତି, ସେମାନେ ରାମାୟଣ-ମହାଭାରତର ଅନ୍ତର୍ନିହିତ ମୂଲ୍ୟବୋଧ ପ୍ରତି ଯେତେ ଇଚ୍ଛୁକ, ତା ଅପେକ୍ଷା ଯୁଦ୍ଧ ଓ ମାଙ୍କଡ଼ାମି ଦୃଶ୍ୟ ଦେଖିବା ପାଇଁ ଅଧିକ ଆତୁର । ଏହି ପରିପ୍ରେକ୍ଷୀରୁ ଜଣାଯାଏ ଯେ, ବ୍ୟବସାୟିକ ବିଜ୍ଞାପନ ଦୃଷ୍ଟିକୋଣରୁ ଟିଭିର ମୂଲ୍ୟ ସର୍ବାଧିକ । ତଥାପି ଏଥିରେ କେତେକ ମୌଳିକ ଅଭାବ ପରିଲକ୍ଷିତ ହୁଏ । ଯଥା: ସମ୍ବାଦପତ୍ରରେ ମୁଦ୍ରିତ ଅକ୍ଷର ବା ଚିତ୍ରର ସ୍ଥାୟିତ୍ୱ ଏହା ହାସଲ କରି ନଥାଏ । ଏହି କାରଣରୁ ଟିଭିର ପ୍ରଚଣ୍ଡ ପ୍ରଭାବ ଓ ପ୍ରବଳ ପ୍ରଭୁତ୍ୱ ସତ୍ତ୍ୱେ, ସମ୍ବାଦ ପତ୍ରର କାଟତି ହ୍ରାସ ହୋଇ ନାହିଁ । ଏତଦ୍‌ବ୍ୟତୀତ ଅନ୍ୟ କାରଣରୁ ଶ୍ରୀ କମଳାପତି ତ୍ରିପାଠୀ ଯେପରି ରାମାୟଣ ଟିଭି ସିରିଅଲ୍‌ର ନ୍ୟୂନତା ପ୍ରତିପାଦନ କରିଛନ୍ତି—ତାହା ଏହି ପରିପ୍ରେକ୍ଷୀରେ ମହତ୍ତ୍ୱପୂର୍ଣ୍ଣ ।

ବର୍ତ୍ତମାନ ପୂର୍ବବର୍ଣ୍ଣିତ "ବ୍ୟବସାୟିକ ବିଜ୍ଞାପନ ପ୍ରସାରଣ ବିଧି"ଟି ପୁନଃ ଉତ୍‌ଥାପିତ କରାଯାଉ । ଏଥିରେ ସବୁଠାରୁ ଉଲ୍ଲେଖଯୋଗ୍ୟ ବିଷୟ ହେଉଛି ଯେ, ବିଜ୍ଞାପନ ଓ ସମ୍ବାଦ ମଧ୍ୟରେ ଯଥାଯଥ ପାର୍ଥକ୍ୟ ରକ୍ଷା କରାଯିବା ଉଚିତ । କିନ୍ତୁ କାର୍ଯ୍ୟକ୍ଷେତ୍ରରେ ଆମ ପତ୍ରପତ୍ରିକା ଓ ଅନ୍ୟାନ୍ୟ ଗଣମାଧ୍ୟମର ବହୁ ସମ୍ବାଦ ଯେ ବିଜ୍ଞାପନର ଛଦ୍ମବେଶ— ଏଥିରେ କୌଣସି ସନ୍ଦେହ ନାହିଁ । ସମ୍ବାଦପତ୍ରଗୁଡ଼ିକ ଯେ ଆମୂଳଚୂଳ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ବିଜ୍ଞାପନର ଅନ୍ୟ ରୂପ, ଏହା ଆମକୁ ଉଣାଅଧିକେ ସ୍ୱୀକାର କରିବାକୁ ପଡ଼ିବ ।

ଖବରକାଗଜରୁ ବିଜ୍ଞାପନ ଅଂଶ ତକ ବାଦ ଦେଲେ, ଆମେ ଯେଉଁ ଅବଶିଷ୍ଟ ଭାଗ ଦେଖୁ ସେଥିରେ ଅବଶ୍ୟ ସମ୍ବାଦ ପରିବେଷିତ ହୋଇଥାଏ । କିନ୍ତୁ ଏଇ ସମ୍ବାଦ କେଉଁ ଧରଣର ? ଏହା କଣ ନିରପେକ୍ଷ ? ସାଧାରଣତଃ ପ୍ରତିଟି ସମ୍ବାଦ ଉପସ୍ଥାପନା କରିବା ବେଳେ କୌଣସି ଏକ ନିର୍ଦ୍ଦିଷ୍ଟ ପକ୍ଷପାତୀ ଦୃଷ୍ଟି କୋଣ ସ୍ପଷ୍ଟଭାବେ ବାରି ହୋଇଯାଏ । ଯାହାକି ସମ୍ପାଦକୀୟ ସ୍ତମ୍ଭରେ ସୀମିତ ରହିବା କଥା, ତାହା ସମ୍ବାଦପତ୍ରର ସର୍ବାଙ୍ଗରେ ଅତି

ସୂକ୍ଷ୍ମଭାବେ ଅନୁପ୍ରବେଶ କରିଥାଏ । ସତେ ଯେମିତି ଏଇ ବିଶ୍ୱରେ ଯାହା କିଛି ଘଟୁଛି, ତାହା କେବଳ ସମ୍ବାଦପତ୍ର-କର୍ତ୍ତୃପକ୍ଷଙ୍କ ଦୃଷ୍ଟିକୋଣ-ଅନୁସାରେ ସୃଷ୍ଟ ଓ ନିୟନ୍ତ୍ରିତ ।

ଏହି କାରଣ ବ୍ୟତୀତ ସମ୍ବାଦପତ୍ରର ଅଧୋଗତି ପାଇଁ କେତେକାଂଶରେ ସାଂପ୍ରତିକ ଶାସନବ୍ୟବସ୍ଥା ଓ ସ୍ଥିତିଦାୟୀ । ଯଥା: ଏପ୍ରିଲ ୧୯୮୯ରେ ଏକଦା ବେନଜୀର ଭୁଟ୍ଟୋ ତାଙ୍କ ମନ୍ତ୍ରୀମଣ୍ଡଳର ସଂଖ୍ୟାଲଘୁ ବ୍ୟାପାର ବିଭାଗ ରାଷ୍ଟ୍ରମନ୍ତ୍ରୀ ଫାଦର୍ ଜୁଲିଅସ୍‌ଙ୍କୁ ଚିହ୍ନି ନ ପାରି ଅପ୍ରସ୍ତୁତ ହୋଇ ଯାଇଥିଲେ ଓ ପରାମର୍ଶ ଦେଇଥିଲେ ଯେ, ଖବରକାଗଜ ଓ ଗଣମାଧ୍ୟମରେ ଜୁଲିଅସ୍ ନିଜର ବିବୃତି ଓ କାର୍ଯ୍ୟକଳାପମାନ ଜୋରସୋରରେ ପ୍ରଚାରିତ କରାଇ ସୁପରିଚିତ ହେବା ଆବଶ୍ୟକ । ନିଜ ମନ୍ତ୍ରଣାଳୟର କାର୍ଯ୍ୟ ଜଣେ ମନ୍ତ୍ରୀ ପକ୍ଷରେ ଯେତିକି ଉପାଦେୟ; ତା ଅପେକ୍ଷ ବିଜ୍ଞାପନ କମ୍ ଉପାଦେୟ ନୁହେଁ ବୋଲି ବେନଜୀର ତାଙ୍କୁ ପରାମର୍ଶ ଦେବା ତାତ୍ପର୍ଯ୍ୟପୂର୍ଣ୍ଣ ।

ଏପରି ରାଜନୈତିକ ଦୃଷ୍ଟିକୋଣରୁ କେବଳ ନୁହେଁ; ସମ୍ବାଦପତ୍ର ବର୍ତ୍ତମାନ ଅନ୍ୟାନ୍ୟ ବହୁଦିଗରୁ ଚାପଗ୍ରସ୍ତ । କେବଳ ମନ୍ତ୍ରୀମାନେ ନିଜର ବିବୃତି ଖବରକାଗଜର ଆଖିଦୃଶିଆ ସ୍ଥାନମାନଙ୍କରେ ଛାପିବା ପାଇଁ ଆଗ୍ରହ ପ୍ରକାଶ କରି ନଥାନ୍ତି; ଅନ୍ୟମାନେ ମଧ୍ୟ ଏଥିପାଇଁ ପ୍ରବଳ ପ୍ରତିଦ୍ୱନ୍ଦ୍ୱୀ ସାଜିଥାନ୍ତି; କାରଣ ଏହି ଉପାୟରେ ପରୋକ୍ଷଭାବେ ଆତ୍ମବିଜ୍ଞାପନ ଓ ସ୍ୱାର୍ଥ ସିଦ୍ଧ କରିବା ସମ୍ଭବପର ।

ସବୁଠାରୁ ବିସ୍ମୟଜନକ ବିଷୟ ହେଉଛି ଯେ, ଯେଉଁ ବୈଜ୍ଞାନିକମାନେ ନିଜ ବିଜ୍ଞାନାଗାରର ଚାରିକାନ୍ଥ ମଧ୍ୟରେ ଏକଦା ଆବଦ୍ଧ ରହି ବାହାର ଦୁନିଆଠାରୁ ବିଚ୍ଛିନ୍ନ ଥିଲେ, ସେମାନେ ମଧ୍ୟ ଏଣିକି ସାମ୍ବାଦିକ-ସମ୍ମିଳନୀ ଆହ୍ୱାନ କଲେଣି ଓ ଖବରକାଗଜରେ ବିବୃତି ପ୍ରକାଶ କରିବା ପାଇଁ ଦୌଡ଼ ଆରମ୍ଭ କଲେଣି ।

''ସାଇନ୍‌ସ ରିପୋର୍ଟର୍''ର ସଂପାଦକ ଶ୍ରୀ ବିମନ ବସୁ ଏହି ମର୍ମରେ କହିଛନ୍ତି, ''ଉଚ୍ଚ ଉତ୍ତାପରେ ସୁପରିବାହୀ ଓ ଶୀତଳ ଗଳନ (ଫ୍ୟୁଜନ୍) ପରି ଦୁଇଟି ସାଂପ୍ରତିକ ବିଷୟବିଚାର କରାଯାଉ । ବୈଜ୍ଞାନିକମାନେ ସେମାନଙ୍କ ତଥ୍ୟମାନ ଗବେଷଣାତ୍ମକ ଜର୍ଣ୍ଣାଲ୍‌ରେ ପ୍ରକାଶ କରିବା ପୂର୍ବରୁ ସାମ୍ବାଦିକ ସମ୍ମିଳନୀରେ ନଚେତ୍ ସର୍ବସାଧାରଣରେ ଘୋଷଣା କରି ଦେଉଛନ୍ତି । ଏଥିରେ ନିଜ ସଫଳତାର ପ୍ରକୃତ ଚିତ୍ର ଦେବା ଅପେକ୍ଷା ଅତିରଂଜନ ଅଧିକଥାଏ । ଏହାଦ୍ୱାରା ବୈଜ୍ଞାନିକ-ସମାଜ ଅଧିକ କ୍ଷତିଗ୍ରସ୍ତ ହେଉଛି; କାରଣ ବୈଜ୍ଞାନିକ ଗବେଷଣା ପ୍ରତି ସର୍ବସାଧାରଣଙ୍କ ମୋହ ଭଙ୍ଗ ହୋଇଯାଏ ଏବଂ ସେମାନେ ବିତୃଷ୍ଣା ପ୍ରକାଶ କରିଥାନ୍ତି ।'' (ସାଇନ୍‌ସ ରିପୋର୍ଟର, ଫେବୃଆରି ୧୯୯୦) ।

ଅବଶ୍ୟ ବହୁଦିନ ପୂର୍ବରୁ ବିଦେଶରେ ଏହି ଅବାଞ୍ଛନୀୟ ଉଦ୍ୟମ ଆରମ୍ଭ ହୋଇସାରିଛି । ଗ୍ରେଟବ୍ରିଟେନ୍‌ର ଲୋଫବୋରୋ ବିଶ୍ୱବିଦ୍ୟାଳୟର ପାଠାଗାର ଓ ସୂଚନା

ବିଭାଗର ମୁଖ୍ୟ ପ୍ରଫେସର ମେଡୋସ୍ ଏହି ସଂପର୍କରେ ନିଜ ଅନୁଭୂତିରୁ ଯାହା ବର୍ଣ୍ଣନା କରିଛନ୍ତି (ଫେବୃଆରି ୧୯୯୦), ତାର ସାରାଂଶ ହେଉଛି:

''ପ୍ରାୟ ତିରିଶି ବର୍ଷ ପୂର୍ବେ ମୁଁ ଗବେଷଣା-ଛାତ୍ର ଥିବାବେଳେ ଥରେ ରାସ୍ତାରେ ଗୋଟିଏ ଖବରକାଗଜର ପ୍ରଥମ ପୃଷ୍ଠାରେ ଯେଉଁ ଶୀର୍ଷକଟି ଦେଖିବାକୁ ପାଇଥିଲି, ତାହା ଗୋଟିଏ ପ୍ରମୁଖ ବୈଜ୍ଞାନିକ ଆଲୋଚନାର ବିଷୟବସ୍ତୁ ଥିଲା । ତା ପରଦିନ ଯେତେବେଳେ ମୁଁ ଯାତ୍ରା ସାରି ସମ୍ମେଳନ-କକ୍ଷରେ ପହଞ୍ଚିଲି, ଉକ୍ତ ବିଜ୍ଞାନ ବିଷୟଟି ଖବରକାଗଜର ସେଇ ବକ୍ତା ଜଣକ କହିବା ଆରମ୍ଭ କଲେ । ଏଥିରୁ ଜଣାଯାଏ ଯେ, ଗବେଷଣାର ପ୍ରମୁଖ ବିଷୟ ବସ୍ତୁ ବୈଜ୍ଞାନିକ-ସମ୍ମେଳନରେ ଆଲୋଚନା ହେବା ପୂର୍ବରୁ ଖବରକାଗଜରେ ପ୍ରକାଶିତ ହୋଇ ଯାଉଛି । ଏହା ଏକ ମନ୍ଦ ଆଚରଣ । କିନ୍ତୁ ସେଇ କାଳରୁ ଅଦ୍ୟାବଧି ଏହି ଅବାଞ୍ଛିତ ପରମ୍ପରା ବୈଜ୍ଞାନିକ ମହଲରେ ପ୍ରଚଳିତ ହୋଇ ଆସୁଛି ।''

ଏହାର କାରଣ ହେଉଛି ଯେ, ବର୍ତ୍ତମାନ ବହୁ ବୈଜ୍ଞାନିକ ଓ ବିଭିନ୍ନ ବିଜ୍ଞାନ-ସଂସ୍ଥା ନିଜ ଗବେଷଣା ପାଇଁ ପାଣ୍ଠି ସଂଗ୍ରହ କରିବାକୁ ପରସ୍ପର ମଧ୍ୟରେ ତୀବ୍ର ପ୍ରତିଦ୍ୱନ୍ଦିତାରେ ମାତିଛନ୍ତି । ତେଣୁ ସେମାନେ ଖବରକାଗଜ ମାଧ୍ୟମରେ ନିଜ ବିଜ୍ଞାନ-ଯୋଜନାକୁ ବଢ଼େଇ ଚଢ଼େଇ ଉପସ୍ଥାପନ କରିଥାନ୍ତି । ସମ୍ବାଦପତ୍ରମାନେ ମଧ୍ୟ ବୈଜ୍ଞାନିକମାନଙ୍କ ବିବୃତିକୁ ଆହୁରି ଅଧିକ ଅତିରଂଜିତ ଓ ଚମକପ୍ରଦ ଭାବେ ମୁଦ୍ରଣ କରି ପାଠକମାନଙ୍କୁ ଆକର୍ଷିତ କରିବା ପାଇଁ ଚେଷ୍ଟା କରିଥାନ୍ତି ।

ଏହି ପରିପ୍ରେକ୍ଷୀରେ ସ୍ପଷ୍ଟ ଧାରଣା ଜନ୍ମେ ଯେ, ଖବରକାଗଜର ପ୍ରତିଟି ପୃଷ୍ଠା ବିଜ୍ଞାପନ ଦ୍ୱାରା ପ୍ରତ୍ୟକ୍ଷ ବା ପ୍ରଚ୍ଛନ୍ନ ଭାବେ ଭାରାକ୍ରାନ୍ତ । ପ୍ରକୃତରେ ଭିନ୍ନ ଭିନ୍ନ ଦୃଷ୍ଟିରୁ ପ୍ରତୀତ ହୁଏ ଯେ, ବର୍ତ୍ତମାନ ବିଜ୍ଞାପନ ସିଂହାସନରୂଢ଼ ଓ ଏହାର ରାଜୁତି ଚାଲିଛି । ବିଜ୍ଞାପନର ଶକ୍ତି ଓ ସାମର୍ଥ୍ୟ ଏତେ ଦ୍ରୁତ ଗତିରେ ବୃଦ୍ଧି ପାଇବାରେ ଲାଗିଛି ଯେ, ଏହା ନିରଙ୍କୁଶ ଓ ସ୍ୱେଚ୍ଛାଚାରୀ ହେବା ବିପଦ ସୃଷ୍ଟି ହେଲାଣି ।

ସଂପ୍ରତି ଯେଉଁମାନେ ବିଜ୍ଞାପନରେ ଶାଳୀନତା ଓ ସଂଯମ ରକ୍ଷା କରିବା ପାଇଁ ନିଷ୍ଠାପର ଉଦ୍ୟମ କରୁଛନ୍ତି, ସେମାନେ ବହୁ ଅସୁବିଧା ଓ ବାଧାବିଘ୍ନର ସମ୍ମୁଖୀନ ହେଉଛନ୍ତି । ଯଥା: ହେରିଟେଜ ପରି ମୂଲ୍ୟବୋଧ ଭିତ୍ତିକ, ମାର୍ଜିତ-ରୁଚି ସଂପନ୍ନ ପତ୍ରିକା । ଉଲ୍ଲେଖନୀୟ ବିଷୟ ହେଉଛି ଯେ, ବିଜ୍ଞାପନ ପାଇବା ପାଇଁ ନିଜ ଆଦର୍ଶରୁ ବିଚ୍ୟୁତ ନ ହୋଇ, ଯେଉଁମାନେ ଭାଙ୍ଗି ଧ୍ୱଂସ ହୋଇଯାଇଛନ୍ତି ପଛକେ, ନଇଁଯାଇ ନାହାନ୍ତି; ଦିନେ ଇତିହାସ ଏହି ଶହୀଦମାନଙ୍କର ନ୍ୟାଯ୍ୟ ମୂଲ୍ୟାଙ୍କନ କରିବ ।

ତେବେ ସେ ଯାହାହେଉ, ବର୍ତ୍ତମାନ ଆଦର୍ଶକୁ ଖାତିର୍ କରି ଯେଉଁମାନେ ଭାଙ୍ଗିଯିବାକୁ ପସନ୍ଦ କରି ନାହାନ୍ତି; ବରଂ ମାଡ଼ି ମକଚି ଚାଲିଛନ୍ତି, ସେମାନେ କୌଣସି ମତେ ପରିସ୍ଥିତି

ସମ୍ଭାଳି ଥାଚି । କିନ୍ତୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ସେଇମାନେ ଗ୍ରହଣ କରୁଛନ୍ତି, ଯେଉଁମାନେ ବର୍ତ୍ତମାନ କୌଣସି ମୂଲ୍ୟବୋଧ ବା ଆଦର୍ଶକୁ ସ୍ୱୀକାର କରୁ ନାହାନ୍ତି । ଏହି ବ୍ୟକ୍ତିମାନେ ସଂପ୍ରତି ବିଜ୍ଞାପନ ପ୍ରଣେତା ଓ ବିଜ୍ଞାପନ ଗ୍ରହୀତାଙ୍କ ମଧ୍ୟରେ ଅଗ୍ରଣୀ । ଏମାନେ ବର୍ତ୍ତମାନ ବିଜ୍ଞାପନର ପ୍ରଚଳିତ-ଧାରାର ପ୍ରବର୍ତ୍ତକ ଏବଂ ଏହି ପ୍ରବଳ ସ୍ରୋତର ବାସ୍ତବ ସ୍ଥିତି କଳନା କରିବା ଆମ ପାଇଁ ଅତି ଜରୁରୀ । ସାମାଜିକ ଦୃଷ୍ଟିକୋଣରୁ ମଧ୍ୟ ତାତ୍ପର୍ଯ୍ୟ ପୂର୍ଣ୍ଣ ।

ଆମ ଯୁଗରେ ବିଜ୍ଞାପନକୁ କେନ୍ଦ୍ର କରି ଯେଉଁ ପ୍ରକ୍ରିୟାମାନ ସଂଘଠିତ ହେଉଛି, ତାହା ଅନୁମାନ କରିବା ପାଇଁ କେତେକ ଜାପାନୀ ସମାଲୋଚକମାନଙ୍କର ମତାମତ ଉଦ୍ଧୃତ କରିବା ଉଚିତ ହେବ । ସେମାନଙ୍କ ସମୀକ୍ଷାରୁ ଜଣା ଯାଏ ଯେ, ୧୯୬୨ ସାଲର ଜାପାନୀ ସମ୍ବାଦପତ୍ରମାନଙ୍କର ବିଜ୍ଞାପନଜନିତ ଆଦାୟ, ସେମାନଙ୍କ ବିକ୍ରୀଜନିତ ଆଦାୟଠାରୁ କିଛି ଅଧିକ ଥିଲା । କିନ୍ତୁ ଏହି ବ୍ୟବଧାନ କ୍ରମବର୍ଦ୍ଧିଷ୍ଣୁ ହାରରେ ଆଗେଇ ଚାଲିଲା । ବର୍ତ୍ତମାନ ସେଠାରେ ବିଜ୍ଞାପନରୁ ଆୟ ସଂବାଦପତ୍ର-ବିକ୍ରୀଜନିତ ଆୟର ଦୁଇଗୁଣକୁ ଡ଼ିଆଡ଼େ ବୃଦ୍ଧି ପାଇଲାଣି । ଏହାର ଅର୍ଥ ହୋଇପାରେ ଯେ, ଜାପାନୀ ଖବରକାଗଜ ଗୁଡ଼ିକ କ୍ରମଶଃ ଅନ୍ତଃସାରଶୂନ୍ୟ ହୋଇ ବିଜ୍ଞାପନସର୍ବସ୍ୱ ହୋଇ ଗଲେଣି । ଏହି ନିଷ୍ଠୁର ସମ୍ଭାବିତ ସତ୍ୟ ଆମକୁ ଯେତେ ଦୁଃଖ ଦେଉ ନାଁ କାହିଁକି; ସଂପ୍ରତି ବିଜ୍ଞାପନର ଯୁଗ ଯେ ପୂରା ଦମ୍‌ରେ ମାଡ଼ି ଚାଲିଛି, ଏହା ସ୍ୱୀକାର୍ଯ୍ୟ ।

''ଆସାହି ସିମୁନ'' ନାମକ ଜାପାନରେ ଗୋଟିଏ ଦୈନିକ ସମ୍ବାଦପତ୍ର ପ୍ରକାଶ ପାଉଛି, ଯାହାର କି ପ୍ରତି ପୃଷ୍ଠା ପାଇଁ ବିଜ୍ଞାପନ-ଦର ହେଉଛି ୩୦୦ ଲକ୍ଷ ୟେନ୍ । ଏହି ଧନରାଶିର ମୂଲ୍ୟ ଏତେ ଅଧିକ ଯେ, ଏଥିରେ ତିରିଶିଟି ଜାପାନୀ କାର୍ ସହଜରେ କିଣି ହେବ । ଏହି ହିସାବରେ ଯଦି ଆମ ଦେଶରେ ପ୍ରତିପୃଷ୍ଠାର ବିଜ୍ଞାପନ ପାଇଁ ୩୦ ଟି ଭାରତୀୟ କାର୍‌ର ମୂଲ୍ୟ ଦେବାକୁ ପଡ଼େ, ତାହାହେଲେ ପୃଷ୍ଠା ପିଛା କେଇ ଲକ୍ଷ ଟଙ୍କା ଆବଶ୍ୟକ ହେବ ।

ବିଜ୍ଞାପନ ଏପରି ଦୁର୍ମୂଲ୍ୟ ହେବା ସମ୍ଭାବନା ଥିବା ଯୋଗୁଁ ଭବିଷ୍ୟତରେ ଆମ ଦେଶରେ ଆମେ କେଉଁ ପ୍ରକାରର ବିଚିତ୍ର ରଂଗଢ଼ଙ୍ଗର ଓ ନୂଆଁ ନୂଆଁ ଡିଜାଇନ୍‌ର ବିଜ୍ଞାପନମାନ ଦେଖିବାକୁ ପାଇବୁ, ସେଥିପାଇଁ କୌତୁହଳର ସହିତ ଅପେକ୍ଷା କରୁଛୁ । ଏହି ପୃଷ୍ଠଭୂମିରେ ସିଉରସନ ଓ ଟୋଞ୍ଜୋକୋଲ୍ ପ୍ରାତଃ-ସ୍ମରଣୀୟ ।

-୦-

# ବିଜ୍ଞାନ ଦୃଷ୍ଟିରେ ଜ୍ୟୋତିଷ

ବିଂଶ ଶତାବ୍ଦୀର ବିଶିଷ୍ଟ ଗଣିତଜ୍ଞ ଡେଭିଡ୍ ହିଲବର୍ଟ ଥରେ କହିଥିଲେ, ''ପୃଥିବୀର ସର୍ବ ଶ୍ରେଷ୍ଠ ଦଶ ଜଣ ବିଜ୍ଞ ବ୍ୟକ୍ତିଙ୍କୁ ବାଛି ଆଣନ୍ତୁ ଏବଂ ସେମାନଙ୍କୁ ସୃଷ୍ଟିରେ ଥିବା ସବୁଠାରୁ ନିର୍ବୋଧ ବିଷୟ ଖୋଜିବା ପାଇଁ କହନ୍ତୁ । ତାହାହେଲେ ସେମାନେ ଜ୍ୟୋତିଷଠାରୁ ଅଧିକ ନିର୍ବୋଧ ବିଷୟ ଖୋଜି ପାଇବେ ନାହିଁ ।''

କେବଳ ହିଲ୍‌ବର୍ଟ ନୁହନ୍ତି, ଜ୍ୟୋତିଷର ବହୁ ସଂଖ୍ୟକ ନିନ୍ଦୁକ ଆମ ମଧ୍ୟରେ ଅଛନ୍ତି । ପ୍ରକୃତରେ ଯୁକ୍ତରାଷ୍ଟ୍ରର ୧୮ ଜଣ ନୋବେଲ ପୁରସ୍କାର ବିଜେତାଙ୍କ ସମେତ ୧୮୬ ଜଣ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଏକଦା ଘୋଷଣା କରିଥିଲେ ଯେ, ଜ୍ୟୋତିଷଶାସ୍ତ୍ର ସଂପୂର୍ଣ୍ଣ ଭାବେ ଅଣବୈଜ୍ଞାନିକ । ଏହି ପରିପ୍ରେକ୍ଷୀରେ ଆଶା କରାଯାଏ ଯେ, ବିଜ୍ଞାନର ଯେତେ ପ୍ରଗତି ହେବ, ଜ୍ୟୋତିଷ ଶାସ୍ତ୍ରର ସେତେ ଅବନତି ଘଟିବ । ପ୍ରକାରାନ୍ତରେ ଜ୍ୟୋତିଷଶାସ୍ତ୍ର ଓ ବିଜ୍ଞାନ ମଧ୍ୟରେ ଅହିନକୁଳ ସଂପର୍କ ରହିଛି ଏବଂ ଏଇ ବିଜ୍ଞାନ ଯୁଗରେ ଜ୍ୟୋତିଷଶାସ୍ତ୍ର ଲୋପ ପାଇଯିବା ବିଚିତ୍ର ନୁହେଁ । ତେବେ କେତେକ ବ୍ୟକ୍ତି ଏଇ ପ୍ରକାର ଯେଉଁ ପ୍ରତିକୂଳ ଅଭିମତ ଗ୍ରହଣ କରିଛନ୍ତି, ତାହା କେତେ ଦୂର ବାସ୍ତବ କ୍ଷେତ୍ରରେ ପ୍ରତିଫଳିତ-ତାହା ଆଲୋଚନା କରାଯାଉ ।

ସମସ୍ତେ ସ୍ୱୀକାର କରିବେ ଯେ, ସ୍ୱାଧୀନତା ପରେ ଭାରତରେ ବିଜ୍ଞାନର ଅସାମାନ୍ୟ ଅଗ୍ରଗତି ଘଟିଛି । ଏହି ଦୃଷ୍ଟିରୁ ସ୍ୱାଧୀନୋତ୍ତର ଭାରତରେ ସଂପ୍ରତି ଜ୍ୟୋତିଷଶାସ୍ତ୍ରର ସ୍ଥାନ ଅତି ନଗଣ୍ୟ ହୋଇଯିବା କଥା । କିନ୍ତୁ ଆମର ଉପସ୍ଥିତ ସ୍ଥିତି କଣ ପ୍ରକୃତରେ ଏଇ ଧରଣର ହୋଇଛି କି ?

ଏଇ ପ୍ରଶ୍ନର ଉତ୍ତର ଖୋଜିବା ବେଳେ ଆମକୁ ମନେ ରଖିବାକୁ ପଡ଼ିବ ଯେ, ଜ୍ୟୋତିଷଶାସ୍ତ୍ର ଗ୍ରହନକ୍ଷତ୍ରର ଚଳନ ଉପରେ ଭିତ୍ତି କରି କେବଳ ବ୍ୟକ୍ତି ବା ରାଷ୍ଟ୍ରର ଭବିଷ୍ୟତ ଗଣନା କରି ନଥାଏ । ଯନ୍ତ୍ର, ମନ୍ତ୍ର, ତନ୍ତ୍ର, ଗୁଣି ଗାରେଡ଼ି, ହୋମ, ଯଜ୍ଞ, ପ୍ରାର୍ଥନା, ପୂଜା ଅର୍ଚ୍ଚନା ଇତ୍ୟାଦି ବହୁ ବିଧ ପ୍ରାୟଶ୍ଚିତ ମାଧ୍ୟମରେ ଗ୍ରହନକ୍ଷତ୍ରର ମନ୍ଦ ପ୍ରଭାବକୁ ହ୍ରାସ କରି ସଂପୃକ୍ତ ବ୍ୟକ୍ତି ବା ରାଷ୍ଟ୍ରର ଭବିଷ୍ୟତ ଶୁଭ ତଥା ମଙ୍ଗଳମୟ କରିହେବ ବୋଲି ଏଥିରେ ବିଶ୍ୱାସ କରାଯାଇଥାଏ । ତେଣୁ ଜ୍ୟୋତିଷଶାସ୍ତ୍ରର କର୍ମକ୍ଷେତ୍ର ବିସ୍ତୃତ ଓ ଅତି ବ୍ୟାପକ ।

ଏହି ଦୃଷ୍ଟିରୁ ଆମ ଦେଶର ସାଂପ୍ରତିକ ପରିସ୍ଥିତି ବିଚାର କରାଯାଉ । କିଛି ବର୍ଷ ପୂର୍ବେ ଖୋଦ୍ କର୍ଣ୍ଣାଟକ ସରକାରଙ୍କର ଗୋଟିଏ ସଂସ୍ଥା ତରଫରୁ ବର୍ଷା କରାଇବା ପାଇଁ କୌଣସି ଏକ ଯୋଗୀ ଦ୍ୱାରା ଗୋଟିଏ ଶୁଷ୍କ ପୁଷ୍କରିଣୀ ମଧ୍ୟରେ ପ୍ରାର୍ଥନା କରାଯାଇଥିଲା । ବହୁ ଆଡ଼ମ୍ବର ସହିତ ଏହି ତଥାକଥିତ ଧାର୍ମିକ ପର୍ବ ସମାପନ କରାଗଲା । କିନ୍ତୁ ପରିଣାମ ନିଷ୍ଫଳ ହୋଇଥିଲା । ସେଇ ପୋଖରୀଟି ସେମିତି ଶୁଖିଲା ରହିଲା ପଛକେ; ଟୋପାଏ ସୁଦ୍ଧା ପାଣି ଆକାଶରୁ ଝରିଲା ନାହିଁ । ଏହି ଧରଣର ଦୃଷ୍ଟାନ୍ତ ସତ୍ତ୍ୱେ, ପାରମ୍ପରିକ ପ୍ରଥାରେ, ଏପରିକି ବେଳେ ବେଳେ ସରକାରୀ ପ୍ରୋତ୍ସାହନରେ, ଏଇ ପ୍ରକାର ପ୍ରାୟଶ୍ଚିତ ଚାଲି ଆସୁଛି ! ପ୍ରକାଶ ଥାଉକି, ବର୍ତ୍ତମାନ ଆମ ଦେଶରେ ବହୁ ସଂଖ୍ୟକ ଛାତ୍ର ଛାତ୍ରୀ ମହାବିଦ୍ୟାଳୟମାନଙ୍କରେ ବିଜ୍ଞାନ ବିଷୟ ପଢୁଛନ୍ତି । ତଥାପି ଉପରୋକ୍ତ ମରହଟିଆ ସଂସ୍କାର ପ୍ରତି ଆମର ଆସକ୍ତିକୁ କାହାରି ପକ୍ଷରୁ ବିରୋଧ କରାଯାଉ ନାହିଁ କାହିଁକି ?

ବାଙ୍ଗାଲୋର ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଡକ୍ଟର ଏସ. ନରସିଂହା ଏଇ ବିଷୟରେ ଅନୁସନ୍ଧାନ କରି ମତ ଦେଇଛନ୍ତି ଯେ, ଆଜିକାଲି ଯେଉଁ ଅସଂଖ୍ୟ ଛାତ୍ର ଛାତ୍ରୀ ବିଜ୍ଞାନ ପଢ଼ିବା ପାଇଁ ନାଁ ଲେଖାଉଛନ୍ତି, ସେମାନଙ୍କ ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଡାକ୍ତରି ବା ଇଂଜିନିଅରିଂ କଲେଜରେ ସିଟ୍‌ଟିଏ ପାଇବା । ସେମାନଙ୍କ ନିକଟରେ ବୈଜ୍ଞାନିକ ପ୍ରବୃତ୍ତି ଅପେକ୍ଷା ଭଲ ଚାକିରି କରି ଜୀବନରେ ପ୍ରଭୂତ ଅର୍ଥ ଉପାର୍ଜନ ଓ ସୁଖ ସ୍ୱାଚ୍ଛନ୍ଦ୍ୟ ଉପଭୋଗ କରିବା ଅଧିକ ସୁସ୍ପଷ୍ଟ । ବିଜ୍ଞାନକୁ ବ୍ୟବସାୟିକ ଦୃଷ୍ଟି କୋଣରୁ କେବଳ ଦେଖିବା ଯୋଗୁଁ ବୈଜ୍ଞାନିକ ପ୍ରବୃତ୍ତିର ବିକାଶ ବାଧାପ୍ରାପ୍ତ ହେଉଛି । (ସାଇନ୍‌ସ ରିପୋର୍ଟର୍; ନଭେମ୍ବର ୧୯୮୯ ସଂଖ୍ୟା) ।

ତେବେ କେବଳ ବିଜ୍ଞାନଛାତ୍ର ନୁହନ୍ତି; ବୈଜ୍ଞାନିକମାନେ ମଧ୍ୟ ବିଜ୍ଞାନର ଆତ୍ମାକୁ ଆନ୍ତରିକତାର ସହିତ ସମ୍ମାନ ଦେଇ ନଥାନ୍ତି । ଏଇ ମର୍ମରେ ପଣ୍ଡିତ ଜବାହରଲାଲ ନେହେରୁଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ, "ଲୋକଙ୍କ ବିଚାରଧାରାରେ ମୁଁ ଗୋଟିଏ କୌତୂହଳ ଜନକ ଫାଙ୍କ ଦେଖିବାକୁ ପାଉଛି । ଏପରିକି ବୈଜ୍ଞାନିକମାନେ ଏଥିରୁ ମୁକ୍ତ ନୁହନ୍ତି... ପ୍ରକୃତରେ ବୈଜ୍ଞାନିକମାନେ ବିଜ୍ଞାନକୁ ପ୍ରଶଂସା କରିଥାନ୍ତି ଏବଂ ପରୀକ୍ଷାଗାରରେ ତାହା ପ୍ରୟୋଗ କରିଥାନ୍ତି । କିନ୍ତୁ ସେମାନେ ବିଜ୍ଞାନର ପନ୍ଥା, ପଦ୍ଧତି ଏବଂ ବୈଜ୍ଞାନିକ ପ୍ରବୃତ୍ତିକୁ ନିଜ ବ୍ୟକ୍ତିଗତ ଜୀବନରେ ପରିହାର କରିଥାନ୍ତି । ସେମାନେ ସଂପୂର୍ଣ୍ଣଭାବେ ଅଣବୈଜ୍ଞାନିକ ହୋଇଯାନ୍ତି ।"

୫.୨.୧୯୬୨ ତାରିଖରେ ଆଠଟି ଗ୍ରହର ସଂଯୋଗ ହେଉଥିବା ଯୋଗୁଁ ଅଷ୍ଟଗ୍ରହକୂଟ ଦୋଷ ଆମ ଦେଶ ଉପରେ ପଡ଼ିଲା ବୋଲି ସେତେବେଳେ ଜ୍ୟୋତିଷଶାସ୍ତ୍ରୀମାନେ ମତ

ଦେଇଥିଲେ । ଏହାଦ୍ୱାରା ରାଷ୍ଟ୍ର ପ୍ରତି ଘୋର ବିପଦ ଦେଖା ଦେବ ବୋଲି ଲୋକେ ଆତଙ୍କିତ ହୋଇଯାଇଥିଲେ । ସେତେବେଳେ ନେହେରୁ ଦେଶବାସୀଙ୍କୁ ଏପରି କୌଣସି ଦୈବୀ ଦୁର୍ବିପାକ ଘଟିବ ନାହିଁ ବୋଲି ପୂର୍ଣ୍ଣ ଆଶ୍ୱାସନା ଦେବା ସତ୍ତ୍ୱେ ଲୋକେ ପ୍ରାୟଶ୍ଚିତ ଏବଂ ଦୋଷ ଖଣ୍ଡନ କରିବା ଉଦ୍ଦେଶ୍ୟରେ ବହୁ ଚିରାଚରିତ କାର୍ଯ୍ୟକ୍ରମରେ ମାତିଲେ । ସେ ଯାହାହେଉ, ନେହେରୁଙ୍କ ପୂର୍ବାନୁମାନର ଅନୁରୂପ ଉକ୍ତ ଦିନ ସେମିତି କିଛି ଅସ୍ୱାଭାବିକ ଘଟଣା ଘଟି ନଥିଲା । ତଥାପି ଆମଦେଶର ସାଧାରଣ ଲୋକଙ୍କଠାରୁ ଆରମ୍ଭ କରି ବୈଜ୍ଞାନିକମାନଙ୍କ ପର୍ଯ୍ୟନ୍ତ, ବହୁ ବ୍ୟକ୍ତି ଯେମିତି କୋକୁଆ ଭୟର ଶିକାର ହୋଇଥିଲେ, ସେଥିପ୍ରତି ଦୃଷ୍ଟି ଦେଲେ ହୃଦ୍‌ବୋଧ ହୁଏ– ଆମେ ବୈଜ୍ଞାନିକ ପ୍ରବୃତ୍ତିଠାରୁ କେତେ ଦୂରରେ ଅଛେଁ ।

ଉପରୋକ୍ତ ବିବୃତିମାନ ପଢ଼ି ଆମ ମନରେ ସ୍ୱତଃ ଧାରଣା ଜନ୍ମେ ଯେ, ଭାରତ ଏକ ଅନଗ୍ରସର ରାଷ୍ଟ୍ର ହୋଇଥିବା ଯୋଗୁଁ ଜ୍ୟୋତିଷ ପରି ତଥାକଥିତ ଏକ ନିର୍ବୋଧ ଶାସ୍ତ୍ର ଆମ ଉପରେ ଏପରି ଅଖଣ୍ଡ ପ୍ରଭାବ ପକାଇ ରହିଛି । କିନ୍ତୁ ଆମେ ଯଦି ଅତ୍ୟୁନ୍ନତ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କ ପ୍ରତି ଦୃଷ୍ଟି ଦେବା, ତାହାହେଲେ ଆମର ଏହି ଧାରଣା ଅମୂଳକ ବୋଲି ମନେ ହେବ । ଆମେ ଭଲ ଭାବେ ଜାଣୁଁ ଯେ, ପାଶ୍ଚାତ୍ୟ ରାଷ୍ଟ୍ରମାନେ ଶିକ୍ଷା ଦ୍ୱାରା ବହୁ ପୂର୍ବରୁ ସମୃଦ୍ଧ । ସେଠାକାର ଲୋକଙ୍କର ଅସ୍ଥି ମଜ୍ଜାରେ ବୈଜ୍ଞାନିକ ପ୍ରବୃତ୍ତି ଇତ୍ୟବସରରେ ଅବଶ୍ୟ ଅନୁପ୍ରବେଶ କରିଲାଣି । କିନ୍ତୁ ଏହି ଆଧୁନିକ ପାଶ୍ଚାତ୍ୟ ସମାଜମାନଙ୍କରେ ଜ୍ୟୋତିଷର ସ୍ଥାନ କଣ ନ୍ୟୁନ ହୋଇ ପାରିଛି କି ? ଉଦାହରଣ ଭାବେ ଆମେ ଫ୍ରାନ୍‌ସର ରାଜଧାନୀ ପ୍ୟାରିସ୍ ନଗରୀ ସଂପର୍କରେ ବିଚାର କରିବା । ପ୍ୟାରିସ୍‌ରେ ଗୋଟିଏ ବେଶ୍ ଜନପ୍ରିୟ ବିଶାଳ ରେଡିଓ ସଂସ୍ଥା ଅଛି, ଯାହାକି ପ୍ରତିଦିନ ସକାଳୁ ନିୟମିତ ଭାବେ ରାଶିଫଳାଫଳ ଭାଗ୍ୟ ଓ ଭବିଷ୍ୟତ ବାଣୀ ପ୍ରଚାର କରିଥାଏ । ଏତଦ୍‌ବ୍ୟତୀତ ବ୍ୟକ୍ତିଗତ ସ୍ତରରେ ମଧ ବହୁ ତନ୍ତ୍ର ମନ୍ତ୍ର, ଗୁଣି ଗାରେଡ଼ି କରୁଥିବା ବ୍ୟକ୍ତି ସେଠାରେ ଅଛନ୍ତି । ବିଶିଷ୍ଟ ଜ୍ୟୋତିଷ ଲାଉରେଣ୍ଟ କହନ୍ତି ଯେ, ତାଙ୍କର ଏମିତି କେତେ ଜଣ ମହିଳା-ଗ୍ରାହକ ଅଛନ୍ତି, ଯେଉଁମାନେ କି ନିଜର ପ୍ରେମିକକୁ କରଗତ କରିବା ପାଇଁ ତିରିଶିରୁ ଚାଳିଶି ହଜାର ଫ୍ରାଙ୍କ୍ ପାରିଶ୍ରମିକ ଭାବେ ଦେବା ପାଇଁ ପ୍ରସ୍ତୁତ । ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ, ଲାଉରେଣ୍ଟଙ୍କ ବାର୍ଷିକ ଆୟ ପାଞ୍ଚ ମିଲିଅନ୍ ଫ୍ରାଙ୍କ୍ । ଲାଉରେଣ୍ଟଙ୍କ ବ୍ୟତୀତ ଆହୁରି ପ୍ରାୟ ଚାଳିଶି ହଜାର ଗୁଣିଆ ସେଠାରେ ଅଛନ୍ତି, ଯେଉଁମାନେ କି ସରକାରକୁ ପ୍ରଚୁର ଆୟକର ଦେଇଥାନ୍ତି । ଏହି ସଂପର୍କରେ ଗୋଟିଏ ବିସ୍ତୃତ ବିବରଣୀ ଫ୍ରାନ୍‌ସର ବହୁଳ ପ୍ରସାରିତ ''ଏକ୍‌ସପ୍ରେସ୍'' ଖବରକାଗଜରେ ପ୍ରକାଶିତ ହୋଇଥିଲା ।

କେତେକ ସମାଜବିତ୍ କହନ୍ତି ଯେ, ଫ୍ରାନ୍ସରେ ଗୁଣିଗାରେଡ଼ିର ଏତାଦୃଶ ଉଲ୍ଲେଖନୀୟ ଜନପ୍ରିୟତା ପଛରେ ମୂଳ କାରଣ ହେଉଛି ଯେ, ଫରାସୀ ଲୋକେ ଏହାକୁ ଏକ ଫେଶନ୍ ଭାବେ ଗ୍ରହଣ କରିଛନ୍ତି । ପରିସଂଖ୍ୟାନରୁ ଜଣାଯାଏ ଯେ, ସେଠାକାର ଶତକଡ଼ା ୪୨ ଭାଗ ପୁରୁଷ ଓ ୪୭ ଭାଗ ମହିଳା ଗୁହ୍ୟ ବା ଗହନ ବିଜ୍ଞାନ ପ୍ରତି ଅନୁରକ୍ତ । ଲୋକଙ୍କର ଏହି ଚାହିଦାକୁ ଦେଖି ସେଠାରେ ସହସ୍ରାଧିକ ଗୁଣିଗାରେଡ଼ି ସଂପର୍କିତ ରଂଗୀନ ଓ ଆକର୍ଷଣୀୟ ପୁସ୍ତକମାନ ମୁଦ୍ରଣ କରାଯାଉଛି । ପୁଣି ବିଭିନ୍ନ ପ୍ରକାର ସେମିନାର ଓ ପାଠ୍ୟକ୍ରମ ଜରିଆରେ ଏହି ଅଲୌକିକ ବିଦ୍ୟା ସଂପର୍କରେ ଶିକ୍ଷାଦାନ କରାଯାଉଛି । ହିସାବରୁ ଜଣାଯାଏ ଯେ, ଏପରି ଶିକ୍ଷାଦାନ କରୁଥିବା ବ୍ୟକ୍ତି ବା ସଂସ୍ଥାମାନଙ୍କର ସଂଖ୍ୟା କେବଳ ପ୍ୟାରିସ୍‌ରେ ପାଞ୍ଚ ଶହରୁ ଉର୍ଦ୍ଧ୍ୱ । ପୁଣି ଜ୍ୟୋତିଷକୁ ଆଶ୍ରୟ କରି ବଂଚୁଥିବା ବ୍ୟକ୍ତିଙ୍କ ସଂଖ୍ୟା ଚାଳିଶି ହଜାର ପର୍ଯ୍ୟନ୍ତ ହେବ । ପ୍ୟାରିସ୍‌ର କୌଣସି ଗୋଟିଏ ସାହିରେ ଜ୍ୟୋତିଷଙ୍କ ସହିତ ପରାମର୍ଶ କରିବା ପାଇଁ ଦଶହଜାରରୁ ଦୁଇ ଲକ୍ଷ ଯାଏଁ ଟଙ୍କା ନିଆଯାଇଥାଏ ବୋଲି ଫ୍ରାନ୍ସର ଏକ ଟେଲିଭିଜନ ସଂସ୍ଥା ପ୍ରକାଶ କରିଛି ।

କେବଳ ଫ୍ରାନ୍ସରେ ଏପରି ଗୁଣି ଗାରେଡ଼ିର କାଟତି ନାହିଁ; ଯୁକ୍ତରାଷ୍ଟ୍ରରେ ମଧ୍ୟ ଏହା ବେଶ୍ ପ୍ରସାର ଲାଭ କରିଛି । ସେଠାରେ ଗୁଣି ଗାରେଡ଼ି ଓ ତନ୍ତ୍ର ମନ୍ତ୍ର ଦ୍ୱାରା ସମାହିତ କରାଯାଉଥିବା ବିଭିନ୍ନ କାର୍ଯ୍ୟକଳାପ ଅତି ବିଭତ୍ସ ରୂପ ନେଇଛି । ଜଣାଯାଏ ଯେ, ପୁରୁଷମାନଙ୍କ ଅପେକ୍ଷା ମହିଳାମାନେ ଏଥି ସହିତ ଅଧିକ ସଂଖ୍ୟାରେ ସଂପୃକ୍ତ । ବିଶେଷତଃ ଯେଉଁମାନେ ନିଜ ବାଲ୍ୟାବସ୍ଥାରେ ଗୁଣି ଗାରେଡ଼ି ଦ୍ୱାରା ନିର୍ଯ୍ୟାତିତ, ସେମାନେ ଭବିଷ୍ୟତରେ ଏହାର ବିରୋଧ କରିବା ପରିବର୍ତ୍ତେ ଦୃଢ଼ ସମର୍ଥକ ସାଜିଥାନ୍ତି । ତାନ୍ତ୍ରିକ ପୂଜା ସମୟରେ ସଂପୃକ୍ତ ପକ୍ଷକୁ ରକ୍ତ ଓ ପରିସ୍ରା ପାନ କରିବାକୁ କୁଆଡ଼େ ବାଧ କରାଯାଇଥାଏ । ଏତଦ୍‌ବ୍ୟତୀତ ଶିଶୁମାନଙ୍କୁ ବଳି କିମ୍ବା ଅସ୍ୱାଭାବିକ ଉପାୟରେ ଅତି କଦର୍ଯ୍ୟ ଯୌନ ଅତ୍ୟାଚାର କରାଯାଇଥାଏ । ଏହି ଲୋମହର୍ଷଣକାରୀ ଖବର ୧୮.୯.୧୯୮୯ ତାରିଖରେ ପି.ଟି. ସମ୍ବାଦ ସଂସ୍ଥା ତରଫରୁ ୱାସିଂଟନଠାରେ ପରିବେଷଣ କରାଯାଇଛି । ପ୍ରକୃତରେ ଏହି ମର୍ମରେ କେତେକ ଚାଞ୍ଚଲ୍ୟକର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଇତ୍ୟବସରରେ ପୋଲିସର ହସ୍ତଗତ ହୋଇଛି ।

ଅଗ୍ରସର ଓ ଅନଗ୍ରସର– ଉଭୟ ପ୍ରକାର ରାଷ୍ଟ୍ରର ସାଂପ୍ରତିକ ସ୍ଥିତିରୁ ଆମର ହୃଦୟଙ୍ଗମ ହେଉଛି ଯେ, ବିଜ୍ଞାନର ପ୍ରଗତି ଯାହା ହେଉନା କାହିଁକି, ଜ୍ୟୋତିଷ ଶାସ୍ତ୍ରର ପ୍ରଭାବ ଅକ୍ଷୁର୍ଣ୍ଣ ରହିଛି । ପ୍ରକାଶ ଥାଉକି, ଜ୍ୟୋତିଷ ବିଦ୍ୟାର ଦୁଇଟି ମୁଖ୍ୟ ଉଦ୍ଦେଶ୍ୟ ହେଉଛି– ଭବିଷ୍ୟତ ବାଣୀ ଜଣାଇବା ଏବଂ ବ୍ୟକ୍ତିର ରୁଚି ମୁତାବକ ତାର ଭବିଷ୍ୟତକୁ ବଦଳାଇବା । ଏହି ପ୍ରବନ୍ଧରେ ଆମେ ପ୍ରଥମ ଉଦ୍ଦେଶ୍ୟଟି ପ୍ରତି ବିଶେଷ ଦୃଷ୍ଟି ଦେବା । ଅର୍ଥାତ୍

ଭବିଷ୍ୟତବାଣୀ ଶୁଣାଇବା କ୍ଷେତ୍ରରେ ଜ୍ୟୋତିଷ ଶାସ୍ତ୍ର ଯେଉଁ ଭୂମିକା ଗ୍ରହଣ କରିଛି, ତାହା ଆଉ ବେଶି ଦିନ ଚାଲି ପାରିବ କି ? ସାଂପ୍ରତିକ ବିଜ୍ଞାନ ଯୁଗରେ ଖୋଦ୍ ବିଜ୍ଞାନ ଜ୍ୟୋତିଷଠାରୁ ଏହି କାର୍ଯ୍ୟଟି ଛଡ଼ାଇ ନେଇ ନିଜେ ସଫଳତାର ସହିତ ଏହି ଦାୟିତ୍ୱ ତୁଲାଇ ପାରିବ କି ?

ଏହି ପ୍ରସଙ୍ଗରେ ପ୍ରଶ୍ନ ଉଠେ: ବୈଜ୍ଞାନିକମାନେ ଭବିଷ୍ୟବାଣୀ ଦେଇଥାନ୍ତି କି ? ଏଇ କଥାସତ ଯେ, ସେମାନେ ବ୍ୟକ୍ତି ବା ରାଷ୍ଟ୍ର ସଂପର୍କରେ ପ୍ରାୟତଃ ଭବିଷ୍ୟବାଣୀ ଶୁଣାଇବାରେ ଆଗ୍ରହୀ ନଥାନ୍ତି । କିନ୍ତୁ ନିଜର କର୍ମକ୍ଷେତ୍ର ସହିତ ସଂପୃକ୍ତ ବିଜ୍ଞାନ ବିଷୟରେ ସେମାନେ ଅବଶ୍ୟ ଭବିଷ୍ୟତ ରୂପରେଖ ସଂବନ୍ଧରେ ବୟାନ ଦେଇଥାନ୍ତି । ବର୍ତ୍ତମାନ ଆମେ ଏଇ ଧରଣର ଭବିଷ୍ୟତ ବାଣୀମାନଙ୍କ ପ୍ରତି ଦୃଷ୍ଟିଦେଇ ସେମାନଙ୍କ ଭବିଷ୍ୟଜ୍ଞାନ ସପର୍କରେ ପାରଦର୍ଶିତା କଳନା କରିବା ପାଇଁ ଚେଷ୍ଟିତ ହେବା ।

ଫିଲିପ୍ ଜଲି ଜଣେ ଜଣାଶୁଣା ପଦାର୍ଥବିଜ୍ଞାନବିତ୍ । ସେ ୧୮୭୫ ମସିହାରେ ଘୋଷଣା କରିଥିଲେ, ''ପଦାର୍ଥ ବିଜ୍ଞାନ ଏମିତି ଏକ ଜ୍ଞାନ ଯେ ଏହା ସ୍ଥିର ଏବଂ ଏହାର ଜ୍ଞାନ-ରାଶି ପ୍ରାୟତଃ ଆମେ ଜାଣି ସାରିଲେଣି । ଏହି ବିଜ୍ଞାନକୁ ଆଉ ଅଧିକା ଅନୁଧ୍ୟାନ କରିବାରେ ସେମିତି କିଛି ପ୍ରୟୋଜନୀୟତା ନାହିଁ ।'' ଏହି ଭବିଷ୍ୟବାଣୀ କେତେ ଦୂର ଅବାସ୍ତବତା ଉପରେ ପର୍ଯ୍ୟବସିତ, ତାହା ସମସ୍ତେ ବର୍ତ୍ତମାନ ଜାଣି ପାରୁଥିବେ । ପ୍ରକୃତରେ ପଦାର୍ଥବିଦ୍ୟାର ଜ୍ଞାନରାଶି ହେଉଛି ଅସୀମ ଏବଂ ଅଧୁନା ବିଂଶ-ଶତାବ୍ଦୀ ଶେଷ ହେବାକୁ ଯାଉଥିବାବେଳେ ମଧ୍ୟ ଏହାର ଆଦିଅନ୍ତ ଜାଣି ହେଉ ନାହିଁ । ତେଣୁ ଜଲିଙ୍କ ପରି ଜଣେ ବିଶିଷ୍ଟ ପଦାର୍ଥବିଜ୍ଞାନବିତ୍ ଏମିତି ଭୁଲ ଭବିଷ୍ୟ ଅନୁମାନ କିପରି ଶୁଣାଇଲେ ?

କେବଳ ଜଲି ନୁହନ୍ତି; ଥମସ୍ ଏଡିସନ୍ ମଧ୍ୟ ପ୍ରତ୍ୟାବର୍ତ୍ତୀ ବିଦ୍ୟୁତ୍‌ସ୍ରୋତ ବା ଏ.ସି. (ଆଲଟର୍ ନେଟିଂ କରେଣ୍ଟ) ବିଷୟରେ ଅତି ହାସ୍ୟାସ୍ପଦ ମତ ଦେଇଥିଲେ । ୧୮୮୯ ସାଲରେ ସେ ଜଣାଇଥିଲେ ଯେ, ବିଜ୍ଞାନ ବା ବ୍ୟବସାୟ କ୍ଷେତ୍ରରେ ଏ.ସି. ବ୍ୟବହାର କରିବା ପାଇଁ କୌଣସି ଯଥାର୍ଥତା ନାହିଁ । କିନ୍ତୁ କୌତୁହଳର ବିଷୟ ହେଉଛି ଯେ, ଏଡ଼ିସନ ଏହି ଭବିଷ୍ୟବାଣୀ ଶୁଣାଇବା ପରବର୍ଷ ଆମେରିକାରେ ବ୍ୟବସାୟିକ ଭିତ୍ତିରେ ଏ.ସି.ର ବହୁଳ ପ୍ରଚଳନ ଆରମ୍ଭ ହୋଇଥିଲା । ଠିକ୍ ସେମିତି ୧୯୨୩ ମସିହାରେ ନୋବେଲ ପୁରସ୍କାର ବିଜେତା, ରବର୍ଟ ମିଲିକନ୍ ଆଣବିକ ଶକ୍ତିର ବହୁଳ ବ୍ୟବହାର ଅସମ୍ଭବ ବୋଲି କହିଥିଲେ । କିନ୍ତୁ ବର୍ତ୍ତମାନ ଆମେ ଦେଖୁଛେଁ ଯେ, ଆମକୁ ଶକ୍ତି ମୁଖ୍ୟତଃ ଆଣବିକ ସୂତ୍ରରୁ ହିଁ ମିଳୁଛି ।

ଏଇ ଧରଣର ଅନ୍ୟ ଏକ ନୈରାଶ୍ୟଜନକ ଉଦାହରଣ ପ୍ରତି ଦୃଷ୍ଟି ଦିଆଯାଉ । ରୟାଲ ସୋସାଇଟିର ସଭାପତି ଲର୍ଡ଼ କେଲଭିନ୍ ୧୯୦୪ ମସିହାରେ ଘୋଷଣା କରିଥିଲେ ଯେ,

ରେଡିଓର କୌଣସି ଭବିଷ୍ୟତ ନାହିଁ । କିନ୍ତୁ ଆମେ ଭଲ ଭାବେ ଜାଣୁଁ ଯେ, ରେଡିଓ ହେଉଛି ଗୋଟିଏ ଶକ୍ତିଶାଳୀ ଗଣମାଧ୍ୟମ ଏବଂ ସଂପ୍ରତି ଜନ-ସମାଜ ଉପରେ ତାର ପ୍ରଭାବ ଅପରିସୀମ ।

ବ୍ୟକ୍ତିଗତ ସ୍ତରରେ କେବଳ ବୈଜ୍ଞାନିକମାନେ ଏଇ ଧରଣର ମସ୍ତବଡ଼ ଭୁଲ୍ ଭବିଷ୍ୟବାର୍ତ୍ତା ଦେଇ ନଥାନ୍ତି; ଆନୁଷ୍ଠାନିକ ସ୍ତରରେ ମଧ୍ୟ ଏହାର ପୁନରାବୃତ୍ତି ଘଟିଥାଏ । ଯଥା- ''ସାଇନ୍‌ସ ଡାଇଜେଷ୍ଟ'' ପରି ଏକ ପ୍ରତିଷ୍ଠିତ ବିଜ୍ଞାନ-ପତ୍ରିକା ୧୯୪୮ ସାଲରେ ଜୋର ଦେଇ ଲେଖିଥିଲା ଯେ, ଚନ୍ଦ୍ରର ଚତୁର୍ଦ୍ଦିଗରେ ଘୂରିବା ଓ ସେଠାରେ ଓହ୍ଲାଇବା–ଏପରି ଗୁରୁତର ସମସ୍ୟା ସୃଷ୍ଟି କରିବ ଯେ, ଆଗାମୀ ୨୦୦ ବର୍ଷ ପର୍ଯ୍ୟନ୍ତ ଏହା କଦାପି କାର୍ଯ୍ୟତଃ ସମ୍ଭବ ହେବ ନାହିଁ । କିନ୍ତୁ ଏହି ଭବିଷ୍ୟବାଣୀକୁ ମିଥ୍ୟା ବୋଲି ପ୍ରମାଣିତ କରି ୧୯୬୯ ସାଲରେ ନୀଲ୍ ଆର୍ମଷ୍ଟ୍ରଙ୍ଗ ଚନ୍ଦ୍ରପୃଷ୍ଠରେ ଅବତରଣ କରିଥିଲେ ।

ଭବିଷ୍ୟବକ୍ତା ହିସାବରେ ବୈଜ୍ଞାନିକମାନଙ୍କର ବ୍ୟର୍ଥତା ସଂପର୍କରେ ଏଇ ଧରଣର ବହୁ ଦୃଷ୍ଟାନ୍ତ ଦେଇ ହେବ । ପ୍ରକୃତରେ ସବୁଠାରୁ କୌତୂହଳର ବିଷୟ ହେଉଛି ଯେ, ସେମାନେ ଯେଉଁ ବିଷୟ ସହିତ ସଂପୃକ୍ତ ଏବଂ ଗବେଷଣାରତ, ସେଥିରେ ଦୂରଦୃଷ୍ଟି ଅର୍ଜନ କରିବାରେ ଅସଫଳ ହେଉଛନ୍ତି ।

ଏଠାରେ ଲକ୍ଷ୍ୟ କରିବା କଥା ଯେ, ସାଧାରଣତଃ ଯିଏ ଯେଉଁ ବିଭାଗ ବା ବିଷୟ ସହିତ ଜଡ଼ିତ, କାଳକ୍ରମେ ସେଥିରେ ତାର ଅନ୍ତଃଦୃଷ୍ଟି ବା ଇନ୍‌ଟୁଇସନ୍ ବିକଶିତ ହୋଇଥାଏ । ଏହି ଶକ୍ତି ବଳରେ ଜଣେ ଭବିଷ୍ୟତ ସଂପର୍କରେ ସଠିକ୍ ମତ ଦେବା ସମ୍ଭବ । ତେଣୁ ବୈଜ୍ଞାନିକମାନଙ୍କ ଠାରୁ ଅନ୍ତତଃ ବିଜ୍ଞାନ ସଂପର୍କରେ ନିର୍ଭୁଲ ଭବିଷ୍ୟବାଣୀ ଶୁଣିବା ସମ୍ଭବ ବୋଲି ଆଶା କରାଯାଏ । ତଥାପି ଏହି କ୍ଷେତ୍ରରେ କେତେକ ବୈଜ୍ଞାନିକ ଯେପରି ଅସଫଳ ହୋଇଥାନ୍ତି, ସେଥିପ୍ରତି ଆଖି ବୁଜି ଦେଇ ହେବ ନାହିଁ । ଅବଶ୍ୟ କତିପୟ ବୈଜ୍ଞାନିକଙ୍କର ଏଇ ଦୋଷ ଦୁର୍ବଳତାକୁ ଭିତ୍ତି କରି ସମସ୍ତଙ୍କ ଉପରେ ଅପବାଦ ଲଦି ଦେବା ଯଥାର୍ଥ ହେବ ନାହିଁ ।

ତେବେ ସେ ଯାହାହେଉ, ଏଇ ପ୍ରସଙ୍ଗରେ ଡେନମାର୍କର ବିଶ୍ୱବିଖ୍ୟାତ ପଦାର୍ଥବିଜ୍ଞାନବିତ୍ ନୀଲ୍‌ସ ବୋହର୍‌ଙ୍କ ବାକ୍ୟ ଏଠାରେ ଉଦ୍ଧାର କରାଯାଇପାରେ, ''ଭବିଷ୍ୟତ ସଂପର୍କରେ ଆଗତୁରା କହିବା ବଡ଼ କଷ୍ଟକର କାର୍ଯ୍ୟ'' (ଦ୍ରଷ୍ଟବ୍ୟ: ଗ୍ରାହାମ୍ ନାଉନ୍ ''ଦି ୱାର୍‌ଲଡ୍'ସ ୱାର୍‌ଷ୍ଟ ପ୍ରେଡ଼ିକ୍‌ସନ୍‌ସ'') । ହୁଏତ ଏଠାରେ ସ୍ପଷ୍ଟୀକରଣ ଦେବା ଉଚିତ ହୋଇପାରେ ଯେ, ଭବିଷ୍ୟବାଣୀ ଦେବା ବୈଜ୍ଞାନିକମାନଙ୍କର କାର୍ଯ୍ୟ କିମ୍ବା କର୍ତ୍ତବ୍ୟ ନୁହେଁ । ବାସ୍ତବିକ ବିଜ୍ଞାନର ଗୁଣ ହେଉଛି ସନ୍ଦିଗ୍ଧତା ଓ ଅନିଶ୍ଚିତତା । ତେଣୁ ବୈଜ୍ଞାନିକମାନେ

ସବୁ ବିଷୟରେ ଖୋଲାମନ ରଖିଥାନ୍ତି । କୌଣସି ପ୍ରକାର ନିର୍ଦ୍ଦିଷ୍ଟ ଉପସଂହାର କିମ୍ବା ନିଧାର୍ଯ୍ୟ ସିଦ୍ଧାନ୍ତକୁ ସେମାନେ ଅପରିବର୍ତ୍ତନୀୟ ବୋଲି ସ୍ୱୀକାର କରିବାକୁ ନାରାଜ । ନୂତନ ବୈଜ୍ଞାନିକ ତଥ୍ୟ, ଟିପ୍ପଣୀ ଓ ପରୀକ୍ଷାକୁ ଭିତ୍ତି କରି ସେମାନେ ନିଜ ମତ ବଦଳାଇବାରେ ଦ୍ୱିଧା ପ୍ରକାଶ କରି ନଥାନ୍ତି– ଏଇ ମତ ସେମାନଙ୍କର ଯେତେ ପ୍ରିୟ ହୋଇ ଥାଉ ନା କାହିଁକି । ଏହି ପୃଷ୍ଠଭୂମିରେ ସେମାନଙ୍କୁ ସୁଦୂର ଭବିଷ୍ୟତ ସମ୍ବନ୍ଧରେ ପ୍ରଶ୍ନମାନ ପଚାରିବା ଧୃଷ୍ଟତା ମାତ୍ର । ଯେଉଁ ବୈଜ୍ଞାନିକମାନେ ଭବିଷ୍ୟବାଣୀ ଦେଇଥାନ୍ତି, ସେମାନେ ହୁଏତ ବିଜ୍ଞାନର ପରିସର ବାହାରକୁ ଯାଇ ଏପରି କରିଥାନ୍ତି ।

ତେବେ ଏଇ ପରିପ୍ରେକ୍ଷୀରେ ବିଜ୍ଞାନ ଓ ଜ୍ୟୋତିଷଶାସ୍ତ୍ର ମଧ୍ୟରେ ଥିବା ମୌଳିକ ପ୍ରଭେଦ ସ୍ପଷ୍ଟ ହୋଇଯାଉଛି । ଭବିଷ୍ୟବାଣୀ ଦେବା ବିଜ୍ଞାନର ଲକ୍ଷ୍ୟ ହୋଇ ନଥିବାବେଳେ, ଏହା ଜ୍ୟୋତିଷ ବା ଗହନ ବିଜ୍ଞାନର ମୂଳ ଉଦ୍ଦେଶ୍ୟ । ଅନ୍ୟ କେତେକ କାରଣ ସମେତ, ଏଇ କାରଣରୁ ଏହି ଉଭୟ ଶାସ୍ତ୍ର ମଧ୍ୟରେ ଅମେଳ ପରିଲକ୍ଷିତ ହୁଏ । ଏଇ ଦୃଷ୍ଟିରୁ ପୁଣି ଆଶା କରାଯାଏ ଯେ, ବିଜ୍ଞାନ ଜ୍ୟୋତିଷର ଆସନ ଗ୍ରହଣ କରି ପାରିବ ନାହିଁ । ତେଣୁ ବୋଧହୁଏ ଏଇ ବିଜ୍ଞାନ ଯୁଗରେ ମଧ୍ୟ ଜ୍ୟୋତିଷ ନିଜ ସ୍ଥାନ ବଜାୟ ରଖି ପାରିଛି ।

ପୁନଶ୍ଚ ଉପସଂହାରରେ ଅନ୍ୟ ଏକ ଦିଗରୁ ମଧ୍ୟ କୁହାଯାଇ ପାରେ ଯେ, ଜ୍ୟୋତିଷଶାସ୍ତ୍ରକୁ ଖର୍ବ କରିବାରେ ବିଜ୍ଞାନର ବ୍ୟର୍ଥତା ଯେପରି ସ୍ପଷ୍ଟ ଭାବେ ଜଣାପଡୁଛି, ସେଥିରୁ ବିଜ୍ଞାନର ସୀମାବଦ୍ଧତା ସଂପର୍କରେ ସୂଚନା ମିଳୁଛି ।



# ବିଜ୍ଞାନ ଯୁଗରେ ଜ୍ୟୋତିଷର ସ୍ଥାନ

ସବୁଠାରୁ କୌତୂହଳ ଓ ଆମୋଦଦାୟକ ବିଷୟ ହେଉଛି ଯେ, ଅନିଶ୍ଚିତତା ଦ୍ୱାରା ଭରପୂର ମଣିଷର ଭବିଷ୍ୟ ସଂପର୍କରେ ବୈଜ୍ଞାନିକମାନେ ସତ ଭବିଷ୍ୟତବାଣୀ ଖୋଜି ବାହାର କରିବେ କଣ; ନିଶ୍ଚିତ ବସ୍ତୁ ବା ତଥ୍ୟକୁ ଅନିଶ୍ଚିତ କରିବାରେ ସେମାନଙ୍କ ମଧ୍ୟରୁ କେତେ ଜଣ ମନ ବଳାଇଥାନ୍ତି । ଏହା ଦ୍ୱାରା ସାଧାରଣ ଲୋକର ମନରେ ଜମାଟ ବାନ୍ଧି ରହିଥିବା ବିଶ୍ୱାସର ମୂଳଦୁଆ ଦୋହଲିଯାଏ ଏବଂ ସେ ମାନସିକ ସ୍ତରରେ ''ବିଶ୍ୱାସ ସଙ୍କଟ''ର ସମ୍ମୁଖୀନ ହୁଏ । ଏହି ବିଷୟଟି ବୁଝାଇବା ପାଇଁ ଆମେ ନିକଟ ଅତୀତରେ ଫୋଟୋଗ୍ରାଫିରେ ଘଟିଥିବା କେତେକ ନୂତନ କୌଶଳ ଅବତାରଣା କରିବା ।

ଆମେ ସମସ୍ତଙ୍କ ମନରେ ଗୋଟିଏ ବଦ୍ଧ ମୂଳ ଧାରଣା ରହି ଆସିଛି ଯେ, ଫଟୋଗ୍ରାଫି ସବୁବେଳେ ସତ ଦୃଶ୍ୟ ପ୍ରଦର୍ଶନ କରିଥାଏ; ଏହା କଦାପି ମିଥ୍ୟା କହି ନ ପାରେ । କିନ୍ତୁ ଅତ୍ୟାଧୁନିକ କଂପ୍ୟୁଟର କୌଶଳ ଯୋଗୁଁ ଆମର ଏହି ଧାରଣା ଖଣ୍ଡ ବିଖଣ୍ଡିତ ହୋଇ ଯାଇଛି । ୩.୮.୧୯୯୦ ତାରିଖରେ ଯୁକ୍ତରାଷ୍ଟ୍ରର ନ୍ୟାସନାଲ୍ ବ୍ରଡ଼କାଷ୍ଟିଂ ନେଟୱାର୍କରେ ''ଟୁଡେ ସୋ'' ନାମକ ଏକ ଜନପ୍ରିୟ କାର୍ଯ୍ୟକ୍ରମ ପ୍ରଦର୍ଶନ ହେଉଥିଲା । ସେଥିରେ ଜଣେ କଂପ୍ୟୁଟର-ବିଶେଷଜ୍ଞ ଟିଭି ସ୍କ୍ରିନ୍ ଉପରେ ନିଜ ଫଟୋଚିତ୍ରଟିକୁ ଚାହୁଁ ଚାହୁଁ ଦୁଇଟି ଭିନ୍ନ ବ୍ୟକ୍ତିଙ୍କର ଫଟୋରେ ପରିଣତ କରି ସମସ୍ତ ଦର୍ଶକଙ୍କୁ ଚମତ୍କୃତ କରି ଦେଇଥିଲେ । ପୁଣି ଅନ୍ୟ ଏକ ଦୃଶ୍ୟରେ ଯୁକ୍ତରାଷ୍ଟ୍ରର ପୂର୍ବତନ ରାଷ୍ଟ୍ରପତି ରେଗାନ୍ ଓ ତାଙ୍କ ସ୍ତ୍ରୀ ନନ୍‌ସୀ ରେଗାନ୍‌ଙ୍କ ଫଟୋ ମଧ୍ୟରେ ନିଜ ଫଟୋଟିକୁ ଏମିତି ଭାବେ ସେ ଦେଖାଇଲେ ଯେ, ରେଗାନ-ଦଂପତି ତାଙ୍କୁ ଆଶୀର୍ବାଦ ଦେଉଥିବା ପରି ଫଟୋଟିରୁ ଜଣାପଡୁଥିଲା ।

କଂପ୍ୟୁଟର ସାହାଯ୍ୟରେ ଏହି ପ୍ରକାରେ ଯେମିତି ପ୍ରତିରୋପଣ (ଟ୍ରାନ୍‌ସିପ୍ଲାଣ୍ଟିଂ) ବା ପ୍ରତିସ୍ଥାପନ (ଟ୍ରାନ୍‌ସପୋଜିଂ) ସମ୍ଭବ ହୋଇ ପାରୁଛି, ତାହା ସମଗ୍ର ଫଟୋଗ୍ରାଫି-କ୍ଷେତ୍ରରେ ବୈପ୍ଲବିକ ପରିବର୍ତ୍ତନ ଆଣିବ । ପ୍ରକୃତରେ ଆମେରିକାର ଗୋଟିଏ ପତ୍ରିକାରେ ଏଇ ଉପାୟ ଅବଲମ୍ବନ କରି ଏମିତି ଗୋଟିଏ ମିଛ ଫଟୋ ଛପା ଯାଇଥିଲା, ଯେଉଁଥିରେ ଜଣେ ପ୍ରଖ୍ୟାତ ଚଳଚ୍ଚିତ୍ର ଅଭିନେତ୍ରୀଙ୍କ ଶରୀରରେ ଜଣେ ନାମଜାଦା ଟିଭି-ତାରକା ମସ୍ତକ ସ୍ଥାପନ କରିଛନ୍ତି !

ହାଲୁକା ଭାବେ ବିଚାର କଲେ, କଂପ୍ୟୁଟରର ଏହି କରାମତି ଆମକୁ ଆମୋଦଦାୟକ ମନେ ହେବ, କିନ୍ତୁ ଏଠାରେ ଉକ୍ତ ଫଟୋଗ୍ରାଫି ବିଷୟଟି ଉଲ୍ଲେଖ କରାଯିବା ପଛରେ ଅନ୍ୟ ଏକ କାରଣ ରହିଛି । ଆମ ମଧ୍ୟରେ ଏମିତି କେତେକ ଲୋକ ଅଛନ୍ତି ଯେଉଁମାନେ ଏହି ଫଟୋଗ୍ରାଫି-ପ୍ରସଙ୍ଗ ଉପରେ ମନ୍ତବ୍ୟ ଦେବେ ଯେ, ବିଜ୍ଞାନ ଆମ ମନରୁ ଚିରାଚରିତ ବିଶ୍ୱାସର ପରିମାଣକୁ ଖଣ୍ଡ ବିଖଣ୍ଡିତ କରି କ୍ରମେ କ୍ରମେ ତାକୁ ହ୍ରାସ କରିବାରେ ଲାଗିଛି; କିନ୍ତୁ ବିଶ୍ୱାସ କ୍ଷେତ୍ରରେ ସୃଷ୍ଟି ହୋଇଥିବା ଏହି ଅଭାବକୁ ପୂରଣ କରିବା ପାଇଁ କୌଣସି ଉପାୟ ବା ଉପାଦାନ ଯୋଗାଉ ନାହିଁ । ଏମିତି ଯଦି ନାନା ନୂତନ କୌଶଳ ଓ ଉଦ୍‌ଭାବନ ଯୋଗୁଁ ଆମେ ବିଭିନ୍ନ ବିଷୟରେ ବିଶ୍ୱାସ ହରାଇ ବସିବା, ତାହାହେଲେ ଏହି ଜୀବନ ''ବିଶ୍ୱାସ ସଂକଟ'' ଯୋଗୁଁ ଦୁଃସହ ହୋଇଯିବ ।

ଆମେ ରାତି ଦଶଟା ବେଳେ ନିଶ୍ଚିନ୍ତ ହୋଇ ଶୋଇବା ପଛରେ ମୂଳ କାରଣ ହେଉଛି ଯେ, ଆସନ୍ତା କାଲି ସକାଳ ଛଅଟା ବେଳକୁ ନିଶ୍ଚୟ ନିଦରୁ ଉଠିବୁ । ଆମ ମନରେ ଥିବା ଏହି ଦୃଢ଼ ବିଶ୍ୱାସ ହିଁ ଆମକୁ ଶାନ୍ତିରେ ଶୋଇବାକୁ ଦିଏ । ମୋଟାମୋଟି ଭାବେ, ଏମିତି କେତେକ ବିଶ୍ୱାସର ଖୁଅକୁ ଏକତ୍ରିତ କରି ଆମ ଜୀବନଯାତ୍ରା ସୁରୁଖୁରୁରେ ଚାଲିଛି । ତେବେ ବିଜ୍ଞାନ ନିଶ୍ଚିତତା ବା ବିଶ୍ୱାସ ପ୍ରତି ଅଙ୍ଗୀକାରବଦ୍ଧ ହୋଇ ନ ଥିବା ଯୋଗୁଁ ଆମ ଜୀବନର ସବୁ ଆବଶ୍ୟକତା ବିଜ୍ଞାନ ଦ୍ୱାରା ପୂର୍ଣ୍ଣ ହୋଇ ପାରିବ ନାହିଁ । ବିଶେଷତଃ ଆମ ମନରେ ନିଶ୍ଚିତତାକୁ ଦୃଢ଼ୀଭୂତ କରିବା ପାଇଁ ଆମେ ବିଜ୍ଞାନ ଉପରେ ନିର୍ଭର ନ କରି ଅନ୍ୟ କୌଣସି ପନ୍ଥାର ଆଶ୍ରୟ ନେବା ଉଚିତ ହେବ । ଏହି ଦୃଷ୍ଟିରୁ ଜ୍ୟୋତିଷଶାସ୍ତ୍ରର ଗୁରୁତ୍ୱ ଯୁଗ ଯୁଗ ଧରି ତିଷ୍ଠି ରହିଛି ଏବଂ ଏହି ବିଜ୍ଞାନ-ଯୁଗରେ ମଧ୍ୟ ତାର ପ୍ରାଧାନ୍ୟ ହ୍ରାସ ପାଇବାର ସେମିତି କୌଣସି ଲକ୍ଷଣ ଦେଖାଯାଉ ନାହିଁ ।

ଜ୍ୟୋତିଷଶାସ୍ତ୍ର ପରି ବିଭିନ୍ନ ଗୂହ୍ୟ ବା ଗହନ ବିଜ୍ଞାନମାନଙ୍କର ବୈଶିଷ୍ଟ୍ୟ ହେଉଛି ଯେ, ସେମାନେ ଆମ ଭବିଷ୍ୟତ ସଂପର୍କରେ ତଥ୍ୟ ପ୍ରଦାନ କରିଥାନ୍ତି । ଆମର ଭବିଷ୍ୟତ ରହସ୍ୟାବୃତ୍ତ ଏବଂ କେତେବେଳେ ଆମ ଜୀବନରେ କଣ ଘଟିବ, ତାହା ଅନିଶ୍ଚିତ ବୋଲି ଆମେ ଜାଣୁଁ ଓ ଏହି କାରଣରୁ ଆମେ ନିଜ ଭବିଷ୍ୟତ ଜାଣିବା ପାଇଁ ଉଦ୍‌ଗ୍ରୀବ । କିନ୍ତୁ ବିଜ୍ଞାନର ନୀତି ଓ ଗୁଣ ଦୃଷ୍ଟିରୁ ଏହି ଆବଶ୍ୟକତା ବିଜ୍ଞାନ ଦ୍ୱାରା କଦାପି ପୂରଣ ହୋଇ ପାରିବ ନାହିଁ । ତେବେ ପ୍ରଶ୍ନ ଉଠୁଛି : ବିକଳ୍ପ ପନ୍ଥା ଭାବେ ଜ୍ୟୋତିଷଶାସ୍ତ୍ର ବା ଗହନ ବିଜ୍ଞାନ ଆମକୁ ଏହି ଦିଗରେ କେତେ ଦୂର ସାହାଯ୍ୟ କରି ପାରିବ ?

ପ୍ରକାଶ ଥାଉକି, ଜ୍ୟୋତିଷୀମାନେ ଭବିଷ୍ୟତ ସଂପର୍କରେ ବାର୍ତ୍ତା ଜଣାଉଥିଲେ ସୁଦ୍ଧା ସେମାନଙ୍କ ମଧ୍ୟରୁ ଅଧିକାଂଶ ସାଫଲ୍ୟମଣ୍ଡିତ ହୋଇ ନ ଥାନ୍ତି । ଉଦାହରଣ ଭାବେ,

ଟୁବିନ୍‌ଜେନ୍-ବିଶ୍ୱବିଦ୍ୟାଳୟର ଜ୍ୟୋତିର୍ବିଦ ଜୋହାନ୍‌ସ ଷ୍ଟୋଫଲେର୍‌ଙ୍କ ବିଷୟ ବିଚାର କରାଯାଉ। ସେ ୧୫୨୪ ସାଲର ଜାନୁଆରି ମାସରେ ଘୋଷଣା କରିଥିଲେ ଯେ, ୨୦.୨.୧୫୨୪ ତାରିଖରେ ଏକ ପ୍ରଳୟଙ୍କରୀ ବନ୍ୟା ଦ୍ୱାରା ପୃଥିବୀ ଧ୍ୱଂସ ହେବ। କିନ୍ତୁ ଏହି ଭବିଷ୍ୟବାଣୀ ସଂପୂର୍ଣ୍ଣ ମିଥ୍ୟା ବୋଲି ପ୍ରମାଣିତ ହୋଇଥିଲା। ଠିକ୍ ସେମିତି ''ସଣ୍ଡେ ଏକ୍‌ସପ୍ରେସ୍'' (୧୯୩୯)ର ଏକ ସ୍ତମ୍ଭରେ ବିଶିଷ୍ଟ ଜ୍ୟୋତିଷଶାସ୍ତ୍ରୀ ଆର୍.ଏଚ୍. ନେଲୋର ଜଣାଇଥିଲେ ଯେ, ଜର୍ମାନୀର ଆଡ଼ଲଫ ହିଟଲାରଙ୍କ ଜାତକରୁ ସେ ଯୁଦ୍ଧଖୋର ନୁହନ୍ତି ବୋଲି ନିଧାର୍ଯ୍ୟ ପ୍ରମାଣ ମିଳୁଛି। କିନ୍ତୁ ବିଶ୍ୱବାସୀ ବେଶ୍ ଭଲଭାବେ ପରେ ଜାଣି ପାରିଲେ ଯେ, ହିଟଲରଙ୍କ ଯୋଗୁଁ ହିଁ ଦ୍ୱିତୀୟ ମହାସମର ଘଟିଥିଲା।

ତେଣୁ ସବୁ ଜ୍ୟୋତିଷ-ବିଶାରଦମାନେ ଯେ ପ୍ରତି କ୍ଷେତ୍ରରେ ତ୍ରିକାଳ ଜ୍ଞାନ ଦେଇ ପାରିବେ- ଏପରି ଭାବି ନେବା ବୃଥା। ତେବେ ଆମ ଜ୍ଞାତସାରରେ ଏମିତି କୋଟିକରେ ଗୋଟିଏ ଜ୍ୟୋତିଷୀ ଅବଶ୍ୟ ଥାଆନ୍ତି, ଯେଉଁମାନଙ୍କୁ ଅବିଶ୍ୱାସ କରି ହେବ ନାହିଁ। ଏହି ମୁଷ୍ଟିମେୟ ଯୋଗ-ପୁରୁଷମାନେ କର-କପାଳକୋଷ୍ଠୀ ଇତ୍ୟାଦି ଉପରେ ନିର୍ଭର କରିଥାନ୍ତି; ନାଁ ଏଇ ସବୁକୁ ଲୋକ-ଦେଖାଣିଆ ଭାବେ ଉପସ୍ଥାପନ କରି ଅନ୍ୟ କେଉଁ ସାଧନା ଦ୍ୱାରା ସଫଳତା ହାସଲ କରିଥାନ୍ତି- ଆମେ ସେଇ ସଂପର୍କରେ ନିଶ୍ଚିତ ନୋହୁଁ। ପ୍ରକୃତରେ ସେମାନଙ୍କ ଏହି ଅଲୌକିକ ଶକ୍ତିର କାରଣ ବା ଉତ୍ସ ଅତି ଗୋପନୀୟ ଏବଂ ତାର ରହସ୍ୟ ଆମେ ଆଜିଯାଏଁ ଉଦ୍‌ଘାଟନ କରି ପାରି ନାହୁଁ। ଏଣୁ ସେମାନଙ୍କ ଏହି ଶକ୍ତିକୁ ଗୁହ୍ୟ ବା ଗହନ ବିଜ୍ଞାନର ଅନ୍ତର୍ଭୁକ୍ତ କରିବା ଯଥାର୍ଥ ହେବ।

ବର୍ତ୍ତମାନ ଏହି ଅଲୌକିକ ଶକ୍ତିର କାର୍ଯ୍ୟକାରିତା ସଂପର୍କରେ କିଛି ବିବରଣୀ ଦେବା ସମୀଚୀନ ହେବ। ଏହି ସଂପର୍କରେ ନୋଷ୍ଟ୍ରାଡମ୍‌ସ୍ (୧୫୦୩-୧୫୬୬)ଙ୍କ ବିଷୟରେ ଉଲ୍ଲେଖ କରାଯାଉ। ଯେଉଁ ହିଟଲରଙ୍କ ସଂପର୍କରେ ନେଲୋର ତ୍ରୁଟିପୂର୍ଣ୍ଣ ଗଣନା କରି ଅପଖ୍ୟାତି ଅର୍ଜିଥିଲେ, ନୋଷ୍ଟ୍ରାଡମ୍‌ସ୍ ସେଇ ହିଟଲରଙ୍କ ସମ୍ବନ୍ଧରେ ନିର୍ଭୁଲ ଭବିଷ୍ୟବାଣୀ ଦେଇ ଚିରସ୍ମରଣୀୟ ହୋଇ ପାରିଛନ୍ତି। ଷୋଡ଼ଶ ଶତାବ୍ଦୀରେ ଜନ୍ମିତ ଏଇ ଯୋଗଜନ୍ମା ପୁରୁଷଙ୍କ ନିକଟରେ ଅସାଧାରଣ ଦୈବୀଶକ୍ତି ଅନ୍ତର୍ନିହିତ ଥିଲା, ଯାହାଦ୍ୱାରା ସେ ସୁଦୂର ଭବିଷ୍ୟତ ସଂପର୍କରେ ନିଖୁଣ ଭବିଷ୍ୟ ବ୍ୟାଖ୍ୟା ଦେଇ ପାରୁଥିଲେ। ବିଂଶ ଶତାବ୍ଦୀରେ ହିଟଲର ଜନ୍ମ ହେବେ ବୋଲି ସେ କେବଳ କହି ନଥିଲେ; ତାଙ୍କ ଯୋଗୁଁ ଦ୍ୱିତୀୟ ବିଶ୍ୱଯୁଦ୍ଧ ସଂଘଠିତ ହେବ ଏବଂ ସେଥିରେ ସେ ପରାଜିତ ହେବେ ବୋଲି ମଧ୍ୟ ଜଣାଇଥିଲେ। ଏତଦ୍‌ବ୍ୟତୀତ ଏହି ମହାଯୁଦ୍ଧରେ କେଉଁ ଧରଣର ଯୁଦ୍ଧାସ୍ତ୍ର ବ୍ୟବହାର ହେବ-ତାର ମଧ୍ୟ କିଛି ସୂଚନା ସେ ଦେଇଥିଲେ। ଯଥା: ''ଆକାଶରେ ଗର୍ଜନ କରୁଥିବା ଅସ୍ତ୍ର'' ଏବଂ ''ଅଗ୍ନିବାହକ ଉଡ୍ଡୀୟମାନ ଯନ୍ତ୍ର'' ବିଷୟରେ ନୋଷ୍ଟ୍ରାଡାମ୍‌ସ୍ ଯାହା ଉଲ୍ଲେଖ କରିଛନ୍ତି, ତାକୁ ବିମାନ,

ବୋମାବର୍ଷଣକାରୀ ବ୍ୟୋମଯାନ ଓ ଦ୍ୱିତୀୟ ମହାଯୁଦ୍ଧରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଲାଭ କରିଥିବା ଭି-ଅସ୍ତ୍ର ବୋଲି କୁହାଯାଇପାରେ । ପୁଣି ଯୁଦ୍ଧରେ ବୈମାନିକମାନେ ''ଅଧା ଘୁଷୁରି ଅଧା ମଣିଷ'' ପରି ଦେଖାଯିବେ ବୋଲି ସେ ଯେଉଁ ବର୍ଣ୍ଣନ କରିଛନ୍ତି, ତାହା ଅମ୍ଳଘନ ଥଳିର କୃତ୍ରିମ ମୁଖାବରଣ, ହେଲ୍‌ମେଟ ଓ ଗଗ୍‌ଲସ୍ ପିନ୍ଧି ଯୁଦ୍ଧ କରୁଥିବା ପାଇଲଟ୍‌ଙ୍କ ପ୍ରତି ପ୍ରଯୁଜ୍ୟ ।

ନୋଷ୍ଟ୍ରାଡାମ୍‌ସ୍‌ଙ୍କ ଏହି ବିଚକ୍ଷଣ ଜ୍ୟୋତିଷ-ଶାସ୍ତ୍ର ପ୍ରତି ସର୍ବସାଧାରଣ ବେଶ୍ ପରିଚିତ ଥିଲେ । ତାଙ୍କର ଭବିଷ୍ୟବାଣୀ ପ୍ରତି ସର୍ବସାଧାରଣଙ୍କ ଅଗାଧ ବିଶ୍ୱାସ ରହିଥିଲା । ବିଶେଷତଃ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ହିଟ୍‌ଲରଙ୍କ୍ ପରାଜୟ ଘଟିବ ବୋଲି ସେ ପୂର୍ବରୁ ଉଲ୍ଲେଖ କରିଥିବା ଯୋଗୁଁ ହିଟ୍‌ଲରଙ୍କ ପ୍ରଚାର-ମନ୍ତ୍ରୀ ଜୋସେଫ ଗୋବଲ୍‌ସ ଆତଙ୍କିତ ହୋଇ ଯାଇଥିଲେ । ଏମିତି ଏକ ନୈରାଶ୍ୟଜନକ ଭବିଷ୍ୟବାଣୀ ଜର୍ମାନୀ-ସେନା ବାହିନୀ ଓ ସମର୍ଥକଙ୍କ ମନୋବଳ ଭାଙ୍ଗିଦେବା ସଙ୍ଗେ ସଙ୍ଗେ ଫ୍ରାନ୍‌ସ, ଇଂଲଣ୍ଡ ପରି ଶତ୍ରୁ-ରାଷ୍ଟ୍ରମାନଙ୍କୁ ଅଧିକ ନୈତିକ ଉତ୍ସାହ ଯୋଗାଇବ ବୋଲି ଭାବି ଗୋବଲ୍‌ସ ପ୍ରମାଦ ଗଣିଲେ । ତେଣୁ ୧୯୪୦ ମସିହାରେ ଯେତେବେଳେ ହିଟ୍‌ଲର ଫ୍ରାନ୍‌ସ ଉପରେ ଆକ୍ରମଣ ଚଳାଇଲେ, ସେ ନୋଷ୍ଟ୍ରାଡମ୍‌ସଙ୍କ ଭବିଷ୍ୟବାଣୀକୁ ଓଲଟ ପାଲଟ କରି ମିଥ୍ୟା ପ୍ରଚାରପତ୍ରମାନ ମୁଦ୍ରଣ କଲେ ଏବଂ ଆକାଶ ମାର୍ଗରୁ ଏଇ ସବୁ ପ୍ରଚାର ପତ୍ର ଫାନ୍‌ସ ଓ ବେଲଜିଅମ୍‌ର ଇଲାକାରେ ନିକ୍ଷେପ କଲେ । ଏହି ପ୍ରଚାରରେ ଗୋବେଲସ ମିଛରେ ଉଲ୍ଲେଖ କରିଥିଲେ ଯେ, ନୋଷ୍ଟ୍ରାଡମ୍‌ସଙ୍କ ଭବିଷ୍ୟବାଣୀ ଅନୁଯାୟୀ ହିଟ୍‌ଲର୍ ହିଁ ଯୁଦ୍ଧରେ ବିଜୟୀ ହେବେ ଏବଂ ଫ୍ରାନ୍‌ସର ଉତ୍ତର ପୂର୍ବାଞ୍ଚଳ ଉପରେ ହିଟ୍‌ଲର କୌଣସି ଆକ୍ରମଣ କରିବେ ନାହିଁ । ଏହି ପଦକ୍ଷେପ ନେବା ବେଳେ ଗୋବେଲ୍‌ସ ଭାବିଥିଲେ ଯେ, ନୋଷ୍ଟ୍ରାଡମ୍‌ସ୍‌ଙ୍କ ପ୍ରତି ଲୋକଙ୍କର୍ ଗଭୀର ବିଶ୍ୱାସ ଥିବାରୁ ଫ୍ରାନ୍‌ସର ଉତ୍ତର ପୂର୍ବାଂଚଳର ଅଧିବାସୀମାନେ ହିଟ୍‌ଲରଙ୍କୁ ସମର୍ଥନ କରିବେ ଏବଂ ପ୍ୟାରିସ ଓ କେତେକ ବନ୍ଦରକୁ ବିନା ବାଧା-ବିଘ୍ନରେ ମାଡ଼ିଯିବା ପାଇଁ ହିଟ୍‌ଲରଙ୍କ ସେନାବାହିନୀକୁ ସାହାଯ୍ୟ କରିବେ ।

କିନ୍ତୁ ବ୍ରିଟିଶ ଗୋଇନ୍ଦା ସଂସ୍ଥା ହିଟ୍‌ଲର-ଗୋବେଲ୍‌ସଙ୍କ ଉପରୋକ୍ତ ଚାଲ୍ ବୁଝି ପାରିଲେ । ସେମାନେ ଭଲ ଭାବେ ଜାଣନ୍ତି ଯେ, ନୋଷ୍ଟ୍ରାଡମ୍‌ସଙ୍କ ଭବିଷ୍ୟବାଣୀ ଅନୁଯାୟୀ ହିଟ୍‌ଲ୍‌ର ପରାଜିତ ହେବେ । ତେଣୁ ସେମାନେ ନିଜ ପକ୍ଷକୁ ସମର୍ଥନ କରି ତୁରନ୍ତ ପ୍ରଚାରପତ୍ରମାନ ବାଣ୍ଟିବାରେ ଲାଗିଲେ, ଯେଉଁଥିରେ ସତକଥା ଲେଖା ଯାଇ ହିଟ୍‌ଲର୍‌ଙ୍କ ପରାଜୟ ସଂପର୍କରେ ସୁସ୍ପଷ୍ଟ ସୂଚନା ଦିଆଯାଇଥିଲା ।

ଏହି ଘଟଣାରୁ ପ୍ରତୀତ ହୁଏ ଯେ, ଜ୍ୟୋତିଷଶାସ୍ତ୍ର ବିଶ୍ୱାସ ଯୋଗ୍ୟ ହୋଇ ପାରିଲେ, ତାହା କିପରି ଯୁଦ୍ଧ କୌଶଳରେ ମଧ୍ୟ ପ୍ରମୁଖ ସ୍ଥାନ ଅଧିକାର କରେ । ତେବେ ଏହି ସ୍ଥିତି

ସବୁବେଳେ ସମ୍ଭବ ନୁହେଁ– ବିଶେଷତଃ ବହୁ ଜ୍ୟୋତିଷୀ ଭଣ୍ଡାମି କରୁଥିବା ଯୋଗୁଁ କିମ୍ବା ଫାଲତୁ ବା ତ୍ରୁଟିପୂର୍ଣ୍ଣ ଭବିଷ୍ୟ ବାର୍ତ୍ତା ଦେଉଥିବା ଯୋଗୁଁ ଗହନ ବିଜ୍ଞାନର ଯଥେଷ୍ଟ ମାନ ହ୍ରାସ ଘଟୁଛି । ପ୍ରକୃତରେ ନୋଷ୍ଟ୍ରାଡ଼ମ୍‌ସଙ୍କ ଭବିଷ୍ୟବାଣୀ ଏପରି ଗୁରୁତ୍ୱପୂର୍ଣ୍ଣ ଓ ବିଶ୍ୱାସଯୋଗ୍ୟ ହେବା ପୂର୍ବରୁ ଲୋକମାନେ ତାଙ୍କୁ ନାନା ପ୍ରକାର ଚତୁର ପରୀକ୍ଷାର ସମ୍ମୁଖୀନ କରାଇଥିଲେ ବୋଲି ଶୁଣାଯାଏ । ତନ୍ମଧ୍ୟରୁ ଗୋଟିଏ ଦୃଷ୍ଟାନ୍ତ ନିମ୍ନରେ ଦିଆଗଲା ।

ଜଣେ ଫରାସୀ ଭଦ୍ରବ୍ୟକ୍ତିଙ୍କର ଦୁଇଟି ପୋଷା ଘୁଷୁରି ଥିଲା । ତନ୍ମଧ୍ୟରୁ ଗୋଟିକର ବର୍ଣ୍ଣ କଳା ଏବଂ ଅନ୍ୟଟିର ଧଳା । ଉକ୍ତ ଭଦ୍ରବ୍ୟକ୍ତି ନୋଷ୍ଟ୍ରାଡ଼ମ୍‌ସଙ୍କୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ ପଚାରିଲେ, ‘‘ମୋ ଘୁଷୁରି ଦୁଇଟିର ଭବିଷ୍ୟତ କଣ ?’’ ନୋଷ୍ଟ୍ରାଡ଼ମ୍‌ସ ଉତ୍ତର ଦେଲେ, ‘‘ଆପଣ କଳା ଘୁଷୁରିର ମାଂସ ଖାଇବେ । ତେବେ ଗୋଟିଏ ଗଧିଆ ବାଘ ଧଳା ଘୁଷୁରିଟିକୁ ଖାଇଦେବ ।’’ ଭଦ୍ରବ୍ୟକ୍ତି ଜଣକ ତ ନୋଷ୍ଟ୍ରାଡ଼ମ୍‌ସଙ୍କୁ ପରୀକ୍ଷା କରୁଥିଲେ । ସେ ତାଙ୍କ ଭବିଷ୍ୟବାଣୀକୁ ମିଥ୍ୟା ବୋଲି ପ୍ରମାଣିତ କରିବା ପାଇଁ ତତ୍‌କ୍ଷଣାତ୍ ଧଳା ଘୁଷୁରିଟିର ମାଂସ ରୋଷେଇ କରି ରାତ୍ର-ଭୋଜନ ବେଳେ ତାଙ୍କ ପାଇଁ ପରଶିବାକୁ ରୋଷେୟାକୁ ଆଦେଶ ଦେଲେ ।

ସେଦିନ ରାତିରେ ନୋଷ୍ଟ୍ରାଡ଼ମ୍‌ସଙ୍କ ସହିତ ରାତ୍ର-ଭୋଜନ କରୁଥିବା ବେଳେ ଭଦ୍ରବ୍ୟକ୍ତି ଜଣକ ତାଙ୍କ ଭବିଷ୍ୟବାଣୀ କିପରି ମିଥ୍ୟା ହୋଇଗଲା, ତାହା ବୁଝାଉଥିଲେ । କିନ୍ତୁ ସେତେବେଳେ ପୂଝାରୀ ଜଣାଇଲା ଯେ, ଧଳା ଘୁଷୁରିଟିକୁ କାଟି ସେ ମାଂସ ପ୍ରସ୍ତୁତ କରି ରଖିଥିବା ବେଳେ ଅଚାନକ ଗୋଟିଏ ପୋଷା ଗଧିଆ ବାଘଛୁଆ ସେଇ ମାଂସ ତକ ଖାଇ ଦେଲା । ତେଣୁ ସେ ବାଧ ହୋଇ କଳା ଘୁଷୁରିଟି କାଟି ତାଙ୍କୁ ବର୍ତ୍ତମାନ ଖାଇବାକୁ ଦେଇଛି !

ଏହା ଜାଣିବା ପରେ ଭଦ୍ରବ୍ୟକ୍ତି ଜଣକ ନୋଷ୍ଟ୍ରାଡ଼ାମ୍‌ସଙ୍କୁ ଧନ୍ୟ ଧନ୍ୟ କଲେ । ବାସ୍ତବିକ ତାଙ୍କର ତ୍ରିକାଳ ଜ୍ଞାନ ଅତି ନିର୍ଭୁଲ ଓ ନିର୍ଭରଯୋଗ୍ୟ ଥିଲା । ଥରେ ଯୌବନାବସ୍ଥାରେ ଇଟାଲୀରେ ବୁଲୁଥିବା ବେଳେ ସେ ଫେଲିସିପେରେଟି ନାମକ ଜଣେ ସାଧାରଣ ସନ୍ନ୍ୟାସୀର ପାଦ ତଳେ ଆଣ୍ଠୁ ମାଡ଼ି ପ୍ରଣାମ ଜଣାଇଲେ । ଏହି ଅପ୍ରତ୍ୟାଶିତ ଘଟଣାଟି ସେତେବେଳେ ସେଠାରେ ଉପସ୍ଥିତ ଥିବା ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଚକିତ କରିଦେଇଥିଲା । ତତ୍‌କ୍ଷଣତ୍ ନୋଷ୍ଟ୍ରାଡ଼ମ୍‌ସ ସେମାନଙ୍କୁ ସ୍ପଷ୍ଟୀକରଣ ଦେଇଥିଲେ ଯେ, ସେଇ ସାଧାରଣ ସନ୍ନ୍ୟାସୀ ଜଣକ ଦିନେ ମହାମାନ୍ୟ ପୋପ୍‌ହେବେ । ପ୍ରକୃତରେ ୧୫୮୫ ସାଲରେ ସେ ପୋପ୍ ମଷ୍ଠମ ସିକ୍‌ସଟସ୍ ଭାବେ ପରିଚିତ ହେଲେ । ଉନବିଂଶ ଶତାବ୍ଦୀରେ ପେନ୍‌ସିଲିନ୍‌ର ଉଦ୍‌ଭାବକ ଲୁଇସ୍ ପାଶ୍ଚରଙ୍କ ଜନ୍ମ ଓ କୃତିତ୍ୱ ତଥା ଦ୍ୱିତୀୟ ମହାଯୁଦ୍ଧରେ ହିରୋସୀମା ଓ ନାଗାସାକିଠାରେ ଆଣବିକ ବୋମା ବିସ୍ଫୋରଣ ସଂପର୍କରେ ମଧ୍ୟ ସେ ଅଗ୍ରୀମ ସମ୍ବାଦ ଯୋଗାଇଥିଲେ ।

ଜ୍ୟୋତିଷଶାସ୍ତ୍ର ସମେତ ଅନ୍ୟ ଗହନ ବିଜ୍ଞାନ ପ୍ରତି ଆମ ସମାଜ ଯେଉଁ ସମ୍ମାନ ବର୍ତ୍ତମାନ ପ୍ରଦର୍ଶନ କରୁଛି, ତାହା ନୋଷ୍ଟ୍ରାଡ଼ମ୍ସଙ୍କ ପରି କେତେକ ଅସାଧାରଣ ବ୍ୟକ୍ତିଙ୍କ ଅବଦାନ ଯୋଗୁଁ ସମ୍ଭବର ହୋଇ ପାରିଛି। କିନ୍ତୁ ଏଇ ଯୋଗଜନ୍ମା ବ୍ୟକ୍ତିମାନେ ଧରାପୃଷ୍ଠରେ ଅକସ୍ମାତ ଜନ୍ମ ହୋଇଥାନ୍ତି। ସେମାନଙ୍କ ସଫଳତା ପଛରେ କେଉଁ ରହସ୍ୟ ରହିଛି ତାହା ଆମ ସମସ୍ତଙ୍କ ବୋଧଗମ୍ୟ ହେଉନାହିଁ। ବୈଜ୍ଞାନିକମାନେ ଯେ ଏଇ ପ୍ରତିଭାର ମୂଳରେ ରହିଥିବା କାରଣଟି ଉନ୍ମୋଚନ କରି ପାରିବେ— ତାହା ବିଶ୍ୱାସ କରି ହେଉ ନାହିଁ। ପ୍ରକୃତରେ ବିଜ୍ଞାନ ଓ ଜ୍ୟୋତିଷଶାସ୍ତ୍ର ମଧ୍ୟରେ ମୌଳିକ ସ୍ତରରେ ପ୍ରଭେଦ ରହିଛି। ତେଣୁ ବିଜ୍ଞାନ ଦ୍ୱାରା ଜ୍ୟୋତିର୍ବିଦମାନଙ୍କର ପ୍ରତିଭାର ପ୍ରକୃତ ସତ୍ତା ଉଦ୍‌ଘାଟନ କରିବା ଅବାସ୍ତବ ମନେ ହୁଏ। ବାସ୍ତବିକ ଉଭୟଙ୍କର ଲକ୍ଷ୍ୟ, ଉଦ୍ଦେଶ୍ୟ, ଆଭିମୁଖ୍ୟ ଓ କାର୍ଯ୍ୟପଦ୍ଧତି ପରସ୍ପର ଠାରୁ ସ୍ୱତନ୍ତ୍ର। ତେଣୁ ଆମେ ସେମାନଙ୍କ ମଧ୍ୟରେ ସାମଞ୍ଜସ୍ୟ ଖୋଜିଲେ, ଗ୍ରାମ୍ ସହିତ ସେଣ୍ଟିମିଟର ବା ସେକେଣ୍ଡର ସମାନତା ଖୋଜିବା ପରି ଗୋଟିଏ ମସ୍ତବଡ଼ ଭୁଲ୍ ହୋଇପାରେ। (ଦ୍ରଷ୍ଟବ୍ୟ: ପଦାର୍ଥ ବିଜ୍ଞାନର ''ଏକକ ଓ ପରିମାପ'' ଅଧ୍ୟାୟ)।

ଏହି ପରିପ୍ରେକ୍ଷୀରେ ଆମେ ସୂଚାଇବୁ ଯେ, ଯୋଗଜନ୍ମା ଜ୍ୟୋତିର୍ବିଦମାନଙ୍କୁ ଅଣବୈଜ୍ଞାନିକ ବୋଲି ସମାଲୋଚକମାନେ ହୁଏତ କହିବେ; ତଥାପି ଏହି ବିଜ୍ଞାନ-ଯୁଗରେ ସେମାନଙ୍କ ସ୍ଥାନ, ମାନ, ସମ୍ମାନ ବଜାୟ ହୋଇ ରହିବ ବୋଲି ଆଶା କରାଯାଏ; କାରଣ ବସ୍ତୁବାଦୀ ବିଜ୍ଞାନ ଓ ଗହନ ବିଜ୍ଞାନ ପରସ୍ପରର ପରିପୂରକ ହୋଇଥିବା ଯୋଗୁଁ ସେମାନଙ୍କ ସହାବସ୍ଥାନ ସମ୍ଭବ।



# ଖେଳାଳୀର ପିଲା କବିଲା

ହେଇକ୍ ଡ୍ରେସଚେଲର ପୂର୍ବଜର୍ମାନୀର ଜଣେ ଖ୍ୟାତନାମା ମହିଳା ଦୌଡ଼ାଳୀ । ୧୯୮୫ ସାଲରେ ସେ ନିଜ ଦେଶର ଜଣେ ବିଖ୍ୟାତ ଫୁଟବଲ ଖେଳାଳୀ ଆଣ୍ଡିସ ଡ୍ରେସଚେଲରଙ୍କୁ ବିବାହ କରିଥିଲେ । ତା ପର ବର୍ଷ ୧୯୮୬ରେ ସେ ୟୁରୋପୀୟ ଚମ୍ପିଆନସିପ୍‌ରେ ଦୁଇଟି ସ୍ୱର୍ଣ୍ଣପଦକ ହାସଲ କରିଥିଲେ ।

ଏପରି କୃତିତ୍ୱର ଅଧିକାରିଣୀ ହୋଇ ତୁଙ୍ଗ ସ୍ଥାନରେ ଥିବାବେଳେ ଶ୍ରୀମତୀ ହେଇକ୍ ମାତୃତ୍ୱ ଲାଭ କରିବା ପାଇଁ ଆଗ୍ରହୀ ହେଲେ । କିନ୍ତୁ ପୂର୍ବ ଜର୍ମାନୀର କ୍ରୀଡ଼ା କର୍ତ୍ତୃପକ୍ଷ ୧୯୮୮ ସାଲରେ ସିଓଲଠାରେ ଅନୁଷ୍ଠିତ ହେବାକୁ ଥିବା ଅଲିମ୍ପିକ୍ କ୍ରୀଡ଼ା ପ୍ରତିଯୋଗିତା ଶେଷ ନ ହେବା ପର୍ଯ୍ୟନ୍ତ ସନ୍ତାନ ପ୍ରସବ ନ କରିବା ପାଇଁ ତାଙ୍କ ଉପରେ କଟକଣା ଜାରି କରିଥିଲେ । ଏହି ନିର୍ଦ୍ଦେଶ ଉଲ୍ଲଘଂନ କଲେ, କଠୋର ଦଣ୍ଡବିଧାନ କରାଯିବ ବୋଲି ମଧ ତାଙ୍କୁ ଧମକ ଦିଆଯାଇଥିଲା । ବିବାହ କରିଥିଲେ ସୁଦ୍ଧା ଏହି କାରଣରୁ ସେ ଦୀର୍ଘ ତିନିବର୍ଷ ଧରି ମାତୃତ୍ୱରୁ ବଂଚିତା ହୋଇଥିଲେ ।

୧୯୯୦ରେ ପୂର୍ବ ଜର୍ମାନୀରେ କମ୍ୟୁନିଷ୍ଟ ଶାସନ ସମାପ୍ତ ହେବା ପରେ ପଶ୍ଚିମ-ଜର୍ମାନୀର ଗୋଟିଏ କ୍ରୀଡ଼ାପତ୍ରିକାକୁ ସାକ୍ଷାତକାର ଦେବା ବେଳେ ଶ୍ରୀମତୀ ହେଇକ୍ ଡ୍ରେସଚେଲରଙ୍କ ଜୀବନର ଏହି ଦୁଃଖଦାୟକ ତଥ୍ୟଟି ଲୋକଲୋଚନକୁ ଆସିଥିଲା । ଖେଳାଳୀର ବ୍ୟକ୍ତିଗତ ଜୀବନକୁ ନିୟନ୍ତ୍ରଣ କରିବା ପାଇଁ ପୂର୍ବ ଜର୍ମାନୀ କର୍ତ୍ତୃପକ୍ଷ ଯେଉଁ ପଦକ୍ଷେପ ନେଲେ, ତାର ବିରୁଦ୍ଧରେ କେହି କେହି ତୀବ୍ର ପ୍ରତିକ୍ରିୟା ପ୍ରକାଶ କରି ପାରନ୍ତି । ଏହା ଏକଛତ୍ରବାଦୀ କମ୍ୟୁନିଷ୍ଟ ଶାସନର ବ୍ୟକ୍ତି-ବିଶେଷଙ୍କ ସ୍ୱାଧୀନତା ପ୍ରତି ନଗ୍ନ ହସ୍ତକ୍ଷେପ ବୋଲି ସମାଲୋଚକମାନେ ଆଖ୍ୟା ଦେଇ ପାରନ୍ତି । ତେବେ ଏହି ପ୍ରସଙ୍ଗରେ ଅନ୍ୟ ଏକ ମୌଳିକ ପ୍ରଶ୍ନ ଉଠେ: ସ୍ୱାଭାବିକ ଦାମ୍ପତ୍ୟ ଜୀବନ ପ୍ରକୃତ ପକ୍ଷେ ଜଣେ ଖେଳାଳୀ ପାଇଁ କ୍ରୀଡ଼ାକ୍ଷେତ୍ରରେ ବାଧାବିଘ୍ନ ସୃଷ୍ଟି କରିଥାଏ କି ?

ଏମିତି ବି ହୋଇଥାଏ ଯେ, ଜଣେ ଜଣେ ଖେଳାଳୀ ନିଜର କ୍ରୀଡ଼ା-ନୈପୁଣ୍ୟ ବଜାୟ ରଖିବା ପାଇଁ ସନ୍ତାନ ପ୍ରସବ କରିବା ଦୂରେ ଥାଉ; ବିବାହ କରିବାକୁ ମଧ ପଶ୍ଚାତ୍‌ପଦ ହୋଇଥାନ୍ତି । ଏମିତି ଏକ ଦୃଷ୍ଟାନ୍ତ ହେଉଛି ଆମେରିକୀୟ ଟେନିସ-ତାରକା କ୍ରିସ୍ ଏଭର୍ଟ

ଲଏଡ୍ । ୧୯୭୨ ସାଲରେ କ୍ରିସ୍ ଏଭର୍ଟ ନିଜ ଦେଶର ପ୍ରଖ୍ୟାତ ଟେନିସ ଖେଳାଳୀ ଜିମି କନର୍ସଙ୍କୁ ଓ୍ୱିମ୍ବିଲ୍‌ଡନଠାରେ ପ୍ରଥମ ଥର ପାଇଁ ସାକ୍ଷାତ କରି ଥିଲେ । ଏଇ ଅବସରରେ ଉଭୟଙ୍କ ମଧ୍ୟରେ ପରସ୍ପର ପ୍ରତି ଗଭୀର ପ୍ରେମ ଓ ଆସକ୍ତି ଜାଗରିତ ହେଲା । କ୍ରମେ କ୍ରମେ ସେମାନଙ୍କ ସଂପର୍କ ଏତେ ନିବିଡ଼ ହେଲା ଯେ, ସେମାନେ ସାମୟିକ ବିଚ୍ଛେଦ-ବେଦନା ମଧ୍ୟ ସହ୍ୟ କରିବା ପାଇଁ ଅସହାୟ ହୋଇ ପଡୁଥିଲେ । ତେବେ ଏଇ ଗଭୀର ପ୍ରଣୟ ମଧ୍ୟରେ ଟେନିସ୍ ଖେଳ ପ୍ରତି ସେମାନଙ୍କ ଆଗ୍ରହ ଓ ନିଷ୍ଠା ଦୁର୍ବଳ ହୋଇ ନଥାଏ; ବରଂ ସେମାନେ ଅଧିକ ଉତ୍ସାହ ଓ ଦୃଢ଼ସଂକଳ୍ପର ସହିତ ଟେନିସ୍ ଖେଳିଲେ । ଫଳ ସ୍ୱରୂପ ୧୯୭୪ ମସିହାରେ ଉଭୟ ନିଜ ନିଜ ବିଭାଗରେ ଓ୍ୱିମ୍ବିଲଡନ୍ ଚମ୍ପିଆନ୍‌ସିପ୍ ପ୍ରତିଯୋଗିତାରେ ବିଜୟୀ ହୋଇ ବିଶ୍ୱର ମାନ୍ୟତା-ତାଲିକାରେ ଶୀର୍ଷ ସ୍ଥାନ ଅଧିକାର କଲେ । ସେତେବେଳେ କ୍ରିସ୍‌ଙ୍କ ବୟସ ୧୯ ଓ କନର୍ସଙ୍କ ବୟସ ୨୧ ବର୍ଷ ।

ଏଇ ବିଜୟ- ଉଲ୍ଲାସର ଅପରାହ୍ନେ ନଭେମ୍ବର ୮ ତାରିଖ ଦିନ ବିବାହ ହେବା ପାଇଁ ଦୁହେଁ ପ୍ରସ୍ତାବ ରଖିଲେ । କିନ୍ତୁ ଶେଷ ମୁହୂର୍ତ୍ତରେ କ୍ରିସ୍‌ଙ୍କୁ ଜିମ୍ମି ସ୍ପଷ୍ଟଭାବେ ଜଣାଇ ଦେଲେ ଯେ, ବିବାହ ପରେ ପରେ କ୍ରିସ୍‌ଙ୍କୁ ଟେନିସ୍ ଜଗତରୁ ବିଦାୟ ନେବାକୁ ପଡ଼ିବ; ତତ୍ ସହିତ ପରିବାରର ସଂପୂର୍ଣ୍ଣ ଦାୟିତ୍ୱ ବହନ କରି ସନ୍ତାନ ସନ୍ତତିର ଜନନୀ ହେବାକୁ ପଡ଼ିବ । ଜିମ୍ମି କନର୍ସଙ୍କ ଏହି ସର୍ତ୍ତ କ୍ରିସ୍‌ଙ୍କୁ ବିଚଳିତ କରିଦେଲା । ସେ କଣ କରିବେ- କିଛି ସ୍ଥିର କରି ପାରିଲେ ନାହିଁ । ପରିଶେଷରେ ବିଖ୍ୟାତ ଟେନିସ-ତାରକା ଏବଂ ନିଜର ଅନ୍ତରଙ୍ଗ ସାଥି ବିଲି-ଜିନ୍-କିଙ୍ଗଙ୍କ ପରାମର୍ଶ ଲୋଡ଼ିଲେ ।

ବିଲି ଜିନ୍ କିଙ୍ଗଙ୍କର ଟେନିସ ଖେଳରେ ବିପୁଳ ସଫଳ ଅଭିଜ୍ଞତା ଥିଲା । ସେ ଯଥାର୍ଥ ଭାବେ କ୍ରିସ୍‌ଙ୍କୁ ଉପଦେଶ ଦେଲେ,"ତମର ବୟସ ବହୁତ କମ୍ । ତମ ସମ୍ମୁଖରେ ଗୋଟିଏ ବିରାଟ ଜୀବନ ପଡ଼ି ରହିଛି । ତମେ ଯଦି ଟେନିସ୍ ଖେଳିବାକୁ ଚାହଁ ଓ ନିଜର ଭବିଷ୍ୟତ ଗଢ଼ିବାକୁ ଚାହଁ, ତାହାହେଲେ ବିବାହ ବଂଧନରେ ନ ପଡ଼ିବା ହିଁ ଉଚିତ୍ ।" ତାଙ୍କର ଏହି ଉପଦେଶ କ୍ରିସ୍‌ଙ୍କୁ ବଶେଷ ପ୍ରଭାବିତ କଲା । ବିବାହ କରି ନିଜ ପ୍ରତିଭାର ଅକାଳ ଅବସାନ ଘଟାଇବା ପାଇଁ କ୍ରିସ୍ ଚାହିଁଲେ ନାହିଁ । ଏହି କାରଣରୁ କନର୍ସଙ୍କ ସହିତ ତାଙ୍କ ବିବାହ-ପ୍ରସ୍ତାବ ଅନ୍ତିମ କ୍ଷଣରେ ବନ୍ଦ ହୋଇ ଯାଇଥିଲା ।

ଏଠାରେ ଲକ୍ଷ୍ୟ କରିବା କଥା ଯେ, ତତ୍କାଳୀନ ପୂର୍ବ ଜର୍ମାନୀ ଅପେକ୍ଷା ଯୁକ୍ତରାଷ୍ଟ୍ର ଆମେରିକାର ସମାଜ ଅଧିକ ମୁକ୍ତ ଓ ଗଣତାନ୍ତ୍ରିକ । ଯୁକ୍ତରାଷ୍ଟ୍ରରେ ପ୍ରତ୍ୟେକ ବ୍ୟକ୍ତିକୁ ଯଥେଷ୍ଟ ସ୍ୱାଧୀନତା ଦିଆଯାଇଛି । ସେଠାରେ କୌଣସି ପ୍ରକାର ବାଧବାଧକତା ନ ଥିବା ସତ୍ତ୍ୱେ କ୍ରିସ୍ ଏଭେର୍ଟ ନିଜ ପେଶାରେ ଉନ୍ନତି ପାଇଁ ବିବାହ ବଂଧନରେ ଆବଦ୍ଧ ହୋଇ ନଥିଲେ । ଏହି

ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ, ଶ୍ରୀମତୀ ହେଇକ୍ ଡ୍ରେସଚେଲରଙ୍କୁ ମାତୃତ୍ୱରୁ ବଂଚିତ କରିବା ଯଥାର୍ଥ ହୋଇଛି । ବିଲି ଜିନ କିଙ୍ଗଙ୍କ ରୂପାନ୍ତର ଭାବେ ପୂର୍ବ ଜର୍ମାନୀ କର୍ତ୍ତୃପକ୍ଷ ଆବିର୍ଭାବ ହୋଇଛନ୍ତି ମାତ୍ର । ଅବଶ୍ୟ ହେଇକ୍‌ଙ୍କ କ୍ଷେତ୍ରରେ ଉପଦେଶ ପରିବର୍ତ୍ତେ ଆଦେଶ କାର୍ଯ୍ୟକ୍ଷମ ହୋଇଥିବା ଯୋଗୁଁ ଆମେ କେତେକାଂଶରେ ଚିନ୍ତିତ ।

ସଂପ୍ରତି କ୍ରୀଡ଼ାକ୍ଷେତ୍ରରେ ମହିଳାମାନଙ୍କର ଯୋଗଦାନ ମୁଖ୍ୟତଃ ସେମାନଙ୍କ ସନ୍ତାନପ୍ରସବ ଯୋଗୁଁ ସୀମିତ ହୋଇ ଯାଇଛି । ଅନ୍ୟଥା ସେମାନଙ୍କୁ ଯଥାସମ୍ଭବ ସୁବିଧା ସୁଯୋଗ ଯୋଗାଇ ଦିଆଯାଉଛି । ବହୁ ବର୍ଷ ପୂର୍ବେ ସେମାନଙ୍କୁ ଯେପରି କ୍ରୀଡ଼ାଙ୍ଗନରେ ନ୍ୟୁନ ଦୃଷ୍ଟିରେ ଦେଖାଯାଉଥିଲା, ବର୍ତ୍ତମାନ ଆଉ ସେଇ ପରିସ୍ଥିତି ନାହିଁ । ଖେଳିବା ତ ଦୂରର କଥା, ଖେଳ ଦେଖିବା ପାଇଁ ମଧ ସେମାନଙ୍କୁ ସେତେବେଳେ ନିଷେଧ କରାଯାଇଥିଲା ।

ଏହି ସଂପର୍କରେ ପୁରାତନ ଯୁଗର ଅଲିମ୍ପିକ ଖେଳ ଉଲ୍ଲେଯୋଗ୍ୟ । ବିବାହିତା ମହିଳାମାନେ ଖେଳ ପଡ଼ିଆରେ ଉପସ୍ଥିତ ହେଲେ ଅଲମ୍ପିଆଠାରେ ପୂଜିତ ହେଉଥିବା ଦେବୀ ରିଆ ଅପବିତ୍ର ହୋଇ ଯିବେ ବୋଲି ଲୋକେ ସେତେବେଳେ ବିଶ୍ୱାସ କରୁଥିଲେ । ପରମ ଦେବତା ଜିଅସ୍‌ଙ୍କ ମାତା, ରିଆ, ଯିଏକି ଅନ୍ୟ ଭାଷାରେ "ଉର୍ବରତାର ଦେବୀ" ଭାବେ ଖ୍ୟାତ, ଯଦି ମହିଳାମାନଙ୍କ ଉପସ୍ଥିତି ଯୋଗୁଁ ଅଶୁଦ୍ଧ ହୋଇ ଯିବେ, ତାହାହେଲେ ଏହା ତତ୍‌କାଳୀନ ସମାଜର ଏକ ଅସଂଗତ ଭାବନା ବୋଲି ମନେ ହୁଏ ନାହିଁ କି ?

ସେ ଯାହାହେଉ, ଏଇ ପରଂପରା ବା ବିଶ୍ୱାସକୁ ଯେଉଁ ବିବାହିତା ସ୍ତ୍ରୀ ଉଲଙ୍ଘନ କରେ ତାକୁ କଠୋର ଦଣ୍ଡ ଦିଆଯାଉଥିଲା । ଗୋଟିଏ ସୁଉଚ୍ଚ ପାହାଡ଼ ଶିଖରରୁ ତାକୁ ତଳକୁ ନିର୍ଦ୍ଦୟ ଭାବେ ଫୋପାଡ଼ି ଦିଆଯାଉଥିଲା । ଅବଶ୍ୟ ଥରେ ସୌଭାଗ୍ୟବଶତଃ ଜଣେ ମାତ୍ର ଆସାମୀ ଏଇ ଦଣ୍ଡରୁ ରକ୍ଷା ପାଇ ଯାଇଥିଲେ । ତାଙ୍କ ନା ହେଉଛି କ୍ୟାଲିପେଟେରା । ସେ ପୁରୁଷ-ପୋଷାକରେ ନିଜକୁ ସଜାଇ ଜନୈକ ବିଚାରପତିର ଛଦ୍ମବେଶରେ ଅଲିମ୍ପିଆ ଖେଳ ପଡ଼ିଆକୁ ଖେଳ ଦେଖିବା ପାଇଁ ଯାଇଥିଲେ; କାରଣ ସେତେବେଳେ ତାଙ୍କ ପୁଅ ପିସୋଡେରସ୍ ସେଇ ଖେଳ-ପ୍ରତିଯୋଗିତାରେ ଭାଗ ନେଉଥିଲା । କିନ୍ତୁ ଯେତେବେଳେ ଖେଳରେ ତାଙ୍କ ପୁଅ ବିଜୟୀ ହେଲା, ସେ ଏତେ ଦୂର ଆନନ୍ଦରେ ଆତ୍ମ ବିହ୍ୱଳ ହୋଇଗଲେ ଯେ, ତାଙ୍କ ଛଦ୍ମବେଶୀ ପୁରୁଷ-ପୋଷାକକୁ ଖୋଲି ସେ ଫୋପାଡ଼ି ଦେଲେ । କିନ୍ତ ଏହା ଦ୍ୱାରା ସେ ଜଣେ ସ୍ତ୍ରୀ ବୋଲି ଧରାପଡ଼ିଯାଇଥିଲେ ।

ଏହି ବେନିୟମତା ସତ୍ତ୍ୱେ ସେତେବେଳେ ତାଙ୍କୁ ଜୀବନରେ ମାରି ଦିଆଯାଇ ନଥିଲା । କାରଣ ତାଙ୍କର ପୁଅ, ଭାଇ ଓ ବାପା ବହୁ ଖେଳରେ ଭାଗ ନେଇ ବିଜୟୀ ହେଉଥାନ୍ତି । ତେବେ ଏହି ଘଟଣା ପରେ ଅଲିମ୍ପିକ କର୍ତ୍ତୃପକ୍ଷ ପୂର୍ବ ନିୟମକୁ ସଂଶୋଧନ କରି ଏମିତି ନୂତନ

ନିୟମ ପ୍ରଣୟନ କଲେ, ଯାହା ଫଳରେ ବିଚାରପତିମାନେ ଏଣିକି ଉଲଗ୍ନ ହୋଇ ପୁରୁଷ ହୋଇଥିବାର ପ୍ରମାଣ ଦେବା ପରେ ହିଁ ଅଲିମ୍ପିକ୍ କ୍ରୀଡ଼ାଙ୍ଗନକୁ ଯିବା ପାଇଁ ଅନୁମତି ପାଇଲେ ।

ବର୍ତ୍ତମାନ ଯୁଗ ବଦଳି ଗଲାଣି । ମହିଳାମାନେ ପୁରୁଷମାନଙ୍କ ପରି କ୍ରୀଡ଼ା କ୍ଷେତ୍ରରେ ସମସ୍ଥାନ ଅଧିକାର କଲେଣି । ବିଭିନ୍ନ ଖେଳରେ ଅଂଶ ଗ୍ରହଣ କରି ସେମାନେ କୃତିତ୍ୱ ହାସଲ କରୁଛନ୍ତି । କ୍ରୀଡ଼ା ଦର୍ଶକ ଭାବେ ମଧ ସେମାନଙ୍କ ସଂଖ୍ୟା ବହୁ ପରିମାଣରେ ବୃଦ୍ଧି ପାଇଛି । ସେମାନଙ୍କ ଉପସ୍ଥିତିକୁ ଟିଭି-କ୍ୟାମେରା ଆତୁରତାର ସହିତ ଅପେକ୍ଷା କରି ରହିଥିବା ପରି ମନେ ହେଉଛି ।

ତଥାପି ବେଳେ ବେଳେ ମହିଳାଙ୍କ ଯୋଗଦାନକୁ ହତୋତ୍ସାହିତ କରାଯାଇଥାଏ । ୧୯୮୩ ସାଲରେ ଅଷ୍ଟ୍ରେଲିଆରେ ପାକିସ୍ତାନୀ କ୍ରିକେଟ ଦଳ ଖେଳୁଥିବାବେଳେ ସେମାନଙ୍କ ସହଧର୍ମିଣୀମାନେ ମଧ ସେଠାକୁ ଯାଇଥିଲେ । କିନ୍ତୁ ଖେଳପଡ଼ିଆରେ ସେମାନଙ୍କ ଉପସ୍ଥିତି ବିରୋଧରେ ବିଶିଷ୍ଟ କ୍ରିକେଟଖେଳାଳୀ ସର୍ଫରାଜ ନବାଜ୍ ଆପତ୍ତି ଉଠାଇଥିଲେ, ‘‘ଯେତେବେଳେ ମହିଳାମାନେ ଏକତ୍ରିତ ହୋଇଯାନ୍ତି, ସେମାନେ ଗପସପ କରନ୍ତି... ଏବଂ ଯେତେବେଳେ ଏହି ଗପସପ ସେମାନଙ୍କ ସ୍ୱାମୀମାନଙ୍କ କାନରେ ପଡ଼େ, ସେମାନେ ଖେଳ ପ୍ରତି ଅନ୍ୟମନସ୍କ ରହନ୍ତି ।’’ (ଅମୃତ ବଜାର ପତ୍ରିକା - ୧୧.୧୨.୧୯୮୩) । ଏହି କାରଣରୁ ସର୍ଫରାଜ ନୱାଜ୍ ପାକିସ୍ତାନୀ କ୍ରିକେଟ-ଖେଳାଳୀମାନଙ୍କର ପତ୍ନୀମାନଙ୍କୁ ଶୀଘ୍ର ଅଷ୍ଟ୍ରେଲିଆରୁ ପାକିସ୍ତାନକୁ ଫେରାଇ ନେବା ପାଇଁ ଦାବୀ କରିଥିଲେ ।

ପାକିସ୍ତାନୀ ଯୁବତୀମାନେ ଏତାଦୃଶ ଗପସପରେ ମାତିଥାନ୍ତି କି ନାହିଁ- ଆମେ ଜାଣୁ ନାହୁଁ । ପୁଣି ସେମାନେ ଜୋରରେ ପାଟି କରି ଗପସପ କରିଥାନ୍ତି ନାଁ ତାଙ୍କ ଖେଳାଳୀ-ସ୍ୱାମୀମାନେ ତାଙ୍କ କଥାଭାଷାକୁ ଖେଳୁଥିବା ବେଳେ ନିଜେ କାନେଇ ରହିଥାନ୍ତି- ଏଇ ବିଷୟରେ ମଧ ଆମେ ନିଶ୍ଚିତ ନୋହୁଁ । ମୋଟା ମୋଟି ଭାବେ, ଖେଳାଳୀର ଏକାଗ୍ରତାରେ ଅଭାବ ପାଇଁ ପ୍ରକୃତରେ ସ୍ୱାମୀମାନେ ଦାୟୀ ନାଁ ସେମାନଙ୍କ ସ୍ତ୍ରୀମାନେ ଦାୟୀ—ଆମେ ଠିକ୍ ଭାବେ କହି ପାରିବୁ ନାହିଁ । ତେବେ ହଲାଣ୍ଡର ଫୁଟବଲ-ଖେଳାଳୀମାନଙ୍କର ସ୍ତ୍ରୀମାନେ ନିଜ ସ୍ୱାମୀମାନଙ୍କୁ ଖେଳିବାବେଳେ ଯଥେଷ୍ଟ ପ୍ରେରଣା ଓ ଉତ୍ସାହ କୁଆଡେ ଖେଳପଡ଼ିଆରେ ଯୋଗାଇଥାନ୍ତି ।

ଇଟାଲୀରେ ଅନୁଷ୍ଠିତ ୧୯୯୦ ବିଶ୍ୱକପ ଫୁଟବଲ ଚମ୍ପିଅନସିପ୍‌ର ପ୍ରାରମ୍ଭିକ ଖେଳମାନଙ୍କରେ ହଲାଣ୍ଡର ଆଶାନୁରୂପ ସଫଳତା ନ ହେବା ଦେଖି ତାଙ୍କ ଦଳ ଚିନ୍ତିତ ହୋଇ

ପଡ଼ିଲେ । ଏହା ପଛରେ ଥିବା କାରଣ ଅନୁସନ୍ଧାନ କରିବାକୁ ଯାଇ ଦଳର ଟେକ୍‌ନିକାଲ ଡିରେକ୍ଟର ରିନାସ ମିଖେଲ ଅନୁମାନ କଲେ ଯେ, ହଲାଣ୍ଡ-ଖେଳାଳୀମାନଙ୍କର ସ୍ତ୍ରୀମାନେ ପାଖରେ ରହୁ ନଥିବା ଯୋଗୁଁ ସେମାନଙ୍କ ମନ ଦବି ଯାଉଛି । ରୁଡ୍ ଗୁଲିଟ, ମାର୍କୋଭାନ ବାଷ୍ଟେନ ଓ ରିଜକାର୍ଡ଼ ପ୍ରମୁଖ ଫୁଟବଲ ଖେଳାଳୀମାନେ ପାଖରେ ନିଜ ସ୍ତ୍ରୀମାନଙ୍କ ଅନୁପସ୍ଥିତି ଯୋଗୁଁ ଖେଳ ପ୍ରତି ସେମାନଙ୍କ ଝୁଙ୍କ କୁଆଡ଼େ ରହୁନାହିଁ ।

ଇଂଲଣ୍ଡ-ହଲାଣ୍ଡ ମ୍ୟାଚ୍‌ଟି ଅସୀମାଂସିତ ଭାବେ ଶେଷ ହେବା ପରେ ହଲାଣ୍ଡ ଦଳର ଡିରେକ୍ଟର ମିଖେଲ ମର୍ମାହତ ହୋଇ ଉପରୋକ୍ତ ଅଭାବନୀୟ ପରିସ୍ଥିତି ସଂପର୍କରେ ଉଲ୍ଲେଖ କରିଥିଲେ । ଆଗାମୀ ମ୍ୟାଚ୍‌ଗୁଡ଼ିକରେ ସଫଳତା ପାଇବା ପାଇଁ ଖେଳାଳୀମାନଙ୍କ ସ୍ତ୍ରୀ ଏବଂ ଆତ୍ମୀୟ ସ୍ୱଜନଙ୍କୁ ତୁରନ୍ତ ହଲାଣ୍ଡରୁ ଇଟାଲୀକୁ ପଠାଇବା ପାଇଁ ସେ ନିଜ ଦେଶକୁ ଜରୁରୀ ବାର୍ତ୍ତା ପଠାଇଲେ । ସେତେବେଳେ ଏଇ ବ୍ୟବସ୍ଥାକୁ ହଲାଣ୍ଡର "ଲଭ୍-ଟନିକ" ବୋଲି ଲୋକେ ଥଟ୍ଟା ପରିହାସ କରିଥିଲେ ।

ତାହାହେଲେ ହଲାଣ୍ଡ-ସ୍ତ୍ରୀ ପାକିସ୍ଥାନୀ-ସ୍ତ୍ରୀ ଠିକ୍ ଓଲଟା ! ପ୍ରକୃତରେ ଖେଳ ପଡ଼ିଆର ଦର୍ଶକ-ଗ୍ୟାଲେରୀରେ ଖେଳାଳୀମାନଙ୍କ ସ୍ତ୍ରୀ ସଂପର୍କରେ ଯେମିତି ଓଲଟପାଲଟ ମତାମତ ପ୍ରକାଶ ପାଉଛି, ଆମେ ତାର କୌଣସି ଟେର ପାଉ ନାହୁଁ । ତେବେ ଆମେ ଏତିକି ବୁଝୁଯେ, ଖେଳ ପଡ଼ିଆରେ ସ୍ତ୍ରୀ ରହିବା, ନ ରହିବା, ପ୍ରଶ୍ନ ଉଠିବାର ମୁଖ୍ୟ କାରଣ ହେଉଛି—ଖେଳରେ ବିଜୟ କିପରି ହାସଲ କରିହେବ ?

ଖେଳରେ ସଫଳତା ପ୍ରାପ୍ତି ଯଦି ଆମର ମୂଳ ଉଦ୍ଦେଶ୍ୟ, ତାହାହେଲେ ଖେଳ ପଡ଼ିଆରେ ସ୍ତ୍ରୀର ଭୂମିକା ଯେତିକି ଗୁରୁତ୍ୱପୂର୍ଣ୍ଣ, ତା ଅପେକ୍ଷା ଅଧିକ ଉପାଦେୟ ହେଉଛି-ଘର ଭିତରେ ସ୍ତ୍ରୀ ତାର ଖେଳାଳୀ-ସ୍ୱାମୀ ସହିତ କେଉଁ ପ୍ରକାରର ସଂପର୍କ ରକ୍ଷା କରିପାରୁଛି । ଏହି ପ୍ରଶ୍ନ ଉପରେ ସିଦ୍ଧାନ୍ତ ଗ୍ରହଣ କରିବା ପାଇଁ ବିଶ୍ୱବିଖ୍ୟାତ ମୁଷ୍ଟିଯୋଦ୍ଧା ମାଇକ୍ ଟାଇସନ୍‌ଙ୍କ ଜୀବନୀ ପ୍ରତି ଦୃଷ୍ଟି ଦିଆଯାଉ ।

ବିଶ୍ୱ ହେଭିଓ୍ୱେଟ ବକ୍ସିଂ ଚମ୍ପିଆନ୍ ଟାଇସନ୍ ରବିନ ଗିଭେନ୍‌ସ ନାମ୍ନୀ ଜଣେ ଫିଲ୍ମ ଅଭିନେତ୍ରୀଙ୍କୁ ବିବାହ କରିଥିଲେ । ପତ୍ନୀଙ୍କ ସହିତ ତାଙ୍କର ବିଶେଷ ଭଲ ସଂପର୍କ ରହୁ ନଥାଏ । ଥରେ ସେ ଗିଭେନ୍‌ସଙ୍କ ଉପରେ ଘରୋଇ କଳି ଯୋଗୁଁ ଭୀଷଣ ଭାବେ କ୍ରୁଦ୍ଧ ହୋଇ ମର୍ମନ୍ତୁଦ ମାଡ଼ ଦେଇଥିଲେ । ନିଜ ଜୀବନୀ ଉପରେ ଲିଖିତ ଗୋଟିଏ ପୁସ୍ତକରେ ସେ ଏହି ସମ୍ପର୍କରେ ପ୍ରକାଶ କରିଛନ୍ତି, "ମୋର ସର୍ବଶ୍ରେଷ୍ଠ ମୁଥମାଡ଼ ବକ୍‌ସିଂ-ରିଂ ବାହାରେ ହିଁ ବାଜିଥିଲା । ସେଇ ମୁଖଟି ଉଦ୍ଦିଷ୍ଟ ଥିଲା ମୋର ପୂର୍ବତନ ପତ୍ନୀ ଗିଭେନ୍‌ସ ପ୍ରତି । ଦିନେ ଏକ

ଘରୋଇ-ଝଗଡ଼ାରୁ ମୁଁ ଉତ୍‌କ୍ଷିପ୍ତ ହୋଇ ଉଠିଲି ଓ ତାଙ୍କୁ ଜୋରଦାର ମୁଥଟିଏ ମାରିଲି । ମୁଥ ମାଡ଼ଖାଇ ସେ ପଛକୁ ଏକ ପ୍ରକାର ଗଡ଼ିଗଲେ ଓ କୋଠରୀର ଚାରିପଟେ ଘିରିଘିରି ହୋଇ ଘୁରିବାକୁ ଲାଗିଲେ । ତାହା ହିଁ ଥିଲା ମୋର ମହାଶକ୍ତିଶାଳୀ ତଥା ସର୍ବଶ୍ରେଷ୍ଠ ମୁଥ ମାଡ଼ ।''

ଯଦି ମୁଷ୍ଟିଯୋଦ୍ଧା ନିଜ ସ୍ତ୍ରୀକୁ ଏମିତି ମୁଥମାଡ଼ମାରେ, ଫୁଟବଲ ଖେଳାଳୀ ତା ସ୍ତ୍ରୀକୁ ପାଦରେ କିକ୍ ମାରି ରାସ୍ତା ମଝିକୁ ଫୋପାଡ଼ିଦିଏ, କିମ୍ବା ଭଲିବଲ୍ ଖେଳାଳୀ ନିଜ ପତ୍ନୀକୁ ସଟ୍ ଦ୍ୱାରା ଆକାଶକୁ ଉଡ଼ାଇଦିଏ, ତାହାହେଲେ କେହି ଜଣେ ସୁଦ୍ଧା ମହିଳା କୌଣସି ଖେଳାଳୀର ଜୀବନ ସଂଗିନୀ ହେବାକୁ ଭରସି ଆସି ନ ପାରନ୍ତି ।

ପ୍ରକୃତରେ ଟାଇସନ୍‌ଙ୍କ ଏହି କଥିତ ଦୁର୍ବ୍ୟବହାରର ପୃଷ୍ଠଭୂମି ଜାଣିବା ପାଇଁ ତାଙ୍କ ଅତୀତ ଜୀବନର ରୁକ୍ଷ ଓ ହିଂସ୍ର ଅଧ୍ୟାୟଟି ପ୍ରତି ଆଲୋକପାତ କରିବା ପ୍ରାସଙ୍ଗିକ ହୋଇପାରେ । ସେ ଛୋଟ ପିଲାଟିଏ ଥିବାବେଳେ ତାଙ୍କ ମା ଲୋରନାଙ୍କୁ ତାଙ୍କ ବାପା କୌଣସି କାରଣବଶତଃ ଛାଡ଼ି ଚାଲି ଯାଇଥିଲେ । ମା ସହିତ ଟାଇସନ୍ ନ୍ୟୁଅର୍କ ସହରର ଏକ ଅସ୍ୱାସ୍ଥ୍ୟକର ଗଳିରେ ରହୁଥିଲେ । ତାଙ୍କ ଆର୍ଥିକ ଅବସ୍ଥା ଏତେ ଦୂର ଶୋଚନୀୟ ଥିଲା ଯେ, ସେ ଖାଇବାକୁ ଖଣ୍ଡିଏ ରୁଟି ପାଉ ନଥିଲେ ।

କଥିତ ଅଛିଯେ, ପିଲାଦିନେ ପକ୍ଷୀମାନଙ୍କୁ ଟାଇସନ୍ ଭଲ ପାଉଥିଲେ । ସେତେବେଳ ସେ କେତେକ ପାରା ପୋଷିଥିଲେ । ଥରେ ଜଣେ ପଡ଼ୋଶୀ ତାଙ୍କର ଗୋଟିଏ ପୋଷା ପାରାର ବେକ ମୋଡ଼ି ମାରି ଦେବା ଯୋଗୁଁ ସେ ଉତ୍‌କ୍ଷିପ୍ତ ହୋଇ ସେଇ ପଡ଼ୋଶୀଟିର ସେମିତି ବେକ ମୋଡ଼ି ନିର୍ମମ ଭାବେ ହତ୍ୟା କରିଦେଲେ । ଫଳରେ ପିଲାଦିନରୁ ସେ ଜେଲଦଣ୍ଡ ଭୋଗିଥିଲେ । କିନ୍ତୁ ଜେଲରୁ ମୁକ୍ତି ପାଇବାପରେ ତାଙ୍କ ଦୁଷ୍ଟାମି ଆହୁରି ଅଧିକ ବଢ଼ିଗଲା । ସହପାଠୀଙ୍କ ସହିତ ବାରମ୍ବାର କଳିଗୋଳ ଓ ଝଗଡ଼ା କରିବାରୁ ତାଙ୍କୁ ବାଳ ଅପରାଧୀ ଭାବେ ଦଣ୍ଡିତ କରାଯାଇଥିଲା । ତଥାପି ସେ ସୁଧାରିଲେ ନାହିଁ । ଜବରଦସ୍ତି ଚାନ୍ଦା ଆଦାୟ, ଚୋରି ଇତ୍ୟାଦି ବିଭିନ୍ନ ଛୋଟ ବଡ଼ ଅପରାଧମାନଙ୍କରେ ସେ ଲିପ୍ତ ରହିଲେ ।

ଏପରି ଜଣେ ଅସାମାଜିକ ବିପଦ୍‌ଜନକ ବ୍ୟକ୍ତିଠାରୁ ସୁସ୍ଥ ମାନସିକତା ଆଶା କରିବା ବୃଥା । କିନ୍ତୁ ସୌଭାଗ୍ୟ ବଶତଃ ତି' ଆମାଟୋ ନାମକ ଜଣେ ମୁଷ୍ଟିଯୋଦ୍ଧାଙ୍କ ସହିତ ଟାଇସନ୍ ପରିଚିତ ହେଲେ । ସେ ଟାଇସନ୍‌ଙ୍କ ଜୀବନର ଗତିପଥକୁ ବଦଳାଇ ତାଙ୍କୁ ବକ୍ସିଂରେ ତାଲିମ ଦେଲେ । ପ୍ରଥମ ପର୍ଯ୍ୟାୟରେ ଟାଇସନ୍ ପ୍ରାୟ ୧୯ଟି ଲଢ଼େଇରେ ପରାଜିତ ହେଲେ ସୁଦ୍ଧା ନିଜର ନିଷ୍ଠା ଓ ଦୃଢ଼ସଂକଳ୍ପ ଯୋଗୁଁ ସେ ନିଜ ବିଶ୍ୱ ବିଜୟ-ଅଭିଯାନର ଯଥାଶୀଘ୍ର ଶୁଭାରମ୍ଭ କରିଥିଲେ । ନିଜର ବିପଥଗାମୀ ଅମାପ ଶକ୍ତିକୁ ସତ୍‌ମାର୍ଗରେ ପରିଚାଳନା କରିବା ଯୋଗୁଁ ଟାଇସନ୍‌ଙ୍କ ଜୀବନର ଯଥାର୍ଥ ମୂଲ୍ୟାଙ୍କନ କରିବା ସମ୍ଭବ ହୋଇ ପାରିଲା ।

ତେବେ ତାଙ୍କ ଜୀବନ ପ୍ରଥମେ କାହିଁକି ଏପରି ହିଂସ୍ର ଓ ନିର୍ମମ ହୋଇଥିଲା ? ସମ୍ଭବତଃ ଶୈଶବାବସ୍ଥାରେ ସେ ତାଙ୍କ ଭଗ୍ନ ପରିବାରଠାରୁ ଓ ଅସହିଷ୍ଣୁ ସାହି-ବାସିନ୍ଦାଙ୍କ ନିକଟରୁ ଉପଯୁକ୍ତ ବାତ୍ସଲ୍ୟ ସ୍ନେହ ଓ ଆଦର ପାଇ ନଥିଲେ । ଏହି ନୈରାଶ୍ୟବୋଧ ଓ ବ୍ୟର୍ଥତା ତାଙ୍କ ଆଦ୍ୟ ଜୀବନକୁ ଛାରଖାର କରି ଦେଇଥିବା ଅବାସ୍ତବ ହୋଇ ନ ପାରେ । ଏହା ସତ୍ତ୍ୱେ ପରବର୍ତ୍ତୀ ଜୀବନରେ ସେ ଯେ ପ୍ରେମ ଓ ଆନନ୍ଦର ପଥକୁ ଅନୁସନ୍ଧାନ କରୁଥିଲେ, ତାର ସୂଚନା ନିମ୍ନ ଘଟଣାମାନଙ୍କରୁ ପ୍ରତୀତ ହୁଏ ।

କ୍ରମାଗତ ଭାବେ ବହୁବାର ବିଶ୍ୱ ହେଭି ୱେଟ ଚଂପିଆନ୍‌ସିପ୍ ଆଖ୍ୟା ବଜାୟ ରଖିବା ପରେ ଟାଇସନ୍ ଜେମସ୍ ଡଗଲାସ୍‌ଙ୍କ ଦ୍ୱାରା ଟୋକିଓ-ଡୋମ୍‌ରେ ଫେବୃଆରୀ ୧୯୯୦ରେ ପରାଜିତ ହୋଇଥିଲେ । ପତ୍ନୀ ଗିଭେନ୍‌ସଙ୍କ ସହିତ ତାଙ୍କର ମନୋମାଳିନ୍ୟ- ବିଷୟଟିକୁ ଏହି ପରାଜୟ ସହିତ କେହି କେହି ସମାଲୋଚକ ସଂଶ୍ଳିଷ୍ଟ କରୁଛନ୍ତି । ସେ ଯାହା ଯେଉ, ଏଇ ଅପ୍ରତ୍ୟାଶିତ ପରାଜୟ ପରେ ତାଙ୍କ ଭାଗ୍ୟ ପୁଣି ବଦଳିଲା ପୁଣି ଏକ ପାରିବାରିକ କାରଣରୁ ହେନରୀ ଟିଲମ୍ୟାନ ନାମକ ଜଣେ ମୁଷ୍ଟିଯୋଦ୍ଧା ସହିତ ଲଢ଼େଇ କରି ସେ ବିଜୟୀ ହେଲେ । ଏହି ମହତ୍ତ୍ୱପୂର୍ଣ୍ଣ ବିଜୟର ପୃଷ୍ଠଭୂମି ସଂପର୍କରେ କିଛି ସୂଚନା ଦେବା ପ୍ରାସଙ୍ଗିକ ମନେ ହୁଏ ।

ନାଲେ ପିଅର୍ସ ନାମ୍ନୀ ଜଣେ ୨୪ ବର୍ଷ ବୟସ୍କା ଯୁବତୀ ଟାଇସନ୍‌ଙ୍କ ବାନ୍ଧବୀ ଭାବେ ସୁପରିଚିତ । ତାଙ୍କ ସହିତ ସେ ଦୀର୍ଘ ଦିନ ଧରି ଘନିଷ୍ଠ ସଂପର୍କ ରଖି ଆସୁଥିଲେ । ନାଲୋଙ୍କ ଔରସରୁ ଯେତେବେଳେ ପୁତ୍ର ସନ୍ତାନଟିଏ ଜନ୍ମ ହେଲା, ସେଥିରେ ଟାଇସନ୍ ଆନନ୍ଦରେ ବିହ୍ୱଳ ହୋଇ ଯାଇଥିଲେ । ଏମିତି ଏକ ଶୁଭ ଓ ସୁଖଦାୟକ ବେଳାରେ ତାଙ୍କର ଟିଲମ୍ୟାନ୍‌ଙ୍କ ସହିତ ଉପରୋକ୍ତ ମୁଷ୍ଟି-ଲଢ଼େଇ ଅନୁଷ୍ଠିତ ହୋଇଥିଲା । ଟିଲମ୍ୟାନ୍‌ଙ୍କୁ ଧରାଶାୟୀ କରିବା ପରେ ସେ ଘୋଷଣା କରିଥିଲେ,''ପୁଅ ଜନ୍ମ ହେବା ପରେ ମୋ ଭାଗ୍ୟରେ ଏକ ନୂତନ ପରିବର୍ତ୍ତନ ଆସିଲା, ଯାହା ଫଳରେ ନିକଟରେ ମୁଁ ହେନରୀ ଟିଲମ୍ୟାନ୍‌ଙ୍କୁ ପରାସ୍ତ କରି ନିଜକୁ ଧନ୍ୟ ମନେ କଲି... ଟିଲମ୍ୟାନ୍‌ଙ୍କଠାରୁ ପରାସ୍ତ ହୋଇଥିଲେ ମୋ ଭାଗ୍ୟ ଆକାଶରେ ଏକ କଳା ବାଦଲ ଘୋଟି ଆସିଥାନ୍ତା ।''

ପ୍ରକାଶ ଥାଉକି, ଉପରୋକ୍ତ ନବଜାତ ସନ୍ତାନଟି, ଯାହାରି ପାଇଁ ଟାଇସନ୍ ଏତେ ଗର୍ବିତ ସେ ଟାଇସନ୍‌ଙ୍କ ଅବୈଧ ସନ୍ତାନ । ତଥାପି ସେ ଏଇ ସନ୍ତାନ ଓ ବାନ୍ଧବୀ ପିଅର୍ସଙ୍କର ଲାଳନ ପୋଷଣ ଦାୟିତ୍ୱ ପୂର୍ଣ୍ଣଭାବେ ଗ୍ରହଣ କରିବେ ବୋଲି ଘୋଷଣା କରିଛନ୍ତି । ସେମାନଙ୍କ ପାଇଁ ଲସ୍ ଆଞ୍ଜେଲସ୍‌ଠାରେ ଗୋଟିଏ ନୂତନ ଗୃହ ନିର୍ମାଣ କରିବା ବିଷୟ ମଧ୍ୟ ସେ ସୂଚାଇଥିଲେ ।

ଏଥିରୁ ଧାରଣା ଜନ୍ମେ ଯେ, ସୁଖମୟ ଗାର୍ହ୍ୟସ୍ଥ ଜୀବନ ପ୍ରତି ଟାଇସନ୍‌ଙ୍କ ଆକର୍ଷଣ ଓ ଆସକ୍ତି ଅବଶ୍ୟ ରହିଛି । ଏହି ପରିପ୍ରେକ୍ଷୀରେ ପୂର୍ବତନ ପତ୍ନୀ ଗିଭେନ୍‌ସଙ୍କ ସହିତ ତାଙ୍କ

ଛାଡ଼ପତ୍ର ଓ କଥିତ ଦୁର୍ବ୍ୟବହାର ଦୁର୍ଭାଗ୍ୟଜନକ ଘଟଣା କିମ୍ବା ଏକ ଅବାଞ୍ଛିତ ବ୍ୟତିକ୍ରମ ବୋଲି ମନେ ହୁଏ । ପ୍ରକୃତରେ ପୂର୍ବବର୍ଣ୍ଣିତ ରବିନ ଗିଭେନ୍‌ସଙ୍କ ମୁଥ-ମାଡ଼ ଅଭିଯୋଗ ସଂପୂର୍ଣ୍ଣ ଭାବେ ମିଥ୍ୟା ଓ କପୋଳକଳ୍ପିତ ବୋଲି ଟାଇସନ୍‌ପରେ ଏକ ସାମ୍ବାଦିକ ସମ୍ମିଳନୀରେ ଜଣାଇଥିଲେ । ଟାଇସନ୍‌ଙ୍କ ଏହି ଉକ୍ତିର ସତ୍ୟତାକୁ କେହି କେହି ପ୍ରଶ୍ନ କରି ପାରନ୍ତି । ତେବେ ଏହା ସତ ହେଉ ବା ମିଛ ହେଉ; ଉପରୋକ୍ତ ଘଟଣା-ପ୍ରବାହରୁ ଅନୁମିତ ହୁଏ ଯେ, ଉଭୟେ ଟାଇସନ୍ ଓ ତାଙ୍କ ସମାଲୋଚକମାନେ ଆଶା କରନ୍ତି— କୌଣସି ଖେଳାଳୀ ନିଜ ସ୍ତ୍ରୀକୁ ମାଡ଼ପିଟ କିମ୍ବା ଦୁର୍ବ୍ୟବହାର ନ କରୁ ।

ଏଠାରେ ଲକ୍ଷ୍ୟ କରିବା କଥା ଯେ, ଟାଇସନ୍‌ଙ୍କ ବଜ୍ର ଶରୀରରେ ରହିଥିବା ଅମାପ ଶକ୍ତି ବଳରେ ସେ ଯେଉଁ ଅସାଧାରଣ ମୁଷ୍ଟିଯୁଦ୍ଧ-କୌଶଳର ଅଧିକାରୀ ହୋଇ ପାରିଛନ୍ତି, ତା'ରି କାରଣ ତାଙ୍କର ଶୈଶବ ବା କିଶୋର ଅବସ୍ଥାର ହିଂସ୍ର ଓ ପାଶବିକ ବ୍ୟବହାର ନୁହେଁ; କିନ୍ତୁ ତା'ରି ଅନ୍ତରାଳରେ ରହିଛି ତାଙ୍କର ବାତ୍ସଲ୍ୟ ସ୍ନେହ ଓ ପ୍ରଣୟିନୀ ପ୍ରତି ଅଙ୍ଗୀକାର ବଦ୍ଧତା; ଯାହାକି ଅନ୍ତଃସଲିଳା ଫଲ୍‌ଗୁ ପରି ତାଙ୍କ ହୃଦୟରେ ପ୍ରବାହିତ ।

ପ୍ରକାଶ ଥାଉକି, ଭାରତର ସର୍ବଶ୍ରେଷ୍ଠ କ୍ରିକେଟ ଖେଳାଳୀ ସୁନିଲ ଗାଭାସ୍କର ମଧ୍ୟ ଏହି ପ୍ରକାର ବାତ୍ସଲ୍ୟ-ମମତା ଦ୍ୱାରା ଉଚ୍ଚମାନର ଖେଳ ପ୍ରଦର୍ଶନ କରିଥିବା ବିଷୟ ଥରେ ସ୍ୱୀକାର କରିଥିଲେ । ୧୯୮୫ ମସିହାର ଶେଷଭାଗରେ ଅଷ୍ଟ୍ରେଲିଆ-ଗସ୍ତର ଠିକ୍ ପୂର୍ବରୁ ତାଙ୍କ ପୁଅ ରୋହନ ଅନୁରୋଧ କରିଥିଲା, ''ବାପା ! ମୋ ଜନ୍ମ ଦିନରେ ତମେ ମତେ ତ ନିଶ୍ଚିତ କିଛି ଉପହାର ଦେବ । ମୁଁ ଏଥର ତମଠାରୁ ଉପହାର ଭାବେ ଚାହୁଁଛି ଏକ ''ଶତକ'', ''ଶୂନ'' ନୁହେଁ— ମନେ ରଖ,'' ରୋହନର ଏହି ଶିଶୁ ସୁଲଭ ଆତୁରଭରା ମାଗୁଣିଟି ଗାଭାସ୍କରଙ୍କୁ ଯଥେଷ୍ଟ ପ୍ରେରଣା ଓ ଉତ୍ସାହ ଯୋଗାଇଥିଲା ।

ଏହି ସଂପର୍କରେ ସ୍ମୃତିଚାରଣ କରିବା ବେଳେ ଗାଭାସ୍କର ଏକଦା ଉଲ୍ଲେଖ କରିଥିଲେ, ''ଅଷ୍ଟ୍ରେଲିଆ ଗସ୍ତ ପୂର୍ବରୁ ରୋହନ ମତେ ଏହି କଥା କହି ମୋ ଠାରୁ ପ୍ରମିଜ୍ କରାଇ ନେଇଥିଲା । ତେଣୁ ମୁଁ ଭାବିଲି, ଛୁଆଟିକୁ ହତାଶ କାହିଁକି କରିବି । ତାକୁ ତାର ମନ ମୁତାବକ ଉପହାର ଦେବି...... ଏବଂ ପ୍ରତିଶ୍ରୁତି ଅନୁଯାୟୀ ଦେଲି ମଧ୍ୟ । ରୋହନର ଅନୁରୋଧ ସେ ଦିନ ମୋ ମନ ଭିତରେ ଏକ ରେକର୍ଡ଼ ଭଳି ରହି ଯାଇଥିଲା ।'' (୧୯.୧୨.୧୯୮୫; ଇ.ପି.ଏ.; ବମ୍ବେ) ।

ଉପରୋକ୍ତ ବିଶ୍ଳେଷଣମାନଙ୍କରୁ ପ୍ରତୀତ ହୁଏ ଯେ, ପୁରୁଷ-ଖେଳାଳୀମାନେ ଅନେକାଂଶରେ ସେମାନଙ୍କ ସୁଖମୟ ଦାମ୍ପତ୍ୟ ଜୀବନ ଓ ପାରିବାରିକ ସୌହାର୍ଦ୍ଦ୍ୟ ଦ୍ୱାରା ପ୍ରତିଯୋଗିତାରେ ବିଜୟ-ଶ୍ରୀ ମଣ୍ଡିତ ହୋଇଥାନ୍ତି । ତେଣୁ ସେମାନଙ୍କ ଗାର୍ହସ୍ଥ୍ୟ ସଂପର୍କ ସର୍ବଦା ଅନୁକୂଳ ରହୁ ବୋଲି ଆମେ କାମନା କରୁଛୁଁ ।

ବର୍ତ୍ତମାନ ଅନ୍ୟ ଏକ ପ୍ରସଙ୍ଗ । ପ୍ରବନ୍ଧର ପ୍ରାରମ୍ଭରେ ଆମେ ଲକ୍ଷ୍ୟ କରିଛେ ଯେ, ମହିଳା-ଖେଳାଳୀମାନେ ସନ୍ତାନ-ପ୍ରସବ ଦୃଷ୍ଟିରୁ ସ୍ୱାଭାବିକ ଭାବେ ବୈବାହିକ ଜୀବନ ବିତାଇ ପାରନ୍ତି ନାହିଁ । ତେବେ ଏଠାରେ ଗୋଟିଏ କୌତୁହଳପ୍ରଦ ବିଷୟ ଉଲ୍ଲେଖ କରି ହେବ ଯେ, ସେମାନେ ସନ୍ତାନ ପ୍ରସବ କରନ୍ତୁ ବା ନ କରନ୍ତୁ, ସେମାନଙ୍କୁ ଗର୍ଭଧାରଣ କରିବାକୁ ପଡ଼ିବ । ଯଦି ଆବଶ୍ୟକ ହୁଏ ସେମାନେ ଗର୍ଭପାତ କରି ପାରନ୍ତି; କିନ୍ତୁ ନିଶ୍ଚିତ ଭାବେ ସେମାନଙ୍କୁ ଗର୍ଭବତୀ ହେବାକୁ ପଡ଼ିବ । ଏପରିକି ଯେଉଁ ମହିଳା-ଖେଳାଳୀମାନେ ଅବିବାହିତ, ସେମାନେ ମଧ୍ୟ ଗର୍ଭବତୀ ହେବା ପାଇଁ ଅବୈଧ ପନ୍ଥା ଆପଣେଇ ନେବାକୁ ଇଚ୍ଛୁକ ହୋଇ ପାରନ୍ତି । ଏମିତି ଉପାୟ ଅବଲମ୍ବନ ନ କଲେ କୁଆଡ଼େ କ୍ରୀଡ଼ା-ପ୍ରତିଯୋଗିତାରେ ସେମାନେ ପଛରେ ପଡ଼ିଯିବା ସମ୍ଭାବନା ରହିଛି !

''ସଣ୍ଡେ ମିରର୍''ରେ ପ୍ରକାଶିତ ହୋଇଥିବା (୨୫/୫/୧୯୮୮; ଲଣ୍ଡନ; ଏ.ପି) ଏକ ଚାଞ୍ଚଲ୍ୟକର ରିପୋର୍ଟରୁ ଜଣାଯାଏ ଯେ, ଆନ୍ତର୍ଜାତିକ କ୍ରୀଡ଼ା କ୍ଷେତ୍ରରେ ସାଫଲ୍ୟ ପାଇବାକୁ ମହିଳା-ପ୍ରତିଯୋଗୀମାନେ ଅନ୍ତଃସତ୍ତ୍ୱା ହୋଇଥାନ୍ତି, କାରଣ ଗର୍ଭଧାରଣ କରିବାର ମାସେ ଦୁଇ ମାସ ମଧ୍ୟରେ କୁଆଡ଼େ ସେମାନଙ୍କ ମାଂସପେଶୀଗୁଡ଼ିକ ଅଧିକ ଶକ୍ତ ଓ ସକ୍ରିୟ ହେବା ସହିତ ସେମାନଙ୍କ ଶରୀରରେ ନୂତନ ସବଳତା ଜାଗରିତ ହୁଏ । ଏଇ ଧରଣର ସଂଚରିତ ସ୍ୱାସ୍ଥ୍ୟ ଓ ବିକଶିତ ଶକ୍ତି-ସାମର୍ଥ୍ୟକୁ ସମ୍ବଳ କରି ପ୍ରତିଯୋଗିତାରେ ଭାଗ ନେଲେ, ମହିଳା ଖେଳାଳୀମାନେ ବିଜୟିନୀ ହେବା ସମ୍ଭାବନା ବୃଦ୍ଧି ପାଉଛି ।

ଡକ୍ଟର ରିଷ୍ଟୋ ଏରକୋଲା ନାମକ ଫିନ୍‌ଲ୍ୟାଣ୍ଡର ଜଣେ ବିଶେଷଜ୍ଞ ଏହି ପ୍ରକାରର ହୀନ ପନ୍ଥା ପ୍ରତି ସମସ୍ତ ଚିନ୍ତାଶୀଳ ବ୍ୟକ୍ତିଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଯାଇ କହିଛନ୍ତି, ''ସାମାଜିକ ଦୃଷ୍ଟିକୋଣରୁ ମହିଳା-କ୍ରୀଡ଼ାବିତ୍‌ମାନଙ୍କ ଏଭଳି କାର୍ଯ୍ୟ ଅତ୍ୟନ୍ତ ନିନ୍ଦନୀୟ । ପ୍ରତିଯୋଗିତା ସମୟରେ ଖେଳାଳୀମାନଙ୍କ ଉପରେ ଯେପରି ଡ୍ରଗ- ପରୀକ୍ଷା କରାଯାଉଛି, ଏ କ୍ଷେତ୍ରରେ ମଧ୍ୟ ସେପରି ଏକ ପରୀକ୍ଷା କରିବା ଉଚିତ ।'' ମହିଳା-ଖେଳାଳୀମାନଙ୍କ ମଧ୍ୟରେ ତଥାକଥିତ ଗର୍ଭଧାରଣ-ପଦ୍ଧତି ସଂପ୍ରତି କେତେ ଦୂର ଅନୁସୃତ ହେଉଛି, ତାହା ନିର୍ଦ୍ଧାର୍ଯ୍ୟ ଭାବେ ଜାଣି ନ ହେଲେ ସୁଦ୍ଧା ଆମେ ଏଇ ବିଷୟରେ ବେଶ୍ ଚିନ୍ତିତ ।

ତେବେ ଏଥିରୁ ଜଣାଯାଏ ଯେ, ଗର୍ଭବତୀ ହେଲେ ମହିଳାମାନେ ପୁତ୍ରକନ୍ୟା ପାଆନ୍ତୁ ବା ନ ପାଆନ୍ତୁ; ସେମାନେ ଅନ୍ତତଃ ପକ୍ଷେ ସାର୍ଟିଫିକେଟ, କପ୍, ଟ୍ରଫି ଇତ୍ୟାଦି ପୁରସ୍କାର ଓ ପଦବୀମାନ ପ୍ରାପ୍ତ ହେବେ ବୋଲି ଆଶାୟୀ । ଏହା ଏକ ଅଜବ ଧରଣର ପ୍ରସବ ନୁହେଁ କି ?



# ବୁଦ୍ଧିଜୀବୀର ଗୋଷ୍ଠୀବଦ୍ଧତା

ପେନ୍ (Pen) ହେଉଛି କବି (Poets & Play wrights) ପ୍ରାବନ୍ଧିକ (Essayists & Editors) ଓ ଔପନ୍ୟାସିକ (Novelists) ମାନଙ୍କର ଏକ ବିଶ୍ୱବ୍ୟାପୀ ସଂଗଠନ । ଶ୍ରୀମତୀ ଡଡ଼ନସ୍ମିଥ୍ ନାମ୍ନୀ ଜଣେ ବ୍ରିଟିଶ ମହିଳା ୧୯୭୧ ମସହାରେ ଲଣ୍ଡନଠାରେ ବହୁ ଅର୍ଥ ବିନିଯୋଗ କରି ଏହି ଲେଖକ କ୍ଲବର ଶୁଭାରମ୍ଭ କରିଥିଲେ । ଭାରତ ସମେତ ୬୨ଟି ଦେଶରେ ୮୩ଟି ପେନ୍-କେନ୍ଦ୍ର ଅଛି । ଅବଶ୍ୟ ଏଥିରେ ରୁଷ୍, ଚୀନ ଅନ୍ତର୍ଭୁକ୍ତ ନୁହନ୍ତି । ପେନ୍ ସଂଗଠନର ଆବଶ୍ୟକତା ସଂପର୍କରେ ୱାଲଟ ହ୍ୱିଟମ୍ୟାନ ବହୁପୂର୍ବରୁ (୧୮୮୧) ସ୍ୱପ୍ନ ଦେଖିଥିଲେ । "My dearest dream is for an internationality of poems and poets ଡଡ଼ନସ୍ମିଥ ଏହି ସ୍ୱପ୍ନକୁ ସ୍ୱୀକାର କରି ପାରିଥିବା ଯୋଗୁଁ ସମସ୍ତଙ୍କ ଧନ୍ୟବାଦାର୍ହ ।

ପେନ୍ ବା କଲମଧାରୀମାନଙ୍କୁ ବୁଦ୍ଧିଜୀବୀଭାବେ ଧରାଯାଇପାରେ । ବର୍ତ୍ତମାନ ପ୍ରଶ୍ନ ଉଠୁଛି, ଏମାନେ କେତେଦୂର ଗୋଷ୍ଠୀବଦ୍ଧ ହୋଇପାରନ୍ତି ? ଏଥିପାଇଁ ପେନ୍-ସଂଗଠନକୁ ଏକ ଉଦାହରଣ ଭାବେ ନିଆଯାଇପାରେ । ଆମ ଦେଶରେ ୧୯୩୩ ମସିହାରେ ରବୀନ୍ଦ୍ରନାଥ ଠାକୁରଙ୍କ ସଭାପତିତ୍ୱରେ ଏହା ପ୍ରଥମେ ଉଦ୍‌ଘାଟିତ ହୋଇଥିଲା । ଏହାର ପ୍ରତିଷ୍ଠାତ୍ରୀ ଥିଲେ ଥିଓସୋଫିଷ୍ଟ ଆନ୍ଦୋଳନର ନେତ୍ରୀ ଶ୍ରୀମତୀ ସୋଫିଆ ୱାଦିଆ । ପରବର୍ତ୍ତୀ ସମୟରେ ସରୋଜିନୀ ନାଇଡୁ, ଏମ୍. ଭେଙ୍କଟେଶ୍ ଆୟାଙ୍ଗାର ପରି ବିଶିଷ୍ଟ ସାହିତ୍ୟିକମାନେ ପେନ୍‌ର ସଭାପତି ହୋଇଛନ୍ତି । ଭାରତରେ ଏହା ଅର୍ଦ୍ଧଶତାବ୍ଦୀ ପୂର୍ବରୁ ଆରମ୍ଭ ହୋଇଥିଲେ ମଧ୍ୟ ଏହାର ବର୍ତ୍ତମାନ ଯାଏଁ ମେରୁଦଣ୍ଡ ଗଠିତ ହୋଇପାରି ନାହିଁ । ଏହାର କୌଣସି ସ୍ଥାୟୀ ଅଫିସ ଗୃହ ନାହିଁ । ସୁବିଧା ସୁଯୋଗ ଉଣ୍ଡି ବିଭିନ୍ନ ଲେଖକମାନଙ୍କର ବାସଭବନରେ ଏହାର ସାହିତ୍ୟିକ ଆସର ଅନୁଷ୍ଠିତ ହେଉଛି । ଏହି ଉଦ୍ଦେଶ୍ୟରେ ବେଳେବେଳେ ରେଷ୍ଟୋରାଁର ଆଶ୍ରୟ ନିଆଯାଇଛି । ବର୍ତ୍ତମାନ ଏହି ସଂସ୍ଥାର ସଦସ୍ୟ ଚାନ୍ଦା ବାର୍ଷିକ ଶହେ ଟଙ୍କାକୁ ବୃଦ୍ଧି କରାଯାଇଥିବା ଯୋଗୁଁ ବର୍ଦ୍ଧିତ ହାରରେ ଟଙ୍କା ପୈଠ କରିବାକୁ ବହୁ ସଦସ୍ୟ ସକ୍ଷମ ହୋଇ ନ ପାରି ସଭ୍ୟ ପଦରୁ ଇସ୍ତଫା ଦେବାକୁ ବାହାରିଲେଣି । ଭାରତରେ ଏହି ସଂସ୍ଥା ଏମିତି ଆର୍ଥିକ ଦୁର୍ଗତି ତଥା ସାଂଗଠନିକ ଦୁର୍ବଳତାରୁ ରକ୍ଷା ପାଇବା ପାଇଁ ଚେଷ୍ଟିତ ଥିବାବେଳେ ଆନ୍ତର୍ଜାତିକ ସ୍ତରରେ ଏହା ଅନ୍ୟ ପ୍ରକାର ଚ୍ୟାଲେଞ୍ଜର ସମ୍ମୁଖୀନ ହେଉଛି । ଆନ୍ତର୍ଜାତିକ ସ୍ତରରେ ପ୍ରଶ୍ନ ଉଠୁଛି, ଲେଖକମାନେ ରାଜନୈତିକ ନେତାମାନଙ୍କ ଦ୍ୱାରା ପରିପୁଷ୍ଟ ହେବା ଏବଂ ପେନ ସଂସ୍ଥା ସରକାରୀ ପୃଷ୍ଠପୋଷକତା ଗ୍ରହଣ କରିବା ନୈତିକତା ଦୃଷ୍ଟିରୁ କେତେଦୂର ଯୁକ୍ତିସଂଗତ ?

୧୯୮୦ ସାଲରୁ ପେନ୍ କଂଗ୍ରେସରେ ସ୍ୱାଗତ ଭାଷଣ ଦେବାପାଇଁ ବହୁ ଅପ-ସାହିତ୍ୟିକ; କିନ୍ତୁ ପଦସ୍ଥ ବ୍ୟକ୍ତି ନିମନ୍ତ୍ରିତ ହୋଇଛନ୍ତି । ବିଭିନ୍ନ ସମୟରେ ବ୍ରାଜିଲ ଓ ଭେନେଜୁଆଲାର ରାଷ୍ଟ୍ରପତି, ଫ୍ରାନ୍ସର ସାଂସ୍କୃତିକ ମନ୍ତ୍ରୀ ଉଦ୍‌ଘାଟନୀ ଭାଷଣ ଦେଇଛନ୍ତି । ୧୯୮୬ ସାଲର ଜାନୁଆରୀ ମାସରେ ନିଉୟର୍କସ୍ଥିତ ପବ୍ଲିକ ଲାଇବ୍ରେରୀର ପ୍ରଧାନ ଶାଖା ଗୃହରେ ଆମେରିକାର ପରରାଷ୍ଟ୍ର ସଚିବ ଜର୍ଜ ସୁଲଜ ପ୍ରାରମ୍ଭିକ ଭାଷଣ ଦେବାକୁ ଯୋଗ ଦେଇଥିଲେ । ସୁଲଜଙ୍କ ଏହି ଯୋଗଦାନ ବିଷୟରେ ଲେଖକଗୋଷ୍ଠୀ ମଧ୍ୟରେ ତୁମୁଳ ଝଡ଼ର ସୂତ୍ରପାତ ହେଲା । କେତେକ ସଦସ୍ୟ ପ୍ରାରମ୍ଭିକ ସ୍ତରରୁ ଅଭିଯୋଗ କରିଥିଲେ ଯେ, ସୁଲଜ ଯୋଗ ଦେଇଥିବାରୁ କଡ଼ା ନିରାପତ୍ତା ବ୍ୟବସ୍ଥା ଗ୍ରହଣ କରିବାକୁ ପଡ଼ିଥିଲା । ଯାହାଫଳରେ ଦୂରଦୂରାନ୍ତରରୁ ଆସିଥିବା ସଦସ୍ୟମାନେ ସଭାଗୃହରେ ପ୍ରବେଶ କରିବା ପ୍ରାୟ ଅସମ୍ଭବ ହୋଇ ପଡ଼ିଲା । ଏଥିପାଇଁ ପେନ୍-କ୍ଲବର ସଭାପତି, ବିଶିଷ୍ଟ ଆମେରେକୀୟ ଔପନ୍ୟାସିକ ନର୍ମାନ ମେଲରଙ୍କୁ ତୀବ୍ର ସମାଲୋଚନାର ଶୀକାର ହେବାକୁ ପଡ଼ିଥିଲା । ପେନ୍‌ର ବୋର୍ଡ଼ 'ଅଫ୍ ଡାଇରେକ୍‌ଟରସ୍' ସୁଲଜଙ୍କୁ ନିମନ୍ତ୍ରଣ ବିଷୟରେ ସଂପୂର୍ଣ୍ଣ ଅଜ୍ଞ ବୋଲି ଜଣାଇବା ପରେ ପରିସ୍ଥିତି ଆହୁରି ଜଟିଳ ହୋଇ ପଡ଼ିଥିଲା । ପ୍ରକାଶ ଥାଉକି, The naked and the Dead ର ସୁପରିଚିତ ଲେଖକ ନର୍ମନ ମେଲର ଜଣେ ସ୍ୱାଧୀନଚେତା ଲେଖକ ଓ ସେ ବହୁ କ୍ଷେତ୍ରରେ ଏଷ୍ଟାବ୍ଲିଶମେଣ୍ଟର ବିରୋଧୀ । ତଥାପି ସେ ସୁଲଜଙ୍କୁ ନିମନ୍ତ୍ରଣ କରିଥିଲେ ଏବଂ ଦର୍ଶାଇଥିଲେ ଯେ ଉକ୍ତ ଅଧିବେଶନର ବିଷୟବସ୍ତୁ ଲେଖକଙ୍କର କଳ୍ପନା ଓ ରାଷ୍ଟ୍ରର କଳ୍ପନା ହୋଇଥିବା ଯୋଗୁଁ ସୁଲଜ ଏଥିପାଇଁ ଜଣେ ଯୋଗ୍ୟ ବ୍ୟକ୍ତି । ପୁଣି ସୁଲଜ ମଧ୍ୟ ଦୁଇଖଣ୍ଡ ବହି ଲେଖିଥିବାରୁ ଜଣେ ଲେଖକ ଭାବେ ପରିଚିତ ହେବା ଯୁକ୍ତିସଂଗତ । କିନ୍ତୁ ଏହି ମତକୁ ତୀବ୍ର ବିରୋଧ କରି ପ୍ରତିଷ୍ଠିତ ଜର୍ମାନୀ ଔପନ୍ୟାସିକ ଗୁଂଥର ଗ୍ରାସ ଅଗ୍ନିବର୍ଷୀ ଭାଷଣ ଦେଇଥିଲେ ।

ପେନ୍ କଂଗ୍ରେସର ଉପରୋକ୍ତ ବିଷୟ ବିବାଦୀୟ ୪୮ତମ ଅଧିବେଶନରେ ନାଦାଇନ୍ ଗୋର୍ଦ୍ଦିମର (ଦକ୍ଷିଣ ଆଫ୍ରିକା), ଆମୋସଜନ୍ (ଇସ୍ରାଏଲ), ସଲବେଲୋ, କ୍ଲୋଦୋସିମୋଙ୍କ ସମେତ ଆଠଶହ ମାନ୍ୟଗଣ୍ୟ ପ୍ରତିନିଧି ଯୋଗ ଦେଇଥିଲେ । ସେମାନେ ସୁଲଜଙ୍କ ପ୍ରାରମ୍ଭିକ ଭାଷଣକୁ ଭିତ୍ତି କରି ବିଭାଜିତ ହୋଇଥିଲେ । ବର୍ତ୍ତମାନ ପ୍ରଶ୍ନ ଉଠୁଛି : ପେନ୍ ସଂସ୍ଥାର ଉଦ୍ଦେଶ୍ୟ କଣ ? ଏହି ସଂସ୍ଥାର ପ୍ରଧାନ ଲକ୍ଷ୍ୟ ହେଲା ସେନ୍‌ସରସିପର ବିରୋଧ କରିବା, ଆନ୍ତର୍ଜାତିକ ସାହିତ୍ୟ ଆଲୋଚନା କରିବା ଓ ମୌଳିକ ସାହିତ୍ୟ ସୃଷ୍ଟି କରିଥିବା ଯୋଗୁଁ ଶାସକବର୍ଗର ଚକ୍ଷୁଶୂଳ ହୋଇ ବନ୍ଦୀଥିବା ଲେଖକମାନଙ୍କୁ ମୁକ୍ତ କରାଇବା । ଏହି ପରିପ୍ରେକ୍ଷୀରେ ସୁଲଜଙ୍କ ଅବଦାନ ସ୍ମରଣୀୟ । ଜାପାନ, ବ୍ରାଜିଲ, ମେକ୍‌ସିକୋ ଓ ପାଲେଷ୍ଟାଇନର ଚାରିଜଣ ଭିନ୍ନମତାବଲମ୍ବୀ ଲେଖକଙ୍କ ଉପରେ ଯୁକ୍ତରାଷ୍ଟ୍ରରେ ପ୍ରବେଶ କରିବାକୁ ନିଷେଧାଜ୍ଞା ପୂର୍ବରୁ ଶାସନ କର୍ତ୍ତୃପକ୍ଷ ଜାରି କରିଥିଲେ । କିନ୍ତୁ ପେନର

ଆୟୋଜକମାନେ ନିଉୟର୍କରେ ଅନୁଷ୍ଠିତ ହେବାକୁ ଥିବା ଉପରୋକ୍ତ ସମ୍ମିଳନୀରେ ଯୋଗ ଦେବା ପାଇଁ ସେମାନଙ୍କୁ ଆମନ୍ତ୍ରଣ କରିଥିଲେ । ଫଳରେ ପେନ ସଂସ୍ଥା ଓ ଆମେରିକାର ଶାସକବର୍ଗଙ୍କ ମଧ୍ୟରେ ବିବାଦ ଦେଖା ଦେଇଥିଲା । ଏହି ପୃଷ୍ଠଭୂମିରେ ସ୍ୱରାଷ୍ଟ୍ରମନ୍ତ୍ରୀ ଭାବେ ସୁଲଜ୍ ସରକାରୀ କଳ ଉପରେ ଫଳପ୍ରଦ ଚାପ ପକାଇ ଉକ୍ତ ନିଷିଦ୍ଧ ଚାରିଜଣ ଲେଖକଙ୍କ ଉପରୁ ନିଷେଧାଦେଶ ଉଠାଇ ଦେଇଥିଲେ । ତେଣୁ ପେନ୍‌ର ଉଦ୍ଦେଶ୍ୟ ଚରିତାର୍ଥ କରିବାରେ ସୁଲଜଙ୍କ ଅବଦାନକୁ ଅସ୍ୱୀକାର କରାଯାଇ ନ ପାରେ । ଏହି ପରିପ୍ରେକ୍ଷୀରେ ସେ ସାହିତ୍ୟିକ ଭାବେ ହେଉ କିମ୍ବା ସାହିତ୍ୟ ପ୍ରତି ସହାନୁଭୂତିଶୀଳ ରାଜନୀତିଜ୍ଞ ଭାବେ ହେଉ- ପେନ୍‌ର ଅଧିବେଶନ ଉଦ୍‌ଘାଟନ କରିବା ପାଇଁ ନିଶ୍ଚିତ ଭାବେ ଯୋଗ୍ୟ ।

ପେନ୍ ବିଷୟରେ ଏହି ଦୀର୍ଘ ଉପକ୍ରମଣିକା ଲେଖିବାର ଉଦ୍ଦେଶ୍ୟ ହେଉଛି ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଥିବା ଅସଂହତି ପ୍ରତି ଦୃଷ୍ଟି ଆକର୍ଷଣ କରିବା । ପେନ୍‌ର ସଦସ୍ୟମାନେ ଅବଶ୍ୟ ବୁଦ୍ଧିଜୀବୀ ପର୍ଯ୍ୟାୟଭୁକ୍ତ । କିନ୍ତୁ ରାଜନୈତିକ ପୃଷ୍ଠଭୂମି ସତ୍ତ୍ୱେ ସୁଲଜଙ୍କ ବୁଦ୍ଧିଜୀବୀ ପାଇଁ ପୃଷ୍ଠପୋଷକତା ରହିଛି । ତେଣୁ ପେନ୍ ସଂଗଠନ ତାଙ୍କ ପ୍ରତି କଟୁ ଆଚରଣ ପ୍ରଦର୍ଶନ କରିବା ଯଥାର୍ଥ ହୋଇ ନ ପାରେ ।

ବୁଦ୍ଧିଜୀବୀମାନେ ଅନ୍ୟର ସାହାଯ୍ୟ ଲୋଡ଼ିବା ଦୂରେଥାଉ, ସେମାନେ ନିଜ ନିଜ ମଧ୍ୟରେ ସୁଦ୍ଧା ହାତ ମିଳାଇ ପାରୁନାହାନ୍ତି । ଏପରିକି ନିଜର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ମଧ୍ୟରେ ଯୁକ୍ତିଯୁକ୍ତ ସଂଯୋଗ ସ୍ଥାପନ କରିବାକୁ ଅସମର୍ଥ ହୋଇ ନିଷ୍କ୍ରିୟ କିମ୍ବା ବିବାଦୀୟ ହୋଇଯାନ୍ତି ଓ ସର୍ବସାଧାରଣଙ୍କ ବିଶ୍ୱାସ ହରାଇ ବସନ୍ତି । କିନ୍ତୁ ପ୍ରଶ୍ନ ଉଠୁଛି ଯେ, ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ସଂହତିର ଅଭାବ ଏବଂ ପ୍ରଚଳିତ ସମାଜର ବିରୋଧ ପଛରେ କେଉଁ କାରଣ ଥାଇପାରେ ?

ଏହି ସଂପର୍କରେ ସ୍ମରଣ କରାଯାଇପାରେ ଯେ ଜର୍ଜ ବର୍ଣ୍ଣାଡ଼୍ ଶ'ଙ୍କୁ ଯେତେବେଳେ ସାହିତ୍ୟରେ ନୋବେଲ ପୁରସ୍କାର ଦିଆଗଲା, ସେ ତାହା ପ୍ରତ୍ୟାଖ୍ୟାନ କରିଥିଲେ । ଏହାର କାରଣ ଭାବେ ସେ ଦର୍ଶାଇଥିଲେ ଯେ, ସେ ବହୁ ପୂର୍ବରୁ ଏହି ପୁରସ୍କାର ପାଇବା କଥା— ଯେତେବେଳେ କି ସେ ନିଜର ବହି ପ୍ରକାଶ କରିବା ପାଇଁ ଏବଂ ପ୍ରକାଶିତ ହେବା ପରେ ବିକ୍ରୀ କରିବା ପାଇଁ ବିଭିନ୍ନ ପ୍ରକାର କୌଶଳ ଓ ଅପକୌଶଳରେ ଧନ୍ଦି ହେଉଥିଲେ । ସେମିତି ଟି. ଏସ୍. ଇଲିଏଟ୍‌ଙ୍କୁ ୱେଷ୍ଟଲ୍ୟାଣ୍ଡର ରଚନା ପାଇଁ ନୋବେଲ ପୁରସ୍କାର ପାଇବାକୁ ବହୁବର୍ଷ ବିତି ଯାଇଥିଲା । କେବଳ ସାହିତ୍ୟ କ୍ଷେତ୍ରରେ ନୁହେଁ, ବିଜ୍ଞାନ ବିଭାଗରେ ମଧ୍ୟ ଏମିତି ପ୍ରତିଭା ସ୍ୱୀକୃତିରେ ଅବହେଳା ଘଟେ । ଆଇନ୍‌ଷ୍ଟାଇନ ଦୀର୍ଘ କୋଡ଼ିଏ ବର୍ଷ ପରେ ଫଟୋଇଲେକ୍‌ଟ୍ରିକ୍ ଏଫ୍‌କ୍ଟପାଇଁ ଏହି ପୁରସ୍କାର ପାଇଥିଲେ । ନୋବେଲ ପୁରସ୍କାର ବିଜେତା ଜ୍ୟୋତିର୍ବିଜ୍ଞାନୀ ଡକ୍ଟର ଚନ୍ଦ୍ରଶେଖରଙ୍କୁ ଦୀର୍ଘ ସମୟ ଧରି ଅପେକ୍ଷା କରିବାକୁ ପଡ଼ିଲା । ଏହି

ମର୍ମରେ ମରଣୋତ୍ତର ପୁରସ୍କାର ବିଜେତା ମାନଙ୍କର ଦୃଷ୍ଟାନ୍ତ ମଧ୍ୟ ମହତ୍ତ୍ୱପୂର୍ଣ୍ଣ ହୋଇପାରେ । ଏହି ବିଳମ୍ବ ପାଇଁ ବିଭିନ୍ନ କାରଣ ଥାଇପାରେ । ସେଥିରୁ ଗୋଟିଏ ମୁଖ୍ୟ କାରଣ ହେଉଛି ଯେ ନୋବେଲ କମିଟିରେ ଯେଉଁ ବିଜ୍ଞ ବିଚାରକ ମଣ୍ଡଳୀ ଥାଆନ୍ତି, ସେମାନଙ୍କ ମଧ୍ୟରେ ମତାମତର ବିଭିନ୍ନତା ।

ବୁଦ୍ଧିଜୀବୀମାନଙ୍କୁ ନେଇ ଗଠିତ ବିଚାରକ ମଣ୍ଡଳୀର କ୍ଷୁଦ୍ର ପରିସର ମଧ୍ୟରେ ଏହି ଧରଣର ମତପାର୍ଥକ୍ୟ ତଥା ଦୃଷ୍ଟିଭଙ୍ଗୀର ବିଭିନ୍ନତା ଗୋଟିଏ ଦୃଷ୍ଟାନ୍ତ ମାତ୍ର । ଯେତେବେଳେ ଏହି ପରିସରକୁ ବୃଦ୍ଧିକରି ଆମେ ବିଶ୍ୱର ସମସ୍ତ ବୁଦ୍ଧିଜୀବୀଙ୍କୁ ଗୋଟିଏ ଗୋଷ୍ଠୀ ବୋଲି ପରିକଳ୍ପନା କରିବା, ସେତେବେଳେ ସେମାନଙ୍କ ମଧ୍ୟରେ ସଂହତିର ଅଭାବ ଯୋଗୁଁ ଏହି ଗୋଷ୍ଠୀର କାର୍ଯ୍ୟକାରିତା ସଂପର୍କରେ ସନ୍ଦେହ ସୃଷ୍ଟିହୁଏ । ବିଶେଷତଃ ଏହି ସମସ୍ୟା ଅଧିକ ଉତ୍କଟତର ଜଣାଯାଏ କାରଣ ଏହା ହେଉଛି ବିଶେଷଜ୍ଞର ଯୁଗ । ଜଣେ ବିଶେଷଜ୍ଞ ଅନ୍ୟ ବିଭାଗର ଜଣେ ବିଶେଷଜ୍ଞର କ୍ଷେତ୍ର ବୁଝିବା ଆଦୌ ସମ୍ଭବ ହେଉନାହିଁ । ପୁଣି ସମୟର ଉତ୍କଟ ଅଭାବ ଯୋଗୁଁ ସେମାନଙ୍କ ମଧ୍ୟରେ ଯୋଗାଯୋଗ ରହେ ନାହିଁ । ଏମିତି ଭିନ୍ନ ଭିନ୍ନ କାରଣରୁ ସେମାନେ ନିଜ ନିଜର ସ୍ୱତନ୍ତ୍ର ଓ ସଂକୀର୍ଣ୍ଣ ମାନସିକ ପୃଥିବୀରେ ବସବାସ କରିଥାନ୍ତି, ଯାହାକି ଏକ ପ୍ରକାର Ivory Tower ।

ଏହି ମର୍ମରେ ଗୋଟିଏ ଗ୍ରୀକ୍ କିମ୍ବଦନ୍ତୀ ମନେ ପଡ଼େ । ଥରେ ବେବିଲୋନର ଅଧିବାସୀମାନେ ସ୍ଥିର କଲେ ଯେ ସେମାନେ ସ୍ୱର୍ଗକୁ ଗୋଟିଏ ନିଶୁଣୀ ତିଆରି କରିବେ । ଏହା ଦ୍ୱାରା ଯଦି କୌଣସି ବ୍ୟକ୍ତିର ଶରୀରରେ ବଳ ଅଛି ସେ ସିଡ଼ି ଚଢ଼ି ଚଢ଼ି ସ୍ୱ ଦେହରେ ସ୍ୱର୍ଗକୁ ଯାଇ ପାରିବ । ଏହି ପ୍ରସ୍ତାବିତ ସିଡ଼ିକୁ ସେମାନେ Babel Tower ବୋଲି ନାମିତ କଲେ । ଏଥିପାଇଁ କାମ ଆରମ୍ଭ ହେଲା । କାମ ଅଧାଅଧି ହୋଇଥିବା ସମୟରେ ଦେବଗଣ "ସାଧାରଣଲୋକେ ସ୍ୱର୍ଗରେ ପହଞ୍ଚିଯିବେ—" ଏହା ସେମାନେ ସହି ପାରିଲେ ନାହିଁ । ତେଣୁ ସେମାନେ ଏମିତି ଏକ କପଟ ଭିଆଇଲେ ଯେ ତାପରଦିନ ସକାଳୁ ସେହି ଟାୱାରରେ କାମ କରୁଥିବା ଲୋକେ ଯେତେବେଳେ ଶେଯରୁ ଉଠିଲେ ସେମାନଙ୍କ ନିଜ ଭାଷାରେ କଥା ହେବା ଭୁଲିଗଲେ । ପ୍ରତ୍ୟେକେ ଗୋଟିଏ ଗୋଟିଏ ଭାଷା ବାହାରକରି କହିବାରେ ଲାଗିଲେ । ସେମାନଙ୍କ ଭାଷାରେ ଏମିତି ବିଭିନ୍ନତା ଯୋଗୁଁ ଇଟା, ଲୁହାଛଡ଼ ଇତ୍ୟାଦି କେଉଁଠି ବସାଇବେ-ଆଲୋଚନା କରି ପାରିଲେ ନାହିଁ । କାନ ନ ଥିବା ପରି ପରସ୍ପର ମଧ୍ୟରେ ନିଜ ନିଜର ବକ୍ତବ୍ୟ କହି ଚାଲିଲେ । ସମସ୍ତଙ୍କର ଲକ୍ଷ୍ୟ ଏକ- ସ୍ୱର୍ଗକୁ ସିଡ଼ି ତିଆରି କରିବା, କିନ୍ତୁ ଯୋଗାଯୋଗର ଅଭାବ ଯୋଗୁଁ ସ୍ୱର୍ଗକୁ ସିଡ଼ି ତିଆରି ବିଷୟ କଥା କଥାରେ ହିଁ ରହିଗଲା—ଆଜିକାଲି ବୁଦ୍ଧିଜୀବୀମାନଙ୍କର ଅବସ୍ଥା ଏହି ଧରଣର । ସଂହତି ଅଭାବରୁ ଏମାନଙ୍କର ଏକ ଗୋଷ୍ଠୀ ହିସାବରେ ବିକାଶ ସମ୍ଭବ ହୋଇପାରୁନାହିଁ ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ବିଚାର ଧାରା ନେଇ ସଂହତି ଓ ମତୈକ୍ୟ କେତେଦୂର ସମ୍ଭବପର ? ଏହି ସଂପର୍କରେ ରସେଲଙ୍କ ମତ ପ୍ରଣିଧାନ ଯୋଗ୍ୟ । One fo the painful things of our time is that those who feel certainty are stupid and those wish any imagination and understanding are filled with doubt and indecision (P.10-11 New hopes for a changing world) ଆଜିକାଲି ବୁଦ୍ଧିଜୀବୀମାନଙ୍କର ମନ ସନ୍ଦେହାଚ୍ଛନ୍ନ । କୌଣସି ମତ କିମ୍ବା ତଥ୍ୟକୁ ନିଜେ ନିଧାର୍ଯ୍ୟ ବୋଲି ଗ୍ରହଣ କରିପାରୁ ନାହାନ୍ତି । ସେମାନେ ପ୍ରତ୍ୟେକ ବିଷୟର ପରିବର୍ତ୍ତନଶୀଳତା ପ୍ରତି ସଚେତନ । ଏପରିକି ପଦାର୍ଥ ବିଦ୍ୟାପରି ଏକ ମାପ ଓ ହିସାବର ନିର୍ଭୁଲ ବିଜ୍ଞାନରେ ମଧ୍ୟ ହାଇଜେନ୍‌ବର୍ଗଙ୍କ Uncertainty principle ଆଜିକାଲି ମୁଖ୍ୟ ଭୂମିକା ଗ୍ରହଣ କରିଛି ।

ଏହାର ପ୍ରଭାବ ସୁଦୂରପ୍ରସାରୀ । Transcendentalismର ପ୍ରବର୍ତ୍ତକ ଇମାନୁଏଲ-କାଣ୍ଟଙ୍କ ତଥ୍ୟକୁ ଏହା ଏକ ବୈଜ୍ଞାନିକ ଭିତ୍ତି ଯୋଗାଇଲା । ଆଧୁନିକ ବୁଦ୍ଧିଜୀବୀର ଲକ୍ଷ୍ୟ ଅନିଶ୍ଚିତ । ତାର ଆତ୍ମବିଶ୍ୱାସ ସନ୍ଦେହାପନ୍ନ । ତେଣୁ ଏକ ଅନିଶ୍ଚିତ ଲକ୍ଷ୍ୟ ଓ ଦୁର୍ବଳ ଆତ୍ମବିଶ୍ୱାସରେ ସେ ସମାଜକୁ କେତେଦୂର ଆଗେଇ ନେବ ତାହା ବିଚାର୍ଯ୍ୟ । ଏଇ ବୁଦ୍ଧିଜୀବୀମାନେ ପରସ୍ପର ମଧ୍ୟରେ ବାକ୍‌ଶକ୍ତି ବିହୀନଙ୍କ ପରି ଇଙ୍ଗିତ ସାହାଯ୍ୟରେ ମତ ବିନିମୟ କରିବାରେ ବର୍ତ୍ତମାନ ଚେଷ୍ଟିତ । ଏହାର ଫଳାଫଳ କଣ ହୋଇପାରେ– ତାହା ନିମ୍ନ କାହାଣୀରୁ ହୁଏତ ଅନୁମାନ କରିହେବ ।

କାହାଣୀଟି ଜେନ୍ ବୁଦ୍ଧବାଦରୁ ଉଦ୍ଧୃତ । ଜେନ୍ ବୁଦ୍ଧଧର୍ମୀମାନଙ୍କର ପ୍ରଥା ଅନୁସାରେ, ଯଦି କେହି ସେମାନଙ୍କ ମନ୍ଦିରରେ ଆଶ୍ରୟ ନେବାକୁ ଚାହେଁ ତା' ହେଲେ ସେ ସେହି ମଠରେ ରହୁଥିବା ପୁରୋହିତ ବା ରକ୍ଷକକୁ ଯୁକ୍ତିଦ୍ୱାରା ପ୍ରଥମେ ପରାସ୍ତ କରିବାକୁ ପଡ଼ିବ । ତେଣୁ ଆଶ୍ରୟପ୍ରାର୍ଥୀମାନଙ୍କୁ ତୀକ୍ଷ୍ଣ ବୁଦ୍ଧି ସଂପନ୍ନ ହେବାକୁ ପଡ଼ିବ ।

ଏକଦା ମାତ୍ର ଗୋଟିଏ କାନ ଥିବା ଜଣେ ବ୍ୟକ୍ତି କୌଣସି ଏକ ମଠରେ ଆଶ୍ରୟ ନେବାକୁ ଚାହିଁଲା । ସେ ସେଠାରେ ପହଞ୍ଚି ପ୍ରଥମେ ମଠରକ୍ଷକକୁ ଗୋଟିଏ ଆଙ୍ଗୁଠି ଦେଖାଇଲା, ତାହାର ଅର୍ଥ ହେଉଛି–ବୁଦ୍ଧି ହିଁ ଏକମାତ୍ର ଭରସା । ଏହାଦେଖି ମଠରକ୍ଷକ ଦୁଇଟି ଆଙ୍ଗୁଠି ଦେଖାଇଲେ । ଆଶ୍ରୟପ୍ରାର୍ଥୀ ବୁଝିନେଲା ଯେ ଏହି ଦୁଇଟି ଆଙ୍ଗୁଠିର ଅର୍ଥ ହେଉଛି ବୁଦ୍ଧଦେବ ଓ ବୁଦ୍ଧଧର୍ମ ଆମର ଭରସା । ତେଣୁ ସେ ସେତେବେଳେ ତିନୋଟି ଆଙ୍ଗୁଠି ଦେଖାଇଲା । ଯାହାର ଅର୍ଥ ହେଉଛି ବୁଦ୍ଧ, ଧର୍ମ ଓ ସଂଘ ଆମର ସର୍ବ ଭରସା । ମଠ ରକ୍ଷକ ଏଥିରେ ତୁନି ହୋଇ ହାର ମାନିଲେ ନାହିଁ । ସେ ଯେତେବେଳେ ହାତ ଜୋର୍‌ରେ ମୁଠାକରି ଉଞ୍ଚାଇଲେ ସେତେବେଳେ ଆଶ୍ରୟପ୍ରାର୍ଥୀ ଆଉ କୌଣସି ଉତ୍ତର ନ ଦେଇ ପାରି

ହାର ମାନିଲା ଓ ସେହି ଅଧ ରାତିରେ ଶୀତରେ ଯାଇ ଥରି ଥରି, କିଛି ଦୂରରେ ରହୁଥିବା ତାର ବନ୍ଧୁ ଘରେ ଯାଇ ବିତାଇଲା ।

ତା ପରଦିନ ସକାଳୁ ସେହି ଆଶ୍ରୟପ୍ରାର୍ଥୀ ଜଣକ ମଠ ରକ୍ଷକଙ୍କ ନିକଟରେ ପହଞ୍ଚିଲା ଓ ଗତ ରାତିର ଠାରମାନଙ୍କର ଅର୍ଥ ନିଜେ ଯେମିତି ବୁଝିଥିଲା, ସେହି ପ୍ରକାରେ ବ୍ୟାଖ୍ୟା କଲା । ଏହା ଜାଣି ମଠରକ୍ଷକ ହସି ହସି ବେଦମ୍ ।

ଆଶ୍ରୟପ୍ରାର୍ଥୀ କେମିତି ଏହି ସବୁ ନୂତନ ଅର୍ଥ ବାହାର କଲା, ସେ ଭାବି ପାରିଲେ ନାହିଁ । ତାପରେ ସେ ଠାରଗୁଡ଼ିକ ନିଜେ ଯେମିତି ବୁଝିଛନ୍ତି ବର୍ଣ୍ଣନା କଲେ । ସେ ଆଶୟପ୍ରାର୍ଥୀଙ୍କୁ ବୁଝାଇଲେ, ‘‘ତୁମେ ଯେତେବେଳେ ଗୋଟିଏ ଆଙ୍ଗୁଠି ଦେଖାଇଲ ମୁଁ ଭାବିଲି, ତମେ ତମର ଗୋଟିଏ କାନ ନଥିବା ବିଷୟ କହୁଛ । ତାପରେ ମୁଁ ଦୁଇଟି ଆଙ୍ଗୁଠି ଦେଖାଇଲି, ଯାହାର ଅର୍ଥ ହେଉଛି, ମୋର ଦୁଇଟି କାନ ନଥିବା ବିଷୟ ମୁଁ ସୂଚନା ଦେଲି । କିନ୍ତୁ ଯେତେବେଳେ ତମେ ତିନୋଟି ଆଙ୍ଗୁଠି ଦେଖାଇଲ, ମୁଁ ଭାବିଲି ଯେ ତମେ ମୋର ଦୁଇଟି ଓ ତମର ଗୋଟିଏ, ଏମିତି ତିନୋଟି କାନ ନଥିବା ବିଷୟ ସୂଚାଉଛ । ଏହା ମୋ ମନରେ କ୍ରୋଧ ଜାତ କଲା । ମୁଁ ଭାବିଲି ଯେ ତମେ ନିହାତି ଅଭଦ୍ର । ମୋର ଦୁଇଟି କାନ ନଥିବା ବିଷୟ ଜାଣି ତମେ ଦୁଃଖରେ ଅନ୍ତତଃ ତୁନି ପଡ଼ିବା କଥା– ଓଲଟି ତମେ ତିନୋଟି ଆଙ୍ଗୁଠି ଦେଖାଇ ମୋତେ ବିଦ୍ରୁପ କଲ । ଏଣୁ ଭୀଷଣ ରାଗିଗଲି ଏବଂ ତମକୁ ମାରିବା ପାଇଁ ହାତମୁଠାକରି ଉଞ୍ଚାଇଥିଲି । ଏହିଠାରମାନ କୌଣସି ଦାର୍ଶନିକ ତଥ୍ୟ ସଂପର୍କରେ କଦାପି ନୁହେଁ ।’’

ତେଣୁ ଠାରଦ୍ୱାରା ଯେ ବିଚିତ୍ର ଅର୍ଥ ସୃଷ୍ଟି ହୋଇପାରେ– ତାହା ଏଠାରେ ଲକ୍ଷ୍ୟ କରିବା କଥା । ଯଦି ଆଧୁନିକ ଯୁଗର କାର୍ଯ୍ୟତଃବାକ୍‌ଶକ୍ତିରହିତ ଏହି ବୁଦ୍ଧିଜୀବବୀମାନେ ସମାଜକୁ ଆଗେଇ ନେବା ପାଇଁ ଗୋଷ୍ଠୀବଦ୍ଧ ଆଲୋଚନା ବେଳେ ଏମିତି ହାତ ମୁଠାକରି ଧାସ୍ତାଧସ୍ତି ହେବେ; ତାହାଲେ ଆମେ ଚକିତ ହେବାର କୌଣସି କାରଣ ନାହିଁ ।

ମଣିଷର ଶାରୀରିକ ବିକାଶ ପ୍ରାକ୍‌ଐତିହାସିକ କାଳରୁ ଆରମ୍ଭ ହେଲାଣି । ଏହି ଦୀର୍ଘଦିନ ବ୍ୟାପୀ ବିବର୍ତ୍ତନ ଯୋଗୁଁ ତାର ଶାରୀରିକ ଉନ୍ନତିମାନଙ୍କ ପଛରେ ଯଥେଷ୍ଟ ଶକ୍ତି ଓ ଆବଶ୍ୟକତା ଅନ୍ତର୍ନିହିତ ହୋଇଛି । କିନ୍ତୁ ଏହି ଅନୁପାତରେ ତାର ବୌଦ୍ଧିକ ବିକାଶ ସେତେ ପୁରାତନ ନୁହେଁ । ଫଳରେ ସାଧାରଣତଃ ସର୍ବସାଧାରଣଙ୍କ କ୍ଷେତ୍ରରେ ମନ ଅପେକ୍ଷା ହୃଦୟ ଅଧିକ ପ୍ରଭାବଶାଳୀ ହୋଇଥାଏ । ଭାବ (emotion) ବୁଦ୍ଧିକୁ (Intellect) ନିଜ ଆୟତ୍ତରେ ରଖିଥାଏ ଏବଂ ହୃଦୟ ମସ୍ତିଷ୍କଠାରୁ ଅଧିକ ଶକ୍ତିଶାଳୀ ଭାବେ କାର୍ଯ୍ୟ କରିଥାଏ । ମଣିଷର ଏହା ଏକ ଉଲ୍ଲେଖନୀୟ ବିଶେଷତ୍ୱ ।

ମନୁଷ୍ୟର ମସ୍ତିଷ୍କ ଓ ହୃଦୟ ମଧ୍ୟରେ ରହିଥିବା ଏହି ବିବର୍ତ୍ତନ ଭିତ୍ତିକ ବିରାଟ ଫାଙ୍କକୁ ବାସ୍ତବବାଦୀମାନେ ଉପଯୁକ୍ତ ଗୁରୁତ୍ୱ ଦେଇଥାନ୍ତି । ଏହି ପ୍ରସଙ୍ଗରେ ମହାତ୍ମାଗାନ୍ଧୀଙ୍କର

ଅହିଂସା ଆନ୍ଦୋଳନ ବିଷୟ ଉଲ୍ଲେଖ କରାଯାଇପାରେ । ଭାରତକୁ ସ୍ୱାଧୀନ କରାଇବା ପାଇଁ ଗାନ୍ଧିଜୀ ଯେତେବେଳେ ଏକ ଗଣଆନ୍ଦୋଳନ ବିଷୟ ଚିନ୍ତା କଲେ ସେ ଆମ ଦେଶର ବହୁସଂଖ୍ୟକ ଅଶିକ୍ଷିତ ରକ୍ଷଣଶୀଳ ଜନସାଧାରଣଙ୍କର ମତିଗତି ବିଷୟରେ ସଚେତନ ଥିବେ ଏବଂ ସେ ନିଶ୍ଚୟ ହୃଦୟଙ୍ଗମ କରିଥିବେ ଯେ ସେମାନଙ୍କ ମସ୍ତିଷ୍କକୁ ଆହ୍ୱାନ ଦେବା ଅପେକ୍ଷା ସେମାନଙ୍କ ହୃଦୟକୁ ଛୁଇଁବାପରି ଏକ ଆନ୍ଦୋଳନ ସୃଷ୍ଟି କରିବା ଅଧିକ ସହଜସାଧ ଓ ଫଳପ୍ରଦ ହେବ । ବହୁ ଯୁଗଧରି ପ୍ରତିଷ୍ଠିତ ହୋଇଛି, ଭାରତୀୟମାନେ ସାଧାରଣତଃ ସହନଶୀଳ ଓ ଧର୍ମପ୍ରାଣ । ସେମାନଙ୍କର ସରଳତା ଓ ନମ୍ରତା ପରି ଗୁଣର ତୀବ୍ରତା ଉପଲବ୍ଧି କରି ଅହିଂସା ଆନ୍ଦୋଳନର ସୂତ୍ରପାତ କରିଥିଲେ । ଯାହାକି ପରିଶେଷରେ ଅଭୂତପୂର୍ବ ସଫଳତା ହାସଲ କରି ବିଦେଶୀ ଶାସକଙ୍କ କବଳରୁ ଭାରତକୁ ମୁକ୍ତ କରିଥିଲା । ଏଠାରେ ଲକ୍ଷ୍ୟ କରିବା କଥା ଯେ, ଗାନ୍ଧିଜୀ ବୁଦ୍ଧି (Intecllect) ଉପରେ ଗୁରୁତ୍ୱ ନଦେଇ (Emotion ବା intuition) ଉପରେ ଜୋର୍ ଦେଇଥିଲେ । ଏହି ମର୍ମରେ ବ୍ୟାଖ୍ୟା କରିବାକୁ ଯାଇ ନିରୋଦ ଚୌଧୁରୀ ଲେଖିଛନ୍ତି "The Gandhian attitude towards morality and politics was a reaction from the intellectual to the intuitive stand point.. Mahatma Gandhi brought about an approximation and even identification of the nationalist aspiration with the intuitive, timeless and humble morality of the Indian masses... the result was an inevitable lowering of intellectual life." (The intellectuals in India, 1967, P.53).

ଏହାଦ୍ୱାରା ସ୍ପଷ୍ଟ ଭାବେ ପ୍ରତିପାଦିତ ହେଉଛି ଯେ, ସାଧାରଣ କ୍ଷେତ୍ରରେ intellect ଅପେକ୍ଷା emotion ଅଧିକ ପ୍ରଭାବଶାଳୀ ହୋଇଥାଏ । ବହୁ କ୍ଷେତ୍ରରେ ଏହାକୁ ମୂଳମନ୍ତ୍ର ଭାବେ ଗ୍ରହଣ କରାଯାଇ ବିଭିନ୍ନ ପଦକ୍ଷେପମାନ ନିଆଯାଇଥାଏ । ଏହି ପ୍ରସଙ୍ଗରେ ଅଲଡସ ହକ୍ସଲେଙ୍କ ମତ ପ୍ରଣିଧାନଯୋଗ୍ୟ An unexciting truth may be eclipsed by a thrilling falsehood' (Brave New world Revisited) ଯେ କୌଣସି ଉକ୍ତିର (statement) ସତ୍ୟାସତ୍ୟ ଜାଣିବା ପାଇଁ ଯୁକ୍ତିତର୍କ ଆବଶ୍ୟକ । ତେଣୁ ଏଥିପାଇଁ ମାନସିକ ଶକ୍ତିର କୌଶଳ ପ୍ରୟୋଗ ନିହାତି ଦରକାର । ଏହି ବୌଦ୍ଧିକ ପ୍ରକ୍ରିୟାକୁ ସୁପ୍ତ କିମ୍ବା ନଷ୍ଟ କରିବାକୁ ଏମିତି ଏକ ମାୟା ବା ମୋହର ଜାଲ ଆବଶ୍ୟକ; ଯାହାକି ହୃଦୟକୁ ଅନୁକୂଳ ଭାବେ ସ୍ପନ୍ଦିତ କରି ସର୍ବସାଧାରଣଙ୍କୁ ଅନ୍ଧଭାବେ ପରିଚାଳିତ କରିବ । ଏହି ଉପାୟରେ ହିଟ୍‌ଲର ଜର୍ମାନୀ ଜାତିକୁ ସତ୍ୟ ଓ ବାସ୍ତବତାଠାରୁ ଦୂରେଇ ରଖି ନାଜିବାଦରେ ସଫଳଭାବେ ଦୀକ୍ଷିତ କରି ପାରିଥିଲେ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଜର୍ମାନୀ ଜାତି ଯଥେଷ୍ଟ ଉନ୍ନତ, ଶିକ୍ଷିତ ତଥା ଶିଳ୍ପସମୃଦ୍ଧ । ସେମାନେ ତତ୍‌କାଳୀନ ଭାରତୀୟଙ୍କଠାରୁ ଅଧିକ ଆଧୁନିକ ଥିଲେ । ତଥାପି ସେମାନେ ଭାରତୀୟମାନଙ୍କ ପରି Intellect ଅପେକ୍ଷା

Emotion ଦ୍ୱାରା ବାନ୍ଧି ହୋଇ ରହିଥିଲେ । ତେଣୁ ଗୋଟିଏ ଜାତି ଶିକ୍ଷିତ ହେଉ ବା ଅଶିକ୍ଷିତ ହେଉ, ଆଧୁନିକ ହେଉ ବା ମରହଟ୍ଟିଆ ହେଉ– ପ୍ରାୟ ସବୁ କ୍ଷେତ୍ରରେ ହୃଦୟ ହିଁ ଶକ୍ତିମାନ ହୋଇଥାଏ; ଏପରିକି ମାନସ ରାଜ୍ୟରେ ମଧ୍ୟ ହୃଦୟ ଶାସନ କରିଥାଏ । କାହାରି ପାଇଁ ଏହି ଶାସନ ପ୍ରତ୍ୟକ୍ଷ ଓ ଅନ୍ୟମାନଙ୍କ ପାଇଁ ପ୍ରଚ୍ଛନ୍ନ । ବର୍ତ୍ତମାନ ଯୁଗରେ ବୁଦ୍ଧିଜୀବୀ ବାଟ୍ରଣ୍ଡ ରସେଲ୍‌ଙ୍କ ଅପେକ୍ଷା ମିଥ୍ୟାପ୍ରଚାରକ ଗୋବେଲସ୍‌ଙ୍କର ପ୍ରାଧାନ୍ୟ ବେଶି । ମନୁଷ୍ୟର ବୌଦ୍ଧିକ ବିକାଶର ଅଭାବନୀୟତା ଏହି ଦୁଃଖଦ ପରିସ୍ଥିତି ପାଇଁ ଦାୟୀ । ସାଧାରଣ କ୍ଷେତ୍ରରେ ବୁଦ୍ଧିଜୀବୀମାନଙ୍କର ବିପର୍ଯ୍ୟୟ ଓ ଅନାଦର ପଛରେ ଏହା ଏକ କାରଣ ।

ଏହା ଯେ କେବଳ ରାଜନୈତିକ ଆନ୍ଦୋଳନ ଓ କ୍ଷମତାର ଖେଳ ମଧ୍ୟରେ ସୀମିତ– ତାହା ନୁହେଁ । ଏପରିକି ବୌଦ୍ଧିକ ବ୍ୟାପାରରେ ମଧ୍ୟ ଏହା ପରିଦୃଷ୍ଟ ହୋଇଥାଏ । ତେଣୁ J.S. Mill କ୍ଷୋଭର ସହିତ ମନ୍ତବ୍ୟ ଦେଇଛନ୍ତି, "The writing by which a man can live are not those that themselves live." ତେଣୁ କୌଣସି ବ୍ୟକ୍ତି ଯଦି ଲେଖକ ଭାବେ ବଞ୍ଚିବାକୁ ଚାହେଁ, ତାକୁ ନିମ୍ନମାନର ଶସ୍ତାପୁସ୍ତକମାନ ରଚନା କରିବାକୁ ପଡ଼ିବ । ଏଥିରୁ ଜଣାଯାଏ ଯେକୌଣସି ବୁଦ୍ଧିଜୀବୀ କେବଳ ବୁଦ୍ଧିଜୀବୀ ପରି ବଞ୍ଚିବା ସମ୍ଭବ ନୁହେଁ । ଏହି ବୁଦ୍ଧିଜୀବୀ ଜଣଙ୍କ ନିଜର ପେଟପୋଟଣା ପାଇଁ ହୁଏତ ପ୍ରଶାସନିକ ନିଯୁକ୍ତି ଗ୍ରହଣ କରେ, କିମ୍ବା ଅଧ୍ୟାପନା କରେ, ନଚେତ୍ ଡାକ୍ତର ହୁଏ କିମ୍ବା ଇଞ୍ଜିନିଅରିଂ ସଂସ୍ଥାରେ ଆଶ୍ରୟ ନେଇଥାଏ ଇତ୍ୟାଦି । ଫଳରେ ସେ କିଛି ପରିମାଣରେ ପରାଧୀନତା ବରଣ କରିଥାଏ । ଏହିପରି ବୁଦ୍ଧିଜୀବୀମାନଙ୍କୁ କେହି କେହି ଓଢ଼ଣା ତଳେ ନିଶ ଲୁଚାଉଥିବା ପୁରୁଷ ପୁଙ୍ଗବ ବୋଲି କହିଥାନ୍ତି । ଉକ୍ତ ଓଢ଼ଣା ତଳର ନିଶ କାଳକ୍ରମେ କେତେକଙ୍କ ପାଇଁ ମାଇନିଶ (ମାଇକିନିଆମାନଙ୍କର ନିଶ) ପରି କାମ କରେ ଏବଂ ସେମାନେ ଅଶେଷ ଲଜ୍ଜା ଅନୁଭବ କରି ସାରାଜୀବନ ଆଉ ଓଢ଼ଣା ଉଠାଇ ନଥାନ୍ତି । କିନ୍ତୁ ଅନ୍ୟ କେତେକ ବୀର ଭୀମସେନ ପରି ଓଢ଼ଣା ତଳର ଏହି ନିଶକୁ ଭଲଭାବେ ବ୍ୟବହାର କରି କୀଚକକୁ ବଧ କରିଥାନ୍ତି ।

ଉପସଂହାରରେ କୁହାଯାଇ ପାରେ ଯେ, ବୁଦ୍ଧିଜୀବୀର ଗୋଷ୍ଠୀବଦ୍ଧତା ଦୁର୍ବଳ ହୋଇଥିଲେ ସୁଦ୍ଧା ସେ ସ୍ଥଳ ବିଶେଷରେ ଏକାକୀ ବୌଦ୍ଧିକତାକୁ ଏକ ପ୍ରକ୍ରିୟା ଭାବେ ଗ୍ରହଣ କରି ନୂତନ ଯୁଗ ସୃଷ୍ଟି କରିବାରେ ସମର୍ଥ ।



# ବୁଦ୍ଧିଜୀବୀ ଓ ଅନୁମତି ନିଷେଧ

ବିଖ୍ୟାତ ଗ୍ରୀକ୍ ଦାର୍ଶନିକ ତଥା ବୁଦ୍ଧିଜୀବୀ ସକ୍ରେଟିସ୍‌ଙ୍କୁ ଯେତେବେଳେ ମୃତ୍ୟୁଦଣ୍ଡ ଦିଆଗଲା, ସେ ବିଷଖାଇ ଆତ୍ମହତ୍ୟା କରିବା ପୂର୍ବରୁ କହିଥିଲେ 'And now, men who have condemned me, I would fain prophesy to you, for I am about to die and in the hour of death, men are gifted with prophetic power. I prophesy to you, who are my murderers, that immediately after my departure, punishment far heavier than you have inflicted on me will surely await you. If you think that by killing men you can prevent some one from censuring your evil lives, you are mistaken, that is not a way of escape which is either possible or honourble; the easiest and the noblest way is not to be disbelieving others, but to improving your souls. (Russel–History of western Philosophy, P. 106-7)

ଏହା ବୁଦ୍ଧିଜୀବୀମାନଙ୍କର ଚରମ ଦୁର୍ଗତି ଓ ଅନ୍ତିମ ବ୍ୟର୍ଥତାର ସ୍ପଷ୍ଟ ସୂଚନା ଦିଏ ଏବଂ ସର୍ବସାଧାରଣ କେତେଦୂର ବୁଦ୍ଧିଜୀବୀମାନଙ୍କର ବିରୋଧୀ ହୋଇପାରନ୍ତି, ତାହା ମଧ୍ୟ ଘୋଷଣା କରୁଛି ।

ସକ୍ରେଟିସ୍ ଖ୍ରୀଷ୍ଟ ପୂର୍ବ ପଞ୍ଚମ ଶତାବ୍ଦୀରେ ଗ୍ରୀସର ଏଥେନ୍‌ସରେ ବାସ କରୁଥିଲେ । ସେଠାରେ ସେତେବେଳେ ପ୍ରତ୍ୟକ୍ଷ ଗଣତାନ୍ତ୍ରିକ ପଦ୍ଧତି ପ୍ରଚଳିତ ହେଉଥାଏ । ତେଣୁ ପ୍ରକୃତ ଜନମତର ଶାସନ ଚାଲିଥାଏ । ସେଠାରେ ନାଗରିକମାନେ ସକ୍ରେଟିସଙ୍କର ମୃତ୍ୟୁ ଚାହୁଁଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଥରେ ଦୈବବାଣୀ ହୋଇଥିଲା—ସକ୍ରେଟିସ ହେଉଛନ୍ତି ଗ୍ରୀସର ବିଜ୍ଞତମ ବ୍ୟକ୍ତି । ତଥାପି ଏମିତି ଏକ ଅସାଧାରଣ ପ୍ରତିଭାକୁ ସେହି ଦେଶର ବହୁ ନାଗରିକ ମୃତ୍ୟୁଦଣ୍ଡ ଦେବା ପାଇଁ ପ୍ରବଳ ଦାବୀ ଜଣାଇଥିଲେ । ଏହାର କାରଣ ହେଉଛି ଯେ, ସେ ବିଭିନ୍ନ ବିଷୟରେ ଅଯଥା ଆଲୋଚନା ଓ ବାଦାନୁବାଦମାନ ସୃଷ୍ଟିକରି ଏଥେନସ୍‌ବାସୀଙ୍କୁ ବିଶେଷତଃ ସେଠାକାର ଯୁବଶକ୍ତିକୁ, ଦୁର୍ବଳ ତଥା ପଥଭ୍ରଷ୍ଟକରି ଦେଉଥିଲେ । ଏପରିକି ସେମାନେ ସେଠାରେ ପ୍ରତିଷ୍ଠିତ ମତବାଦ ଓ ପ୍ରଚଳିତ ପରମ୍ପରାକୁ ଅମାନ୍ୟ କରୁଥିଲେ । ଫଳରେ ସକ୍ରେଟିସ୍‌ଙ୍କୁ ସମାଜର ଏକ ଶତ୍ରୁ ବୋଲି ଚିତ୍ରିତ କରାଗଲା ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ସକ୍ରେଟିସ୍ ସେଠାକାର ନାଗରିକମାନଙ୍କୁ ନିଜ ମତାନୁସାରେ ଦୀକ୍ଷିତ କରାଇବା ପାଇଁ ନିଜ ପରିବାରର ଏବଂ ନିଜର ଯତ୍ନ

ନେଉନଥିଲେ । କିନ୍ତୁ ତାଙ୍କର ଏହି ତ୍ୟାଗ, ଆଦର୍ଶ ଓ ସାଧନା ପାଇଁ ସେ ସମାଜ ଦ୍ୱାରା ମୃତ୍ୟୁଦଣ୍ଡ ପୁରସ୍କାର ଭାବେ ପାଇଲେ । ବୁଦ୍ଧିଜୀବୀମାନଙ୍କ ଏହି ପରମ୍ପରା ପୂର୍ବରୁ ଚାଲିଆସିଛି । ସକ୍ରେଟିସ୍‌ଙ୍କ ପରି ବୁଦ୍ଧିଜୀବୀମାନେ ପ୍ରତ୍ୟେକ ଯୁଗରେ ଜନ୍ମ ଗ୍ରହଣ କରି ଅତ୍ୟନ୍ତ ନିର୍ଯ୍ୟାତିତଭାବେ ମୃତ୍ୟୁବରଣ କରିଥାନ୍ତି । ଏହାର କାରଣ ହେଉଛି, ସେମାନଙ୍କୁ ସମାଜ ଗ୍ରହଣ କରିବାକୁ ହଠାତ୍ ପ୍ରସ୍ତୁତ ନୁହେଁ । ସେମାନଙ୍କର ଆଗାମୀ ଯୁଗର ଚିନ୍ତାକୁ ତତ୍‌କାଳୀନ ସମାଜ ସ୍ୱାଗତ କରେନାହିଁ । ତେଣୁ ସେମାନେ ଖାପଛଡ଼ା ହୋଇ ହନ୍ତସନ୍ତ ହୋଇଥାନ୍ତି ।

ସକ୍ରେଟିସ୍‌ଙ୍କ ପରି କିଏ ସମାଜର ଚକ୍ଷୁଶୂଳ ହୋଇଥାଏତ, କିଏ ଶାସକ ବର୍ଗଙ୍କର ଶତ୍ରୁ ହୁଏ । ଆମ ଦେଶର ପରିସ୍ଥିତି ସମ୍ପର୍କରେ କହିବାକୁ ଯାଇ ନିରଦ ଚୌଧୁରୀ ମତବ୍ୟକ୍ତ କରିଛନ୍ତି ଯେ, ବୁଦ୍ଧିଜୀବୀମାନଙ୍କର ଚରମ ଶତ୍ରୁ ହେଉଛି ଅମଲାତନ୍ତ୍ର । ସେ iNTELLECTUALS IN iNDIA (1967) ବହିରେ ଲିପିବଦ୍ଧ କରିଛନ୍ତି :—

'The bureaucracy in India is the most relentless enemy of intellectual freedom and as a corollary, to intellectuals as well... Had Bankim Chandra and Ramesh Dutt been in Government service today, they would have been dismissed (P- 66)

ଶାସକ ଗୋଷ୍ଠୀର ଶ୍ୟେନ ଦୃଷ୍ଟିରୁ ରକ୍ଷା ପାଇବାପାଇଁ ବିଭିନ୍ନ ବୁଦ୍ଧିଜୀବୀ ବିଭିନ୍ନ ଉପାୟ ଅବଲମ୍ବନ କରିଥାନ୍ତି । ସକ୍ରେଟିସ୍‌କୁ ଯେତେବେଳେ ମୃତ୍ୟୁଦଣ୍ଡ ଦିଆଗଲା, କଥିତ ଅଛିଯେ, ସେତେବେଳେ ତାଙ୍କର କେତେଜଣ ଶିଷ୍ୟ, ସେ ଲୁଚି ପଳାଇବାପାଇଁ ଏକ ଯୋଜନା କରିଥିଲେ । କିନ୍ତୁ ସକ୍ରେଟିସ୍ ତାହା ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ଏହି ପରିସ୍ଥିତିରେ ମରିବା ପାଇଁ ଏକ ଗୌରବ ବୋଲି ଅନୁଭବ କରିଥିଲେ । ଲୋକ ମାନନ୍ତୁ ବା ନ ମାନନ୍ତୁ, ତାଙ୍କର ଦୃଢ଼ବିଶ୍ୱାସ ଥିଲା ଯେ, ସେ ସମାଜର ଉପକାର କରୁଛନ୍ତି । ଏମିତି ଏକ ତରଫା ପ୍ରେମର ବିଷମୟ ଫଳ ତାଙ୍କୁ ଭୋଗିବାକୁ ପଡ଼ିଲା ।

ଅବଶ୍ୟ ସକ୍ରେଟିସ୍‌ଙ୍କ ଦୃଷ୍ଟାନ୍ତ ବିରଳ । ଅନ୍ୟମାନଙ୍କ ଜୀବନରେ ଭିନ୍ନ ଧରଣର ଘଟଣା ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ, ବିଶିଷ୍ଟ ଜର୍ମାନୀ ଗାଣିତିକ ଲିବଞ୍ଜ (୧୬୪୬–୧୭୧୬) ତତ୍‌କାଳୀନ ରାଜାମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଏକ ପ୍ରକାର ଛଳନାପୂର୍ଣ୍ଣ ଖୋସାମଦିଆ ବହି ଲେଖୁଥିଲେ । ଏହା ଫଳରେ ତାଙ୍କର ଅବଶ୍ୟ ଭଲ ଗୁପ୍ତ-ଚରିତ୍ର ପଞ୍ଜିକା ଥିବ, କିନ୍ତୁ ନିଜର ସ୍ୱାଧୀନ ମତବ୍ୟକ୍ତ କରି ଅନ୍ୟ ପ୍ରକାର ଚିନ୍ତାଦ୍ୟୋତକ ପ୍ରବନ୍ଧମାନ ସେ ଲୁଚାଇ ଲେଖୁଥିଲେ । ସେ ଶାସକମାନଙ୍କର କୋପଦୃଷ୍ଟି ଏଡ଼ାଇବାପାଇଁ ସେମାନଙ୍କର ପ୍ରଶସ୍ତି ଉଦ୍ଦେଶ୍ୟରେ ଲିଖିତ ବହିମାନ ପ୍ରକାଶ କରିଥିଲେ ଏବଂ ଅନ୍ୟ ମୌଳିକ ଓ ବୌଦ୍ଧିକ ପ୍ରବନ୍ଧମାନ

ଲୁଚାଇ ରଖୁଥିଲେ । କିଛିବର୍ଷ ପୂର୍ବେ ଶେଷୋକ୍ତ ପାଣ୍ଡୁଲିପିମାନ ପ୍ରକାଶିତ ହେବା ପରେ ଲିବିଞ୍ଜଙ୍କର ଦ୍ୱୈତ ଚରିତ୍ରର ପରିଚୟ ମିଳିଲା । ଏହି ଧରଣର ଆତ୍ମରକ୍ଷା ବହୁ ବିଶିଷ୍ଟ ବ୍ୟକ୍ତିଙ୍କର ଜୀବନୀରେ ଦେଖିବାକୁ ମିଳେ । ସେମାନେ ସମାଜକୁ ସିଧାସଳଖ ମୁକାବିଲା କରିବାକୁ ଇଚ୍ଛା କରନ୍ତି ନାହିଁ । ଲୁଚକାଳି ଖେଳ ଖେଳି ସମାଜ ଓ ଶାସକବର୍ଗଙ୍କୁ ସମ୍ମୁଖୀନ କରନ୍ତି । ଗାଲିଲିଓ ପୃଥିବୀ ସ୍ଥିରଥିବା ସମ୍ପର୍କରେ ଏମିତି ସତମିଛ କହିବାକୁ ପସନ୍ଦ କରିଥିଲେ । ଡାରଉଇନ ମଧ୍ୟ ତାଙ୍କର ନୂତନ ଜୈବ ତତ୍ତ୍ୱ ପ୍ରକାଶ କରିବାବେଳେ ଏମିତି ସଙ୍କଟଜନକ ମୁହୂର୍ତ୍ତର ସମ୍ମୁଖୀନ ହୋଇଥିଲେ ।

ଉପରୋକ୍ତ ଦୃଷ୍ଟାନ୍ତମାନଙ୍କରୁ ପ୍ରତୀତ ହୁଏ ଯେ, ସମାଜ ଓ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଉପଯୁକ୍ତ ବୁଝାମଣା ରହୁନାହିଁ । ସମାଜ ଅର୍ଥାତ୍ ସର୍ବସାଧାରଣ ଗତାନୁଗତିକତାକୁ ଅତି ନିରାପଦ ବୋଲି ଭାବନ୍ତି ଓ ତଦନୁସାରେ ପରିଚାଳିତ ହେବାକୁ ପସନ୍ଦ କରନ୍ତି । କିନ୍ତୁ ବୁଦ୍ଧିଜୀବୀମାନେ ଚିରାଚରିତ ପ୍ରଥା କିମ୍ବା ପ୍ରଚଳିତ ଭାବଧାରାରେ ନିଜକୁ ବାନ୍ଧି ନ ରଖି ସ୍ୱାଧୀନ ଭାବେ ଚିନ୍ତା କରନ୍ତି । ଯେତେବେଳେ ସେମାନେ ଏହି ନୂତନ ଚିନ୍ତାଧାରା ପ୍ରଚାର କରନ୍ତି କିମ୍ବା କାର୍ଯ୍ୟକାରୀ କରିବାପାଇଁ ପ୍ରସ୍ତୁତ ହୁଅନ୍ତି, ସେମାନେ ପ୍ରୟେଡ଼ଙ୍କପରି ପ୍ରବଳ ବିରୋଧର ସମ୍ମୁଖୀନ ହୁଅନ୍ତି । ସେମାନଙ୍କ ପରିବାର ସକ୍ରେଟିସ୍‌ଙ୍କ ପରିବାରପରି ନିର୍ଯ୍ୟାତିତ ହୁଅନ୍ତି । ତେଣୁ ନିରୋଦ ଚୌଧୁରୀ ମନ୍ତବ୍ୟ ଦେଇଛନ୍ତି, 'I discovered soon enough that in much knowledge there is much sorrow. So I suffered from my rational outlook, as I did not suffer even from the grinding poverty through which I had to pass after entering life (P. 26; I believe).

ଏଥିରେ ସେ କହିବା ଉଦ୍ଦେଶ୍ୟ ହେଉଛି ଯେ, ପାଠ ପଢ଼ିବାଠାରୁ ଭିକ ମାଗିବା ଭଲ । ପ୍ରକାରାନ୍ତରେ ଯିଏ ପଣ୍ଡିତ, ସିଏ ମୂର୍ଖ । ପୁଣି ଏହି ପଣ୍ଡିତ ଯଦି ସମାଜକୁ ଆଗେଇନେବାପାଇଁ ଆଗଭର ହୁଏ ସିଏ ମହାପଣ୍ଡିତ ବଦଳରେ ମହାମୂର୍ଖ ହେବ । ଏହା ବହୁଲୋକ ମୁଖରୁ ଶୁଣାଯାଉଥିବା ଏକ ନିରାଟ ସତକଥା ।

ଅବଶ୍ୟ ମାନବ ସଭ୍ୟତାର ପ୍ରଗତି ପାଇଁ ଏହା ଏକ ଅଶୁଭ ସଙ୍କେତ । ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ନୈରାଶଭାବ ସୃଷ୍ଟିହୋଇ ନିଷ୍କ୍ରିୟତାରେ ପର୍ଯ୍ୟବସିତ ହେଲେ, ମାନବ ସଭ୍ୟତାର ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ ହୁଏ ।

ଏକଥା ବହୁ କ୍ଷେତ୍ରରେ ସତ ଯେ, ଶାସକବର୍ଗ ବୁଦ୍ଧିଜୀବୀମାନଙ୍କୁ ନିଷ୍କ୍ରିୟ ରହିବାକୁ ଚେଷ୍ଟା କରନ୍ତି । ଏହାର କାରଣ ଏହି ଯେ, ସେମାନେ ମାନବ ସଭ୍ୟତାର ଅଗ୍ରଗତି ଅପେକ୍ଷା ନିଜର ଗାଦିର ସୁରକ୍ଷା ପାଇଁ ଅଧିକ ଯତ୍ନଶୀଳ । ତେଣୁ ଶାସନ ସମ୍ପର୍କରେ କୌଣସି ବୁଦ୍ଧିଜୀବୀ ସେମାନଙ୍କୁ ନସୁହାଇବାପରି ସ୍ୱାଧୀନ ମତ ଦେଲେ ସେମାନେ ବ୍ୟସ୍ତ ହୋଇଥାନ୍ତି । ସୋଭିଏତ୍

ରୁଷରେ ଆନ୍ଦ୍ରେ ସାଖାରୋଭ, ପେଷ୍ଟରନାକ୍ ଇତ୍ୟାଦିଙ୍କୁ ଏହି କାରଣରୁ ସାମାନ୍ୟତମ ସ୍ୱାଧୀନତା ଦିଆଯାଉନଥିଲା । କିନ୍ତୁ ଏହା ଯେ ରୁଷିଆପରି କମ୍ୟୁନିଷ୍ଟ ଦେଶମାନଙ୍କରେ କେବଳ ଘଟେ ତାହା ନୁହେଁ, ବ୍ରିଟେନ ଗୋଟିଏ ଉଦାରବାଦୀ ରାଷ୍ଟ୍ର ହୋଇଥିଲେ ସୁଦ୍ଧା ବାର୍ଟ୍ରେଣ୍ଡ ରସେଲଙ୍କୁ ସେଠାରେ ଦୁଇଥର କାରାବରଣ କରିବାକୁ ପଡ଼ିଥିଲା । ପ୍ରଥମ ବିଶ୍ୱ ମହାସମର ବେଳେ ସେ ଶାନ୍ତିରକ୍ଷା ପାଇଁ ଏବଂ ଯୁଦ୍ଧ ବିରୋଧ ଭାବନା ପ୍ରଚାର କରିଥିବା ଯୋଗୁଁ ଦେଶଦ୍ରୋହୀ ଅଭିଯୋଗରେ ଜେଲରେ ରହିଥିଲେ । ସେମିତି ତାଙ୍କୁ ନବେବର୍ଷ ବୟସ ହୋଇଥିବାବେଳେ ସେ ଆଣବିକ ନିରସ୍ତ୍ରୀକରଣ ପ୍ରସଙ୍ଗରେ ବନ୍ଦୀ ହୋଇଥିଲେ ।

ଶାସକ ଗୋଷ୍ଠୀର ଯୁଗଯୁଗଧରି ବୁଦ୍ଧିଜୀବୀମାନଙ୍କ ପ୍ରତି ବିଦ୍ୱେଷ ଭାବ ରହି ଆସିଛି । ତେଣୁ ରାଜାମାନଙ୍କର ବିଭିନ୍ନ ଦୁର୍ଗୁଣ ଦୂର କରିବା ପାଇଁ ଦାର୍ଶନିକ ପ୍ଲାଟୋ Philosopher... King ପରିକଳ୍ପନା କରିଥିଲେ ଯିଏ କି କେବଳ ସର୍ବଶକ୍ତିମାନ ହେବନାହିଁ, ତାକୁ ନିଶ୍ଚିତ ଭାବେ ଜ୍ଞାନୀ ହେବାକୁ ପଡ଼ିବ । ଏହି କଳ୍ପନା କାର୍ଯ୍ୟକାରୀ କରିବାପାଇଁ ପ୍ଲାଟୋ ନିଜେ ସୁଯୋଗ ପାଇଥିଲେ ଖ୍ରୀଷ୍ଟପୂର୍ବ ୩୬୬ରେ ସେ ସାଇରାକ୍ୟୁଜର ଡାଇନିସିଅସ ଦ୍ୱିତୀୟଙ୍କୁ ଏହି ଭିତ୍ତିରେ ତାଲିମ ଦେଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ସେ ବିପରୀତ ପ୍ରଣାଳୀରେ ଶାସନ କଲେ । କୁକୁର ଲାଙ୍ଗୁଡ଼କୁ ସିଧାକରିବା ସହଜ ନୁହେଁ ବୋଲି ଏହି ଘଟଣାରୁ ଅବଶ୍ୟ ପ୍ଲାଟୋ ବୁଝିଥିବେ ।

ମୋଟାମୋଟି ଭାବେ କହିବାକୁ ଗଲେ, ଶାସକମାନେ ବଦଳିବା ସହଜସାଧ ନୁହେଁ । ସେମାନେ ବିଚାରନ୍ତି ଯେ ଶାସନ କରିବା ସେମାନଙ୍କର ଏକ ସ୍ୱତନ୍ତ୍ର ବ୍ୟକ୍ତିଗତ ଅଧିକାର ଏବଂ ଅନ୍ୟମାନଙ୍କର ଏହି ସମ୍ପର୍କରେ କିଛି କହିବା ବା କରିବା, ଚାଲିବା– ଶଗଡ଼ରେ ହାତଦେବାପରି । ତେଣୁ ବୁଦ୍ଧିଜୀବୀମାନଙ୍କୁ ସେହି ଅନୁସାରେ ଶାସକ କଥା ସମାଜର ରକ୍ଷଣଶୀଳତା ବିରୁଦ୍ଧରେ ପ୍ରସ୍ତୁତ ହେବାକୁ ପଡ଼ିବ । ଏହି ଉପଲକ୍ଷେ J.S. Mill 'On Liberty' ବହିରେ ଉଲ୍ଲେଖ କରିଛନ୍ତି In this age, the mere example of non conformity, the mere refusal to bend the knee to custom is itself a service... Eccentricity has always abounded when and where strength of character has abounded and the amount of eccentricity in a society has generally been proportional to the amount of genius, mental vigour and moral courage it contained. (P.93)

ସେମିତି ମିନୁମାଷାନୀ ଏହି ମତକୁ ସମର୍ଥନ କରିଛନ୍ତି, "I believe the nonconformist conscience is one of our country's saddest shortages and that heretics are the salt of the earth."

ଉପରୋକ୍ତ ବିଶ୍ଳେଷଣରୁ ପ୍ରତୀକ ହୁଏ ଯେ, ସର୍ବସାଧାରଣଙ୍କ ମଧ୍ୟରେ ସ୍ଥିତି ସ୍ଥାପକତାର ଭାବ ପ୍ରବଳ ହୋଇଥିବାବେଳେ ଗତିଶୀଳତା ତଥା ବିପ୍ଳବୀ ଚିନ୍ତାଧାରା ବୁଦ୍ଧିଜୀବୀଙ୍କଠାରେ ପରିଲକ୍ଷିତ ହୁଏ । ବୁଦ୍ଧିଜୀବୀଙ୍କଠାରେ ଥିବା ଏହି ମାନସିକ ଲକ୍ଷଣ ଯୋଗୁଁ ବେଳେବେଳେ

ସେମାନେ ନିଃସଙ୍ଗ ଓ ନିଷ୍କ୍ରିୟ ହୋଇଯାନ୍ତି । ତେଣୁ ନିଃସଙ୍ଗତା ଓ ବୌଦ୍ଧିକତା ମଧ୍ୟରେ ଆନ୍ତରିକ ସମ୍ପର୍କ ରହିଥିବାପରି ମନେହୁଏ । ଏହି ଉକ୍ତିର ସତ୍ୟାସତ୍ୟ ନିରୂପଣ କରିବା ପାଇଁ ବିଶିଷ୍ଟ ସୋଭିଏତ ଲେଖକ ସ୍ୱର୍ଗତ ପେଷ୍ଟରନାକ୍‌ଙ୍କ ଜୀବନୀ ପ୍ରତି ଦୃଷ୍ଟିପାତ କରାଯାଇପାରେ ।

୧୯୫୯ ମସିହାର ଅକ୍ଟୋବର ମାସ । ସେତେବେଳେ ପ୍ରଖ୍ୟାତ କାର୍ଟୁନିଷ୍ଟ ଆବୁ ଆବ୍ରାହାମ ଲଣ୍ଡନର ସୁପ୍ରଷ୍ଟିତ ପତ୍ରିକା 'ଅବଜରଭର' ପାଇଁ କାମ କରୁଥାନ୍ତି । ଏହି ପତ୍ରିକାରେ ସେ ପେଷ୍ଟରନାକଙ୍କର ଗୋଟିଏ ଚିତ୍ର ପ୍ରକାଶ କରିଥିଲେ, ଯାହା ସେତେବେଳେ ବିଶ୍ୱରେ ଚହଳ ସୃଷ୍ଟି କରିଥିଲା । ଏହି ପାର୍ଶ୍ୱ-ଚେହେରା ଆଙ୍କିବା ପାଇଁ ତାଙ୍କୁ ମସ୍କୋଯାଇ କେମିତି କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା, ତାର ବିବରଣୀ ସେ ପ୍ରକାଶ କରିଛନ୍ତି । ଏହାର ତାତ୍ପର୍ଯ୍ୟ ବୁଝିବାପାଇଁ ପେଷ୍ଟରନାକଙ୍କ ସମ୍ପର୍କରେ କିଛି ସୂଚନା ଦେବା ଉଚିତ୍ ହେବ ।

ପେଷ୍ଟରନାକ ପ୍ରସିଦ୍ଧ ଉପନ୍ୟାସ ଡକ୍ଟର ଜିଭାଗୋର ସ୍ରଷ୍ଟା । ଏଥିରେ ଜୀବନର ନିଃସଙ୍ଗତା ଓ ଆଧ୍ୟାତ୍ମିକ ଚେତନା ବିଷୟ ବର୍ଣ୍ଣିତ ହୋଇଛି । ତତ୍ ସହିତ ରୁଷରେ ଅକ୍ଟୋବର ବିପ୍ଳବ ପରେ ସେଠାକାର ସାଧାରଣ ଜୀବନରେ ଫୁଟି ଉଠୁଥିବା କ୍ରୁରତାକୁ ଦୂର କରିବାପାଇଁ ପ୍ରେମ ଗାଥାର ଅପରିହାର୍ଯ୍ୟତା ବିଷୟରେ ଆଲୋକପାତ କରାଯାଇଛି । କିନ୍ତୁ ରୁଷ କର୍ତ୍ତୃପକ୍ଷ ଏହାକୁ ନିଜ ଦେଶପ୍ରତି ନିନ୍ଦାବାଦ ଭାବି ସହ୍ୟକରି ପାରିନଥିଲେ ଏବଂ ରାଷ୍ଟ୍ରର ଅନୁକୂଳ ହେବାପରି ଆବଶ୍ୟକୀୟ କାଟଛାଣ୍ଟ କରିବାପାଇଁ ପେଷ୍ଟରନାକଙ୍କୁ ନିର୍ଦ୍ଦେଶ ଦେଇଥିଲେ—ଯାହାକି ପେଷ୍ଟରନାକ ପ୍ରତ୍ୟାଖ୍ୟାନ କରିଦେଲେ । ପରିଶେଷରେ ଇଟାଲୀର ଜନୈକ ପ୍ରକାଶକ, ଫେଲଟ୍ରିନେଲି, ଏହି ପୁସ୍ତକର ଅନୁବାଦ ପ୍ରକାଶ କଲେ ଏବଂ ସ୍ୱିଡ଼ିଶ ଏକାଡେମୀ ୧୯୫୮ ସାଲରେ ପେଷ୍ଟରନାକଙ୍କୁ ନୋବେଲ ପୁରସ୍କାର ବିଜେତାଭାବେ ଘୋଷଣା କଲା । ସୋଭିଏତ ଲେଖକ ସଂଘର ତତ୍‌କାଳୀନ ସଂପାଦକ ଆଲେକ୍ସି ସୁରକୋଭ ଏଥିରେ ବିବ୍ରତ ହୋଇପଡ଼ିଲେ ଏବଂ ପେଷ୍ଟରନାକଙ୍କୁ ଲେଖକ ସଂଘରୁ ବହିଷ୍କୃତ କରାଗଲା । ଅଠଷଠି ବର୍ଷ ବୟସ—ବୃଦ୍ଧାବସ୍ଥାରେ ତାଙ୍କୁ ଦେଶରୁ ତଡ଼ିବାପାଇଁ ମସୁଧା କରାଯାଇଥିଲା । ଯାହାହେଉ, ପରିଶେଷରେ କର୍କଟ ଓ ହୃଦରୋଗରେ ଆକ୍ରାନ୍ତ ଥିବାବେଳେ ତାଙ୍କୁ ମସ୍କୋ ନଗରୀ ଉପକଣ୍ଠରେ ଥିବା ନୀରବ ନିଶ୍ଚଳ ଭାବେ ପେରେଡେଲକିନୋ ଗ୍ରାମରେ ଶେଷ ଦୁଇବର୍ଷ କଟାଇବା ପାଇଁ ପଠାଗଲା ।

ଆବୁ ଆବ୍ରାହମ୍ ତାଙ୍କୁ ଏଇ ପରିତ୍ୟକ୍ତ ଗ୍ରାମରେ ସାକ୍ଷାତକରି ଅବଜରଭର୍ ପତ୍ରିକାପାଇଁ ଉପରୋକ୍ତ ପ୍ରସିଦ୍ଧ ପାର୍ଶ୍ୱଚିତ୍ର ଅଙ୍କିତ କରିଥିଲେ । ମସ୍କୋରେ ପହଞ୍ଚି ଯେତେବେଳେ ଆବୁଆବ୍ରାହମ ପେଷ୍ଟର୍‌ନାକଙ୍କୁ ଭେଟିବାକୁ ଯୋଜନା କଲେ, ସେତେବେଳେ ସମସ୍ତେ କିଛି ନ ଜାଣିବାପରି ଛଳନା କଲେ ଏବଂ ବିଷୟଟିକୁ ଏଡ଼ାଇ ଦେବାପାଇଁ ଚେଷ୍ଟାକଲେ । ଲଣ୍ଡନର 'ନ୍ୟୁ ଷ୍ଟେଟସମ୍ୟାନ୍'ର ପ୍ରତିନିଧି ସାଲଫ ପାର୍କର ଆବୁଙ୍କ ଏହି ଆଗ୍ରହକୁ ପାଗଳାମି ବୋଲି କହିବାବେଳେ ଅନ୍ୟମାନେ ଆବୁଙ୍କୁ ଏଇ ସାକ୍ଷାତ କେତେଦୂର ବିପଦସଙ୍କୁଳ ହୋଇପାରେ—ଜଣାଇଲେ ।

ପେଷ୍ଟରନାକଙ୍କ ନିବାସ-ସ୍ଥଳକୁ ଯିବାପାଇଁ ମେଟ୍ରୋବସ୍ ଓ ଟ୍ରେନ୍ ସାହାଯ୍ୟରେ ଏକ ଜଟିଳ ରାସ୍ତାଦେଇ ଆବୁକ୍କୁ ଯିବାକୁ ପଡ଼ିଥିଲା । ପରେ ରେଳ ଷ୍ଟେସନରୁ ଅଧଘଣ୍ଟାଏ ଗହମ କ୍ଷେତ ଓ ଆତ ଉଦ୍ୟାନ ମଧ୍ୟରେ ଯାଇ ପେଷ୍ଟରନାକଙ୍କ ବାସଭବନରେ ପହଞ୍ଚି ଦେଖିଲେ ଯେ, ସେଠାରେ ଲେଖାଅଛି: ''କୁକୁର ପ୍ରତି ସାବଧାନ'' ଓ ''ଅନୁମତି ନିଷେଧ'' ।

ପ୍ରତ୍ୟେକ ବୁଦ୍ଧିଜୀବୀଙ୍କ ବାସଭବନରେ ଏଇ ଦୁଇଟି ଫଳକ ଶୋଭାପାଉଛି ନାଁ ନାହିଁ– ତାହା ନିର୍ଧାର୍ଯ୍ୟ ଭାବେ କହିହେବନାହିଁ । କିନ୍ତୁ ଆମେ କହିପାରିବା ଯେ, ଅଧିକାଂଶ ବୁଦ୍ଧିଜୀବୀମାନଙ୍କ ମାନସିକ-ବାସଗୃହ ସମ୍ମୁଖରେ ଏଇ ଦୁଇଟି ଫଳକ ଅବଶ୍ୟ ଶୋଭାପାଏ । ଏଥିରୁ ସୂଚିତ ହୁଏ ଯେ ସେମାନେ ନିଜେ ନିଜେ ନିଃସଙ୍ଗ ହେବାକୁ ଭଲପାଉଥିବେ କିମ୍ବା ଶାସନ ଓ ସମାଜ ସେମାନଙ୍କୁ ନିଃସଙ୍ଗ କରିଦେବାକୁ ଚାହୁଁଥିବ ।

ଏହି ପରିସ୍ଥିତି ଯେ ଅବାଞ୍ଛନୀୟ, ତାହା କହିହେବ ନାହିଁ । ଏଥିପାଇଁ ପୁଣି ଥରେ ପେଷ୍ଟରନାକଙ୍କ ଜୀବନୀ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ବର୍ତ୍ତମାନ ସୋଭିଏତ ଲେଖକ ସଂଘ ପେଷ୍ଟରନାକଙ୍କ ପ୍ରତି ଅବିଚାର କରାଯାଇଥିଲା ବୋଲି ହୃଦୟଙ୍ଗମ କରି ଅନୁତପ୍ତ ହୋଇଛି ଏବଂ ନିଜ ଭୁଲ ସୁଧାରି ତାଙ୍କୁ ସମ୍ମାନିତ କରିବା ପାଇଁ ତାଙ୍କ ନାମରେ ଗୋଟିଏ ସଂଗ୍ରହାଳୟ ପ୍ରତିଷ୍ଠା କରିଛି । ସୋଭିଏତ୍ ନେତା ମିଖାଇଲେ ଗୋର୍ବାଚୋଭ ଲେଖକ ଏବଂ ଶିଳ୍ପୀମାନଙ୍କ ସହିତ ଘରୋଇଭାବେ ମିଳାମିଶା କରିଛନ୍ତି, ଯାହାକି ଲେନିନ୍‌ଙ୍କ ପରେ କୌଣସି ରାଷ୍ଟ୍ରପତି ଅଦ୍ୟାବଧି କରିନଥିଲେ ।

ସୋଭିଏତ୍ କବି ଆନ୍ଦ୍ରେ ରୋନେସେନ୍‌ସ୍କି ଥରେ ମତବ୍ୟକ୍ତ କରିଥିଲେ, ''ଜଣେ ସୋଭିଏତ ଲେଖକ ତା ଜୀବନର ଶତକଡ଼ା ଦଶଭାଗ ସମୟ ଲେଖିବାରେ କଟାଏ ଏବଂ ଅବଶିଷ୍ଟ ନବେଭାଗ ସମୟ କଟାଏ ସେ ଲେଖାକୁ ପ୍ରକାଶ କରିବାରେ'' । ପେଷ୍ଟରନାକ୍ ଏହି ପ୍ରକାର ଅସୁବିଧାର ସମ୍ମୁଖୀନ ହୋଇଥିଲେ । ଯେତେବେଳେ ସେ ୧୯୫୬ ମସିହାରେ ତାଙ୍କ ଉପନ୍ୟାସ ''ଡକ୍ଟର ଜିଭାଗୋ''କୁ ପ୍ରକାଶ କରିବାପାଇଁ ରୁଷୀୟ ମାସିକ ସାହିତ୍ୟିକ ପତ୍ରିକା ''ନୋଭୋମିର''କୁ ଦେଲେ, ତାହା ଅଗ୍ରାହ୍ୟ ହୋଇଯାଇଥିଲା । ଏବଂ ପାଣ୍ଡୁଲିପି ଲୁଚା ଚୋରାରେ ପାଶ୍ଚାତ୍ୟ ଜଗତକୁ ଯାଇ ପ୍ରଥମେ ପ୍ରକାଶିତ ହୋଇଥିଲା । ବର୍ତ୍ତମାନ ଏହି ନିଷିଦ୍ଧ ପୁସ୍ତକଟି ରୁଷରେ ପ୍ରକାଶିତ ହୋଇପାରେ ବୋଲି ଯେଉଁ ସମ୍ବାଦ ପ୍ରଚାରିତ ହେଲା—ତାହା ସ୍ୱର୍ଗୀୟ ପେଷ୍ଟରନାକଙ୍କ ପୁନରାଗମନ ସଦୃଶ । ଏଥିରୁ ଅନୁମିତ ହୁଏ ଯେ, ବୁଦ୍ଧିଜୀବୀର ନିଃସଙ୍ଗତା ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଅନ୍ତରଙ୍ଗତାର ଏକ ଛଦ୍ମରୂପ ମାତ୍ର ।



# ଫାଶୀ ଦଉଡ଼ିର ମୁହାଁ ମୁହିଁ

ଆମକୁ ଯଦି ଫାଶୀଦଣ୍ଡ ଦିଆହୁଏ ତାହାହେଲେ ଆମର ମାନସିକ ପ୍ରତିକ୍ରିୟା ତଥା ଆଚାରବ୍ୟବହାର କିପରି ହେବ ? ଏହି ପ୍ରଶ୍ନର ସମ୍ଭାବିତ ଉତ୍ତର ପାଇବା ପାଇଁ ବେଳେ ବେଳେ ଆମେ ଆଗ୍ରହୀ ହେଉ । ଏଥିପାଇଁ ଆମେ ବିଭିନ୍ନ ଫାଶୀଦଣ୍ଡରେ ଦଣ୍ଡିତ ଆସାମୀମାନଙ୍କ ମୃତ୍ୟୁ ପୂର୍ବର ଗତିବିଧି ଜାଣିବାକୁ କୌତୂହଳୀ ହେଉ ।

ଏହି ମର୍ମରେ କେତେକ ଆଲୋଡ଼ନକାରୀ ଯୌତୁକ-ହତ୍ୟା-ମାମଲାର ଅପରାଧୀମାନଙ୍କ ପ୍ରତି ଆମ ଦୃଷ୍ଟି ଆକର୍ଷିତ ହୋଇଥାଏ । ପଶ୍ଚିମ ବଂଗର ଚନ୍ଦ୍ରନାଥ ବଣିକ ଓ ତାଙ୍କ ପୁଅ ଚନ୍ଦନ ଏହି ଯୌତୁକ-ଜନିତ ହତ୍ୟା-ଅପରାଧରେ ଦୋଷୀ ସାବ୍ୟସ୍ତ ହୋଇ କଲିକତାସ୍ଥିତ ପ୍ରେସିଡେନସି ଜେଲରେ କାରାରୁଦ୍ଧ ହେଲେ । ଏମାନଙ୍କ ମଧ୍ୟରୁ ପିତା ଚନ୍ଦ୍ରନାଥକୁ ମୃତ୍ୟୁଦଣ୍ଡ ଦିଆଯାଇଥିଲା । ଯେତେବେଳେ ଫାଶୀ ଖୁଣ୍ଟରେ ଚଢ଼ିବା ପାଇଁ ଦିନ ଧାର୍ଯ୍ୟ ହେଲା, ଚନ୍ଦ୍ରନାଥ ଗୋଟିଏ ଅଜବ ଧରଣର ଚିଠି ଜେଲ୍ କର୍ତ୍ତୃପକ୍ଷଙ୍କ ନିକଟକୁ ଲେଖିଲା– ''କାରାଦଣ୍ଡ ଭୋଗୁଥିବା ମୋ ପୁଅ ଚନ୍ଦନ ଭଲ ଭାବେ ଖାଇବାକୁ ଜେଲରେ ପାଉନାହିଁ । ତେଣୁ ତାକୁ ଚିକେନ ବିରିୟାନି, ଡେରାଡୁନ ଚାଉଳର ଫ୍ରାଏଡ୍ ରାଇସ୍, ଚିକେନ ଦୋପିଆଜି, ଛେନା କ୍ଷୀର, କଦଳୀ, ନାସପାତି, ଲେମ୍ବୁ, ଚା କଫି ଇତ୍ୟାଦି ସୁସ୍ୱାଦୁ ଖାଦ୍ୟ ଖାଇବାକୁ ଦିଆଯାଉ ।''

ବାତ୍ସଲ୍ୟ ମମତାରେ ଉଦ୍‌ବୁଦ୍ଧ ଚନ୍ଦ୍ରନାଥର ଏହି ମେନୁ-ତାଲିକାଟି ୧୯୮୭ ସାଲର ଫେବୃଆରୀ ମାସରେ କଲିକତାରୁ ବାହାରୁଥିବା ବିଭିନ୍ନ ଖବରକାଗଜମାନଙ୍କରେ ବେଶ୍ ଚର୍ଚ୍ଚାର ବିଷୟବସ୍ତୁ ହୋଇଥିଲା । ପ୍ରକୃତରେ ଚନ୍ଦ୍ରନାଥ ନିଜର ପାପକର୍ମ କିମ୍ବା ଆସନ୍ନ ମୃତ୍ୟୁ ବିଷୟରେ ଯେତେ ଚିନ୍ତିତ ନଥିଲା, ପୁଅର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ତାଠାରୁ ଅଧିକ ବ୍ୟସ୍ତ ଥିଲା ।

ଅବଶ୍ୟ ଚନ୍ଦ୍ରନାଥ ପରି ଆଉ ଜଣେ ଫାଶୀ-ଆସାମୀ ମଧ ଖାଦ୍ୟପେୟ ସଂପର୍କରେ ବେଶ୍ ଆଗ୍ରହୀ ଥିଲା । କିନ୍ତୁ ସେ ନିଜର ପୁଅଝିଅ ପାଇଁ ସେମିତି କିଛି ଭାବୁ ନଥିଲା । ନିଜ ପାଇଁ ତାର ସବୁ ଭାବନା ଓ କାର୍ଯ୍ୟକଳାପ କେନ୍ଦ୍ରୀଭୂତଥିଲା; ଯଦିଚ ସେ ଭଲ ଭାବେ ଜାଣେ ଯେ, ସେ ଫାଶୀଖୁଣ୍ଟରେ ଶୀଘ୍ର ଲଟକିବ ଏବଂ ନିଜ ପାଇଁ ସେ ଯାହା କିଛି କରିବାକୁ ଯାଉଛି, ତାର କୌଣସି ଭବିଷ୍ୟତ ମୂଲ୍ୟ ନାହିଁ । ବୋଧହୁଏ ସେ ଗ୍ରହଣ କରି ନେଇଥିଲା ଯେ– ''ଯାବତ୍ ଜୀବେତ୍, ସୁଖମ୍ ଜୀବେତ୍''– ମରିବା ତ ମରିବା, ମରିବାର ଶେଷ ମୁହୂର୍ତ୍ତ

ପର୍ଯ୍ୟନ୍ତ ଭୋଗବିଳାସରେ, ଘିଅ ପିଇ, ପାଟ ଶାଢ଼ି ଓ ଅଳଙ୍କାରେ ମଣ୍ଡି ହୋଇ କାହିଁକି ନ ମରିବା ?

ଏହି ମୃତ୍ୟୁଦଣ୍ଡ ପାଇଥିବା ଆସାମୀ ଜଣକ ହେଉଛି ଗୋଟିଏ ବୃଦ୍ଧା । ତାର ନାଁ ଲିଛିମା ଓ ନିବାସ ରାଜସ୍ଥାନରେ । ସେଠାକାର ଉଚ୍ଚ ନ୍ୟାୟାଳୟ ଏକ ଯୌତୁକ-ହତ୍ୟା ମାମଲାରେ ତାକୁ ମୃତ୍ୟୁଦଣ୍ଡ ଆଦେଶ ଦେଇଥିଲେ । ଏଥିରେ ଅପରାଧିନୀ ଜଣକ ଆଦୌ ବିଚଳିତ ନ ହୋଇ ଭଲ ଲୁଗା ପିନ୍ଧିବା ପାଇଁ ଆଗ୍ରହୀ ହେଲା । ନିଜ ବଂଧୁ ବାଂଧବ, ସାଙ୍ଗ ସାଥିଙ୍କ ଘରୁ ସ୍ୱାଦିଷ୍ଟ ଖାଦ୍ୟ ମଗାଇବା ପାଇଁ ଜେଲ କର୍ତ୍ତୃପକ୍ଷଙ୍କୁ ବାରମ୍ବାର ଅନୁରୋଧ କରୁଥାଏ । ସାଥୀ କଏଦୀଙ୍କ ସହିତ ବେଶ୍ ହସଖୁସୀ ଓ ଆରାମରେ, ଅଳାପ ଆଲୋଚନାରେ ସମୟ ବିତାଇଲା । ଏପରିକି ମରିବା ପୂର୍ବରୁ ଶଙ୍ଖା ସିନ୍ଦୁର ପିନ୍ଧିବା ପାଇଁ ଜେଲ କର୍ତ୍ତୃପକ୍ଷଙ୍କ ନିକଟରେ ଜିଦ୍ ଧରିଲା ।

ବିଭିନ୍ନ ଜେଲ କର୍ତ୍ତୃପକ୍ଷଙ୍କ ରିପୋର୍ଟରୁ ଜଣାପଡ଼େ ଯେ, ଫାଶୀ ମଂଚକୁ ଯିବା ପୂର୍ବରୁ କେତେକ ଆସାମୀ ଏତାଦୃଶ ଅବିଶ୍ୱସନୀୟ ଆଚରଣ ପ୍ରଦର୍ଶନ କରିଥାନ୍ତି । ଏହି ଅପରାଧୀମାନେ ନିଜ ଦୋଷ ପାଇଁ ବିଶେଷ ଅନୁତପ୍ତ କିମ୍ବା ଚିନ୍ତିତ ନ ଥାନ୍ତି ଏବଂ ଯେ କୌଣସି ମୁହୂର୍ତ୍ତରେ ଫାଶୀ ଦଉଡ଼ିରେ ଓହଳି– ସେମାନଙ୍କ ପ୍ରାଣବାୟୁ ଯେ ନିଶ୍ଚିତ ଭାବେ ଉଡ଼ିଯିବ– ଏଥିପ୍ରତି ଆଦୌ ସଚେତନ ନଥାନ୍ତି । ତେଣୁ ଏପରି ଅନୁଶୋଚନାହୀନ ପାପୀମାନେ ଯେ ପ୍ରାଣଦଣ୍ଡ ପାଇଁ ଯୋଗ୍ୟ, ଏହି ଧାରଣା ସର୍ବସାଧାରଣଙ୍କ ମନରେ ଜବରଦସ୍ତି ଜାଗରିତ ହୁଏ । କିନ୍ତୁ ଏମିତି ବି ହୋଇପାରେ ଯେ, ଚନ୍ଦ୍ରନାଥ ଓ ଲିଛିମା ହେଉଛନ୍ତି ବ୍ୟତିକ୍ରମ । ଏଣୁ ଏମାନଙ୍କୁ ଭିତ୍ତି କରି ସବୁ ଫାଶୀ-ଆସାମୀଙ୍କୁ ଅକ୍ଷମଣୀୟ ବୋଲି କହିବା ଅନୁଚିତ ।

ସେ ଯାହାହେଉ, ଫାଶୀ ଦଣ୍ଡ ପାଇଥିବା କେତେକ ଆସାମୀ ଲିଛିମା ପରି ଯେତେ ପ୍ରଫୁଲ୍ଲ ଓ ଖୁସିମିଜାଜର ଲୋକ ହୁଅନ୍ତୁ ନାଁ କାହିଁକି; ଯେଉଁମାନେ ଫାଶୀଦଣ୍ଡକୁ କାର୍ଯ୍ୟକାରୀ କରନ୍ତି, ଅର୍ଥାତ୍ ଫାଶିଆଲମାନେ ଆସାମୀ ବେକରେ ଦଉଡ଼ି ଗଳାଇବା ବେଳେ କଣ ସେମିତି ଖୁସୀ ବା ପ୍ରସନ୍ନ ହୋଇଥାନ୍ତି ? ଫାଶିଆଲମାନେ ବାଧ ହୋଇ ନିଜ କର୍ତ୍ତବ୍ୟ ସଂପାଦନ କରିଥାନ୍ତି; କିନ୍ତୁ ସେମାନେ ଯେ ସ୍ୱଭାବସୁଲଭ ମାନବିକ ଦୟା, ଦୁଃଖ, ସହାନୁଭୂତି; ମାନସିକ ଦ୍ୱନ୍ଦ୍ୱ ଓ ଧର୍ମ ସଂକଟରେ ଶୀକାର ହୋଇଥାନ୍ତି– ତାର ଯଥେଷ୍ଟ ପ୍ରମାଣ ଅଛି । ଏହି ପ୍ରସଙ୍ଗରେ ସେମାନଙ୍କ ସହିତ କରାଯାଇଥିବା ସାକ୍ଷାତକାରରୁ କିଛି ଅଂଶ ଏଠାରେ ଉଦ୍ଧୃତ କରାଯାଇ ପାରେ । ଆସାମୀର ମୃତ୍ୟୁ-ପ୍ରକ୍ରିୟା ସହିତ ପ୍ରତ୍ୟକ୍ଷଭାବେ ଜଡ଼ିତ ହୋଇଥିବା ଯୋଗୁଁ, ସେମାନଙ୍କ ବକ୍ତବ୍ୟର ଯଥେଷ୍ଟ ଗୁରୁତ୍ୱ ରହିଛି ।

୧୯୯୦ ସାଲର ପ୍ରଥମାର୍ଦ୍ଧ ସୁଦ୍ଧା ୭୮ ଜଣ ଆସାମୀଙ୍କୁ ଫାଶୀ ଖୁଣ୍ଟିରେ ଚଢ଼ାଇଥିବା ଫାଶୀଆଳ ବିଷ୍ଣୁ ସଦାଶିବ ନେତାରେ ନିଜ ଅନୁଭୂତି ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି, ''ଫାଶୀଖୁଣ୍ଟକୁ ନେବାବେଳେ ଆସାମୀମାନେ ମୃତ୍ୟୁମୁଖରୁ ବଂଚିବା ପାଇଁ କେତେ ଆଳ କରନ୍ତି । ସେଗୁଡ଼ାକ ଦେଖିଲେ ମନକୁ କାଠ ଓ ଛାତିକୁ ପଥର କରିବା ଛଡ଼ା ଅନ୍ୟ ଉପାୟ ନାହିଁ । କେହି କେହି ଖୁବ୍ ଜୋରରେ କାନ୍ଦନ୍ତି । ଆଉ କେହି କେହି ବାଡ଼େଇ ଛାଟି ହୁଅନ୍ତି । ଆଉ କେତେକ ଖସି ପଳାଇବାକୁ ଅପଚେଷ୍ଟା କରନ୍ତି । କେହି କେହି ଶେଷ ମୁହୂର୍ତ୍ତରେ ଫାଶୀଆଳକୁ ଆଶ୍ରାବ୍ୟ ଭାଷାରେ ଗାଳିଗୁଲଜ କରନ୍ତି । ଆଉ କୌଣସି ଆସାମୀ ଘାତକର ଗୋଡ଼ ହାତ ଧରି ନେହୁରା ହେଉଥାଏ– 'ମତେ ଏଇ ଥରକ ପାଇଁ ଛାଡ଼ିଦିଅ ! ମୁଁ ଆଉ ଜମା ଏ ଭଳି ଭୁଲ୍ କରିବି ନାହିଁ । –ଏହି ସବୁ କଥା ସେ ସମୟରେ ଶୁଣିଲେ ଛାତି ଭିତରଟା ଦୁହିଁ ହୋଇଯାଏ । ସେମାନଙ୍କୁ ବୋଧ ଦେବା ଭଳି ପାଟିରେ ଜୋର ଭାଷା ପାଏ ନାହିଁ । ସେଇ ଆସାମୀମାନଙ୍କୁ ମୁଁ କହିଦିଏ ଯେ 'ମୁଁ ଗୋଟିଏ ମାମୁଲି ମଣିଷ । ତମ ଜୀବନରକ୍ଷା କରିବା ମୋ ହାତରେ ନାହିଁ । ଅଦାଲତର ଆଦେଶ ପାଳନ କରିବା ଛଡ଼ା ମୋର କୌଣସି ଉପାୟ ନାହିଁ ।' କିନ୍ତୁ କେହି କେହି ଆସାମୀ କୁହନ୍ତି– ଭାଇ ! କେମିତି ହେଲେ ବି ବଂଚାଅ ।' (ଇଲଷ୍ଟ୍ରେଟ୍‌ଟେଡ଼ ଓ୍ୱିକ୍‌ଲୀ ଅଫ୍ ଇଣ୍ଡିଆ : ସମ୍ବାଦ)

ପେଶାଦାର ଫାଶିଆଳ ନେତାରେ ଆହୁରି କହନ୍ତି, ''ମୁଁ ପ୍ରତ୍ୟେକ ଥର ଆସାମୀକୁ ଫାଶୀ ଦେବା ପରେ ଗୋଟିଏ ଧର୍ମ ସଂକଟରେ ପଡ଼େ । ବିବେକର ଦଂଶନରେ କେଇ ଘଣ୍ଟା ଗୁମ୍ ମାରି ରହିଯାଏ– କେତୋଟି ମୁହୂର୍ତ୍ତ ପୂର୍ବରୁ ମୁଁ ଯାହା ସାଥିରେ ଗପୁଥିଲି, ତାର ଶବକୁ ଫାଶୀଖୁଣ୍ଟରେ ମୁଁ ମୋ ସାମନାରେ ଠିଆ କରାଏ । ଆଉ ଏହି ସମୟରେ ମୋ ମୁଣ୍ଡରେ ସୃଷ୍ଟି ହେଉଥିବା ମାନସିକ ଦ୍ୱନ୍ଦ୍ୱ କୁହୁଳି ଉଠୁଥାଏ । ପ୍ରତ୍ୟେକ ଥର ଫାଶୀ ଦେବାକୁ ମୁଁ ପଚାଶ ଟଙ୍କା ପାଏ । ଆଉ ସେ ଟଙ୍କାକୁ ମୁଁ ଦୁଃଖୀରଙ୍କିକୁ ବାଣ୍ଟିଦିଏ । ଏହି ଜଘନ୍ୟ କାମ ପାଇଁ ମତେ ଯଦି କୋଟିଏ ଟଙ୍କା ଦିଆଯାଏ, ତାହାହେଲେ ସେଥିରୁ ଗୋଟିଏ ପଇସା ବି ମୁଁ ନିଜ ପରିବାର ପିଛାରେ ଖର୍ଚ୍ଚ କରିବି ନାହିଁ । ସେ ସବୁ ଟଙ୍କା ମୁଁ ଦୀନ ଦରିଦ୍ରକୁ ବାଣ୍ଟି ଦିଏ । ମୋର ଟଙ୍କା ଦରକାର । କିନ୍ତୁ ଏହି ଫାଶିଆଳ- ଭତ୍ତାକୁ ମୁଁ ନିଜ ପାଇଁ ଖର୍ଚ୍ଚ କରି ପାରିବି ନାହିଁ.. ମୋ ପୂର୍ବରୁ ଆମ ବଂଶର କେହି କେବେ ଫାଶିଆଳ ହୋଇ ନ ଥିଲେକି ମୋ ପରେ ମଧ୍ୟ ମୋର ଦୁଇ ପୁଅକୁ ସେଇ କାମ କରିବାକୁ ମୁଁ ଆଦୌ ସୁଯୋଗ ଦେବି ନାହିଁ ।''

ଥରେ ନେତାରେଙ୍କୁ ଯେତେବେଳେ ପଚରା ଯାଇଥିଲା, ''ତମେ ଅବସର ଗ୍ରହଣ କରିବା ପୂର୍ବରୁ ଶହେ ଜଣ ଆସାମୀକୁ ଫାଶୀରେ ଚଢ଼େଇ ପାରିବ କି ?'' ତାର ଉତ୍ତରରେ ସେ ଜଣାଇଥିଲେ ''ଏଭଳି ଗୋଟିଏ ଜାନ୍ତବ ରେକର୍ଡ଼ର ଅଧିକାରୀ ହେବାକୁ ମୁଁ ଆଦୌ ଚାହୁଁ ନାହିଁ.. ମୃତ୍ୟୁଦଣ୍ଡ ପରିବର୍ତ୍ତେ ଆଜୀବନ କାରାଦଣ୍ଡ କିମ୍ବା ଅର୍ଥଦଣ୍ଡ ଦିଆଯିବା ଉଚିତ । ଏ

ବାବଦରେ ମୁଁ ସରକାରଙ୍କୁ ତିନି ତିନି ଥର ଚିଠି ଲେଖି ମୋ ମତ ଜଣାଇଛି । ଜଣେ ଲୋକ ଅନ୍ୟ ଜଣକୁ ହତ୍ୟା କଲେ, ତାର ନିଜ ଜୀବନଟି ଯାଉଛି । କିନ୍ତୁ ଏ ଭଳି ହେବା ସତ୍ତ୍ୱେ କଣ ଅପରାଧ କମିଯାଉଛି ନା ହତ୍ୟାକାଣ୍ଡ କମିଯାଉଛି ? ତେଣୁ ଅପରାଧୀମାନଙ୍କୁ ପରିବର୍ତ୍ତନ କରିବାର ବାଟ ନିଆରା ।''

ବର୍ତ୍ତମାନ ଆଉ ଜଣେ ଫାଶିଆଳ ଉପରେ ଆଲୋକପାତ କରାଯାଉ । ତାର ନାଁ ହେଉଛି ନଟ ମଲ୍ଲିକ । ଏକଦା ତାର ବାପା ଶିବୁ ଡମ ଘାତକର କାର୍ଯ୍ୟ କରୁଥିଲା । ଯାହାହେଉ, ନଟ ମଲ୍ଲିକ ମୃଣାଳ ସେନଙ୍କ ''ମୃଗୟା'' ଚଳଚ୍ଚିତ୍ରରେ ପୂର୍ବରୁ ଘାତକର ରୋଲ୍ କରିଥିଲା । ସେ ଚନ୍ଦ୍ରନାଥ ବଣିକକୁ ଫାଶୀ ଖୁଣ୍ଟରେ ଝୁଲାଇବା ଦାୟିତ୍ୱ ଗ୍ରହଣ କରିବା ବେଳେ ସରକାରଙ୍କୁ ଜଣାଇଲା, ''କେହି ଫାଶୀ ଦେବାବାଲା ମିଳୁ ନାହିଁ ବୋଲି ମୁଁ ସେ କାର୍ଯ୍ୟ କରିବାକୁ ପ୍ରସ୍ତୁତ । ମାତ୍ର ସେଥିପାଇଁ ମୁଁ କିଛି ପଇସା ପତ୍ର ଗ୍ରହଣ କରିବି ନାହିଁ ।''

ଘାତକ ନଟ ମଲ୍ଲିକର ଏହି ସ୍ୱୀକାରୋକ୍ତିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ, ଫାଶୀଦଣ୍ଡକୁ କାର୍ଯ୍ୟକାରୀ କରିବା ଜଘନ୍ୟ, ଅପ୍ରୀତିକର ଓ ଯନ୍ତ୍ରଣାଦାୟକ । ଏହି ପ୍ରକାର ରାଜକାର୍ଯ୍ୟ ବା କର୍ତ୍ତବ୍ୟ ଯାହାକୁ ସଂପାଦନ କରିବାକୁ ପଡୁଛି, ସେ ନିଜ ଅନ୍ତରରେ ଖୁବ ଅଶାନ୍ତ ଓ ଅସନ୍ତୁଷ୍ଟ ।

ଏଠାରେ ସ୍ମରଣ କରାଇ ଦିଆଯାଇ ପାରେ ଯେ, ଆମେ ସମସ୍ତେ ମୃତ୍ୟୁକୁ ଗୋଟିଏ ସରିଅସ୍ ଘଟଣା ବୋଲି ବିବେଚନା କରିଥାଉଁ । ମୃତ୍ୟୁ-ଭାବନା ଆମ ମନରେ ଭୀଷଣ ଭୟ ସଂଚାର କରିଥାଏ । ଏହି ମୃତ୍ୟୁ ଆମ ନିକଟକୁ ରୋଗ, ବ୍ୟାଧି, ବାର୍ଦ୍ଧକ୍ୟ କିମ୍ବା ଆତ୍ମହତ୍ୟା, ପ୍ରାଣଦଣ୍ଡ, ହତ୍ୟାକାଣ୍ଡ ଇତ୍ୟାଦି ବିଭିନ୍ନ ପ୍ରକାର କାରଣ ବା ଘଟଣା ମଧ୍ୟରୁ କୌଣସି ଏକ ଉପାୟରେ ଆସିଥାଏ । ପୁଣି ମୃତ୍ୟୁର କରାଳ ରୂପ ମଣିଷର ବିଭିନ୍ନ କାର୍ଯ୍ୟ କଳାପ, କଳା ସଂସ୍କୃତିର ବିବିଧ ବିଷୟବସ୍ତୁ ଓ ବିଧିବିଧାନ ମାଧ୍ୟମରେ ଦୃଷ୍ଟି ଗୋଚର ହୋଇପାରେ । ତେବେ ଏହା ଯେ କୌଣସି ଅବସ୍ଥାରେ ବା ପରିସ୍ଥିତିରେ ଦେଖା ଦେଉ ନାଁ କାହିଁକି—ଏହାର ଗୁରୁତ୍ୱ ଓ ପ୍ରାଧାନ୍ୟ ନିଶ୍ଚୟ ବଜାୟ ରହିଥାଏ ।

ପ୍ରକୃତରେ ଆମେ ଯଦି ମରିବାକୁ ଯାଉଥିବାବେଳେ ଅନ୍ୟ କେହି ଆମୋଦିତ ହୁଏ କିମ୍ବା ଖୁସୀ ଆନନ୍ଦରେ ମାତେ, ଆମେ ତାକୁ ପରମ ଶତ୍ରୁ ବୋଲି ବିବେଚନା କରୁ । ଏହି ବିଷୟଟି କିପରି ସଙ୍କଟଜନକ ପରିସ୍ଥିତି ସୃଷ୍ଟି କରିପାରେ, ତାର ଗୋଟିଏ ଦୃଷ୍ଟାନ୍ତ ଆମେ ଉଲ୍ଲେଖ କରି ପାରିବା । ଅବଶ୍ୟ ଏହି ମୃତ୍ୟୁଟି ସତ ନୁହେଁ; ମିଛି ମିଛିକା— କାରଣ ଏହା ବାସ୍ତବ ଜୀବନ ସହିତ ସଂପର୍କିତ ନ ହୋଇ ଗୋଟିଏ ନାଟକ ସହିତ ସଂପୃକ୍ତ । କିନ୍ତୁ କଳା-ଜଗତ ଆମ ପ୍ରତ୍ୟକ୍ଷ ଜୀବନର ଏକ ପ୍ରତିଫଳନ ହୋଇଥିବା ଯୋଗୁଁ ନାଟକରେ ଘଟିଥିବା ଘଟଣାକୁ ଅବାସ୍ତବ ବା ଅସତ୍ୟ ବୋଲି କହି ଏଡ଼ାଇଦେଇ ହେବନାହିଁ ।

ଉକ୍ତ ଘଟଣାଟି ୧୯୮୮ ସାଲରେ ଇଟାଲୀରେ ଘଟିଥିଲା । ସେତେବେଳେ ସେକ୍ସପିଅରଙ୍କ ''ମ୍ୟାକ୍‌ବେଥ'' ନାଟକ ମଞ୍ଚସ୍ଥ ହେଉଥାଏ । ନାଟକଟି ଏତେ ପ୍ରସିଦ୍ଧି ଲାଭ କରିଥିଲା ଯେ, ପ୍ରେକ୍ଷାଳୟ ଦର୍ଶକଙ୍କ ଦ୍ୱାରା ଭରପୂର ହୋଇ ଯାଇଥିଲା । ନାଟକ ଚାଲିଥିବା ବେଳେ ବହୁ ପ୍ରତୀକ୍ଷିତ ମୃତ୍ୟୁଦୃଶ୍ୟଟି ପହଞ୍ଚିଲା । ଦର୍ଶକ ବୃନ୍ଦ ବହୁ ଆଶା, ଆକାଙ୍‌କ୍ଷା ଓ ଉତ୍‌କଣ୍ଠା ସହିତ ଏହି ଦୃଶ୍ୟଟି ଉପଭୋଗ କରିବା ପାଇଁ ଉଦ୍‌ଗ୍ରୀବ ହୋଇ ବସିଥାନ୍ତି । ନାୟକ ମହାଶୟ ମଧ ଏହି ଦୃଶ୍ୟଟିରେ ନିଜର ଶ୍ରେଷ୍ଠତମ ଅଭିନୟ-କଳା ପ୍ରଦର୍ଶନ କରି ଦର୍ଶକ ମାନଙ୍କୁ ବିମୋହିତ କରିଦେବା ପାଇଁ ଆଶାବାନ୍ ।

କିନ୍ତୁ ଦୁର୍ଭାଗ୍ୟବଶତଃ ଅନୁକୂଳରୁ ବିଲେଇ ଛିଙ୍କିଦେବା ଭଳି, ଏହି ମୃତ୍ୟୁ-ଦୃଶ୍ୟର ଅଭିନୟ ଆରମ୍ଭ ହେବା ବେଳକୁ ନାୟକ ମଞ୍ଚ ଉପରୁ ଲକ୍ଷ୍ୟ କଲେ ଯେ, ଜଣେ ଦର୍ଶକ ନିଜ ଆସନରେ ଆରାମରେ ଘୁଙ୍ଗୁଡ଼ି ମାରି ଶୋଇଛି ଓ ଅନ୍ୟ ଜଣେ ଦର୍ଶକ ତାକୁ ଦେଖି ଖୁବ୍ ଜୋରରେ ହସିବାରେ ମାତିଛି । ମୃତ୍ୟୁ ପରି ଏକ ସିରିଅସ୍ ବିଷୟ ମଞ୍ଚସ୍ଥ ହେବାକୁ ଥିବାବେଳେ ଦର୍ଶକମାନଙ୍କର ଏତାଦୃଶ ଦାୟିତ୍ୱହୀନ ବ୍ୟବହାର ଯୋଗୁଁ ନାୟକ ଅତିଶୟ କ୍ଷୁବ୍ଧ ହେଲେ । ଯେଉଁ ଦର୍ଶକମାନେ ମୃତ୍ୟୁଦୃଶ୍ୟର ଗାମ୍ଭୀର୍ଯ୍ୟ ଓ ଗୁରୁତ୍ୱ ବୁଝିପାରୁ ନାହାନ୍ତି, ସେହି ଅପାତ୍ର ଓ ଅପଦାର୍ଥମାନଙ୍କୁ ନାଟକ ପ୍ରଦର୍ଶନ କରିବା ଅନୁଚିତ ବୋଲି ମନେ କରି ସେ ବିତୃଷ୍ଣାର ସହିତ ମଞ୍ଚ ଛାଡ଼ି ଚାଲିଗଲେ ।

ପ୍ରେକ୍ଷାଳୟରେ ଏହା ହଇଚଇ ସୃଷ୍ଟି କଲା । ନାଟକର ଆୟୋଜକମାନେ ନାୟକଙ୍କୁ ଯେତେ ଯାହା ବୁଝାସୁଝା କରାଇଲେ ସୁଦ୍ଧା, ସେ ମଞ୍ଚ ଉପରକୁ ଆଉ ଫେରିଲେ ନାହିଁ । 'ମୃତ୍ୟୁ' ମାନେ ହିଁ ମୃତ୍ୟୁ —ଏହା ରଂଗଭୂମିରେ ହେଉ କିମ୍ୱା ଯୁଦ୍ଧ ଭୂମିରେ ହେଉ କିମ୍ୱା ନିତିଦିନିଆ ଦୁନିଆରେ ହେଉ— ଏହାର ଗୁରୁତ୍ୱ କେଉଁ କ୍ଷେତ୍ରରେ ମଧ କମ୍ ନୁହେଁ । ଯେ କୌଣସି ପରିସ୍ଥିତିରେ ସୁଦ୍ଧା ମୃତ୍ୟୁପ୍ରସଙ୍ଗକୁ ହସି ଉଡ଼ାଇ ଦେବା, ଟାହି ଟାପରା କରିବା କିମ୍ୱା ହାଲୁକା ଭାବେ ବିଚାର କରିବା ଏକ ଅମାନୁଷିକ ମନୋଭାବର ପରିଚୟ ଦିଏ । ତେଣୁ ଇଟାଲୀୟ ଅଭିନେତା ଯେଉଁ ତୀବ୍ର ପ୍ରତିକ୍ରିୟା ପ୍ରକାଶ କଲେ, ତାହା ଯଥାର୍ଥ ।

ବାସ୍ତବିକ ମଣିଷର ମରଣ ଏକ ମାମୁଲି ଘଟଣା ନୁହେଁ । ଏହି ଦୃଷ୍ଟିରୁ ମୃତ୍ୟୁଦଣ୍ଡ ବିଧାନରେ ଅତ୍ୟଧିକ ସତର୍କତା ଓ ସଂଯମ ରକ୍ଷା କରିବା ବିଧେୟ । ଏମିତିକି ଯେଉଁମାନେ ଜଘନ୍ୟ ଅପରାଧୀ ବୋଲି ଆମେ ଶତକଡ଼ା ଶହେ ଭାଗ ନିଶ୍ଚିତ, ସେମାନଙ୍କ କ୍ଷେତ୍ରରେ ମଧ ମୃତ୍ୟୁଦଣ୍ଡ ପ୍ରୟୋଗ କରିବା ବେଳେ ଆମକୁ ଶହେ ଥର ଚିନ୍ତା କରିବାକୁ ପଡ଼ିବ । ଏହି ପ୍ରସଙ୍ଗରେ ୧୭୯୩ରେ ଗିଲୋଟିନ ଦ୍ୱାରା ମୁଣ୍ଡକାଟ ହୋଇ ମୃତ୍ୟୁବରଣ କରିଥିବା ଫ୍ରାନ୍ସର ରାଜା ଷୋଡ଼ଶ ଲୁଇଙ୍କ ବିଷୟ ବିଚାର କରାଯାଉ ।

ଫରାସୀ ରାଷ୍ଟ୍ରବିପ୍ଳବର ଦୁଇ ଶତ ବର୍ଷ ପୂର୍ତ୍ତି ଉପଲକ୍ଷେ ଗୋଟିଏ ମକ୍ କୋର୍ଟ ବା ବ୍ୟଙ୍ଗ-ଅଦାଲତ ୧୯୮୮ ସାଲରେ ଫ୍ରାନ୍ସରେ ଟେଲିଭିଜନ ଦ୍ୱାରା ପ୍ରଦର୍ଶିତ ହୋଇଥିଲା । ଏଥିରେ ରାଜା ଷୋଡ଼ଶ ଲୁଇଙ୍କ ମୃତ୍ୟୁଦଣ୍ଡ ସପକ୍ଷରେ ଜଣେ ଓକିଲ ଓ ବିପକ୍ଷରେ ଆଉ ଜଣେ ଓକିଲ ପ୍ରବଳ ଯୁକ୍ତିତର୍କ କଲେ । ପ୍ରକାଶ ଥାଉକି, ଓକିଲ ଭୂମିକାରେ ଅବତୀର୍ଣ୍ଣ ହୋଇଥିବା ଏଇ ଦୁଇ ଜଣ ଅଭିନେତା ପ୍ରକୃତରେ ଫ୍ରାନ୍ସର ଦୁଇ ଜଣ ପ୍ରଖ୍ୟାତ ଟାଣୁଆ ଓକିଲ । ଏହି ବାଦାନୁବାଦ ବେଳେ "ରାଜା ଲୁଇ" ଭୂମିକାରେ ଅଭିନୟ କରୁଥିବା ଅଭିନେତା ନିଜ ପକ୍ଷ ସମର୍ଥନ କରି ପଦେ କଥା ମଧ କହି ନଥିଲେ ଓ ସଂପୂର୍ଣ୍ଣ ନୀରବ ରହିଥିଲେ । ଏହା ଦ୍ୱାରା ଟେଲିଭିଜନ-ଦର୍ଶକମାନେ ରାଜାଙ୍କ ସଂପର୍କରେ ନିରପେକ୍ଷ ମତ ଦେଇ ପାରିବେ ବୋଲି ବିଶ୍ୱାସ କରାଯାଉଥିଲା ।

ନାଟକ ପ୍ରଦର୍ଶନ ଶେଷ ହେବା ପରେ ଦର୍ଶକମାନଙ୍କ ମତାମତ ଜାଣିବା ପାଇଁ ଟେଲିଫୋନ ଓ କମ୍ପ୍ୟୁଟର ଦ୍ୱାରା ଭୋଟ ନିଆଗଲା । ଏଥିରୁ ଜଣାଗଲା ଯେ, ଶତକଡ଼ା ୫୫ ଭାଗ ଭୋଟଦାତା ରାଜା ଲୁଇ ନିରପରାଧୀ ବୋଲି ମତ ବ୍ୟକ୍ତି କଲେ; ଆଉ ୧୭.୫ ଭାଗ ଦର୍ଶକ ରାଜା ଲୁଇଙ୍କୁ ପ୍ରାଣଦଣ୍ଡ ପରିବର୍ତ୍ତେ ଦେଶାନ୍ତର-ଦଣ୍ଡ ମିଳିବା ଉଚିତ ବୋଲି ଜଣାଇଥିଲେ ।

ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଘଟଣା ଉପରେ ସଂପ୍ରତି ଫ୍ରାନ୍ସର ଜନସାଧାରଣ ଯେଉଁ ନରମ ମନୋଭାବ ପ୍ରଦର୍ଶନ କରିଛନ୍ତି– ତାହା ବେଶ୍ କୌତୁହଳଜନକ । ଏହି ପ୍ରସଙ୍ଗରେ ଆମ ମନରେ କିଛି ମାତ୍ରାରେ ସନ୍ଦେହ ଜାତ ହେଉଛି :- ରାଜା ଲୁଇଙ୍କୁ ହତ୍ୟା କରି ତତ୍କାଳୀନ ଫ୍ରାନ୍ସ ବାସିନ୍ଦାମାନେ ଉପଯୁକ୍ତ ନ୍ୟାୟବିଧାନ କରିଛନ୍ତି କି ?

ଅବଶ୍ୟ ରାଜା ଲୁଇ ସେତେବେଳେ ବଂଚିଥିଲେ ଇତିହାସର ଗତି କେଉଁ ଦିଗକୁ ମୁହାଁଇଥାନ୍ତା ଆମେ ସେହି ବିଷୟରେ ନିଶ୍ଚିତ ନୋହୁଁ । ତେବେ ଆସନ୍ନ ମୃତ୍ୟୁଦଣ୍ଡରୁ ରକ୍ଷା ପାଇଥିବା ଅନ୍ୟ ଜଣେ ବ୍ୟକ୍ତି ବିଷୟରେ ଆମେ ଦୃଢ଼ତାର ସହିତ ଉଲ୍ଲେଖ କରି ପାରିବା, ଯାହାର କି ଏହି ଜୀବନ-ଦାନ ଯୋଗୁଁ ବିଶ୍ୱସାହିତ୍ୟ ଆଜି ଋଦ୍ଧିମନ୍ତ ହୋଇ ପାରିଛି । ଏହି ମହାମାନବ ଜଣକ ହେଉଛନ୍ତି ରୁଷୀୟ ଲେଖକ ଡଷ୍ଟୟଭିସ୍କି (୧୮୨୧-୮୧) ।

ରୁଷ୍ ସମ୍ରାଟ୍‌ଙ୍କ ବିରୋଧରେ ଡଷ୍ଟୟଭିସ୍କି ଷଡ଼ଯନ୍ତ୍ର କରିବା ଅଭିଯୋଗରେ ପ୍ରାଣଦଣ୍ଡାଦେଶ ପାଇଥିଲେ । ୨୨.୧୨.୧୮୪୯ ତାରିଖ ପ୍ରତ୍ୟୁଷରେ ଡଷ୍ଟୟଭିସ୍କିଙ୍କ ସମେତ କୋଡ଼ିଏ ଜଣ ରାଜନୈତିକ ବନ୍ଦୀଙ୍କୁ ସେଣ୍ଟ ପିଟର୍ସବର୍ଗର ଗୋଟିଏ ଛକଠାରେ ଏକତ୍ରିତ କରାଯାଇ ପ୍ରାଣଦଣ୍ଡ କାର୍ଯ୍ୟକାରୀ କରିବାକୁ ପ୍ରସ୍ତୁତି ଶେଷ ହୋଇଯାଇଥିଲା । ପ୍ରଥମ ଦଫାରେ ତିନି ଜଣଙ୍କ ଆଖିରେ ଅନ୍ଧପୁଟୁଳି ପିନ୍ଧାଇ ଖୁଣ୍ଟରେ ବାନ୍ଧି ଦିଆଗଲା ।

ତାପର ତିନି ଜଣିଆ ଦଳରେ ଡଷ୍ଟୟଭିସ୍କିଙ୍କ ସମେତ ଅନ୍ୟ ଦୁଇ ଜଣକୁ ଖୁଣ୍ଟ ଆଡ଼କୁ ନେଉଥିବା ବେଳେ ତାର୍ ମୃତ୍ୟୁଦଣ୍ଡ କୋହଳ କରିଥିବା ସମ୍ବାଦ ହଠାତ ଜଣେ ରାଜକର୍ମଚାରୀ ଦୌଡ଼ି ଆସି ଜଣାଇଲା । ହୁଏତ ସମ୍ବାଦ-ସରବରାହରେ ଆଉ କେଇ ସେକେଣ୍ଡ ବିଳମ୍ବ ହୋଇଥିଲେ, ଡଷ୍ଟୟଭିସ୍କି ଫାୟରିଂ ସ୍କାର୍ଡ଼ର ଗୁଳିମାଡ଼ରେ ପ୍ରାଣ ହରାଇଥାନ୍ତେ । ଯାହାହେଉ, ସୌଭାଗ୍ୟବଶତଃ ତାଙ୍କର ଏହି ଜୀବନ-ଦାନ ଫଳରେ ଆଜି ବିଶ୍ୱବାସୀ ''ହାଉସ୍ ଅଫ୍ ଦି ଡେଡ୍'' (୧୮୬୧), କ୍ରାଇମ୍ ଏଣ୍ଡ ପନିସ୍‌ମେଣ୍ଟ (୧୮୬୬) ପରି କାଳଜୟୀ କୃତିମାନ ପଢ଼ିବା ସୁଯୋଗ ପାଇଛନ୍ତି, ଯାହାକି ୧୮୪୯ ପରବର୍ତ୍ତୀତାଙ୍କ ସାଧନାର ଫଳ ।

ପ୍ରାଣଦଣ୍ଡର ଔଚିତ୍ୟ ଓ ଯଥାର୍ଥତା ସଂପର୍କରେ ବାଦବିସମ୍ବାଦ ବହୁ ଜ୍ଞାନୀ-ବିଜ୍ଞାନୀଙ୍କ ମଧ୍ୟରେ ବୌଦ୍ଧିକ ଝଡ଼ଝଞ୍ଜା ବର୍ତ୍ତମାନ ସୃଷ୍ଟି କରିଛି । କୁହାଯାଉଛି ଯେ, ପ୍ରେସିଡେଣ୍ଟ ବୁଶ୍‌ଙ୍କ ନିର୍ବାଚନ (୧୯୮୮) ଓ ଯୁକ୍ତରାଷ୍ଟ୍ରର ଅନ୍ୟକେତେକ ମହତ୍ତ୍ୱପୂର୍ଣ୍ଣ ଭୋଟ-ଇଲେକ୍ସନରେ (୧୯୯୦) ପ୍ରାଣଦଣ୍ଡ ଏକ ମୁଖ୍ୟ ନିର୍ବାଚନୀ ପ୍ରସଙ୍ଗ ହୋଇଛି । ତେଣୁ ଏହି ପରି ଏକ ବିବାଦୀୟ ବିଷୟ ଉପରେ ହଠାତ୍ ଚୂଡ଼ାନ୍ତ ନିଷ୍ପତ୍ତି ଗ୍ରହଣ କରିବା ଆମ ପକ୍ଷେ ସମୀଚୀନ ହୋଇ ନ ପାରେ । ତେବେ ଆମେ ଗୋଟିଏ ବିଷୟରେ ନିଶ୍ଚିତ ଯେ, ବର୍ତ୍ତମାନ ମୃତ୍ୟୁଦଣ୍ଡ ଭୋଗୁଥିବା ଆସାମୀମାନେ ଯେପରି ସଂପୂର୍ଣ୍ଣ ଆଶାଶୂନ୍ୟ ହୋଇ ଫାଶୀମଞ୍ଚକୁ ଚଢ଼ୁଛନ୍ତି, ତାହା ଅବଶ୍ୟ ଉଦ୍‌ବେଗଜନକ ।

ଏହି ମର୍ମରେ ଏମିତି ଏକ ଆଇନ୍ ବିଷୟରେ ସୂଚିତ କରାଯାଇ ପାରେ, ଯେଉଁଥିରେ ଉଲ୍ଲେଖ ଅଛିଯେ, ଜଣେ ଯଦି ଫାଶୀଖୁଣ୍ଟରେ ନ ମଲା, ତାହାହେଲେ ତାକୁ ମୁକ୍ତି ଦିଆଯିବ । ପ୍ରକାଶ ଥାଉକି, ଏହି ଆଇନ୍‌ଟି ଅଳ୍ପ କେତେକ ସ୍ଥାନରେ କାର୍ଯ୍ୟ କ୍ଷେତ୍ରରେ ପ୍ରୟୋଗ କରାଯାଉଛି । ୧୯୮୩ ସାଲରେ ତେହେରାନ୍‌ଠାରେ ୩୨ ବର୍ଷୀୟ ନାସେର କିଆନୀ ନାମକ ଜଣେ ହତ୍ୟାକାରୀକୁ ଫାଶୀଦଣ୍ଡରେ ଦଣ୍ଡିତ କରାଯାଇଥିଲା । ତାକୁ ଇସ୍‌ପାହାନ୍‌ର ଗୋଟିଏ ଜନଗହଳି ଛକରେ ଫାଶୀ ଦିଆଗଲା । ପ୍ରାୟ କୋଡ଼ିଏ ମିନଟ୍ ଫାଶୀଖୁଣ୍ଟରେ ଝୁଲିବା ପରେ ତାକୁ ମୃତ ବୋଲି ଭାବି ଫାଶୀ ଦଉଡ଼ିରୁ ଉଦ୍ଧାର କରାଯିବା ପରେ ପରେ ଡାକ୍ତର ଦେଖିଲେ ଯେ, ପୂର୍ବରୁ ନିଶ୍ଚଳ ରହିଥିବା କିଆନୀ ହଲଚଲ ହେଉଛି ! ତାପରେ ଡାକ୍ତରୀ ପରୀକ୍ଷାରୁ ଜଣା ପଡ଼ିଲା ଯେ, ସେ ପ୍ରକୃତରେ ମରି ନାହିଁ । ତେଣୁ ତାକୁ ଦୋଷମୁକ୍ତ ଘୋଷିତ କରାଗଲା ।

ଏଣିକି ଏମିତି ଏକ ଆଇନ ବିଶ୍ୱସାରା ପ୍ରଣୟନ କରାଯାଉ । ଏହାଦ୍ୱାରା ଅନ୍ତତଃ ଫାଶୀଦଣ୍ଡ ପାଇଥିବା ଅପରାଧୀମାନେ ଫାଶୀ ମଞ୍ଚ ଉପରକୁ ଚଢ଼ିବା ବେଳେ, ବଂଚିଯିବାର ଯତ୍‌କିଞ୍ଚିତ ଆଶା, ସେମାନଙ୍କ ମନରେ ଉଙ୍କି ମାରିବ । ନେତାରେ, ନଟ ମଲ୍ଲିକ ପରି

କୋମଳ ଘାତକମାନେ କୌଣସି ଫାଶୀ-ଆସାମୀର ଦୁଇ ହାତକୁ ପଛପଟେ ବାନ୍ଧି, ତାର ମୁହଁରେ କଳାକନା ଘୋଡ଼ାଇବା ବେଳେ, ତାକୁ ଭରସା ଦେବା ପାଇଁ କହି ପାରିବେ, ''ଆରେ ବାବୁ ! ଆମେ କେବଳ ଆମର କର୍ତ୍ତବ୍ୟ ପାଳନ କରୁଛୁ । ତେଣୁ ତତେ ବଞ୍ଚାଇ ପାରିବୁ ନାହିଁ । ....ସେମିତି ଅଦାଲତ ଆଖିରେ ଅନ୍ଧପୁଟୁଳି ବାନ୍ଧି ସତ୍ୟ ଓ ନ୍ୟାୟର ତରାଜୁରେ ତୋର ବିଚାର କରୁଛି ବୋଲି ତୋର ଜୀବନ ରକ୍ଷା କରିବାକୁ ସମର୍ଥ ହୋଇ ପାରିଲା ନାହିଁ । ରାଷ୍ଟ୍ରପତି ସମାଜର ହିତ ଦୃଷ୍ଟିରୁ ତୋର କ୍ଷମା ଯାଚିକାର ଅନ୍ତଃସାରଶୂନ୍ୟତା କେବଳ ଦେଖିଲେ ! ... ମାତ୍ର ଏଇ ସମସ୍ତଙ୍କ ଉପରେ ଅଛନ୍ତି ସର୍ବଶକ୍ତିମାନ ଈଶ୍ୱର, ଯିଏକି ତତେ ଜୀବନ ଦେଇଛନ୍ତି । ସେ ହିଁ ତୋର ଜୀବନ ରକ୍ଷା କରିବାକୁ ସମର୍ଥ । ସେ ଯଦି ତୋ ପ୍ରତି ପ୍ରସନ୍ନ ହେବେ, ତାହାହେଲେ ଏହି ଗଳା-ଫାଶରେ ଟଣ୍ଟି ଚିପି ହେଲେ ସୁଦ୍ଧା ତୁ ମରିବୁ ନାହିଁ । ଫାଶୀଖୁଣ୍ଟର ଲିଭର୍ ଯେତେ ପରଖି ଠିକ୍‌ଠାକ୍ କଲେ ମଧ, ତାହା ଅକାମୀ ହୋଇଯିବ.. ଏବଂ ଏହି ଅକାମୀ ଫାଶ ଯୋଗୁଁ ତୁ ରକ୍ଷା ପାଇଯିବୁ...''

ଯେତେ ଦିନ ପର୍ଯ୍ୟନ୍ତ ପ୍ରାଣଦଣ୍ଡ ବିଧାନର ବିଜ୍ଞତା ସଂପର୍କରେ ଚୂଡ଼ାନ୍ତ ସିଦ୍ଧାନ୍ତ ଗ୍ରହଣ କରିବା କଷ୍ଟସାଧ ହେଉଛି, ଅନ୍ତତଃ ସେତେ ଦିନ ଯାଏଁ ଏମିତି କିଛି ଆଶା ଓ ସମ୍ଭାବନା ଫାଶୀମଞ୍ଚରେ ଚଢୁଥିବା ଆସାମୀକୁ ଦିଆଯାଇ ପାରେ । ଏହା ଦ୍ୱାରା ସେ ମରଣ ମୁଖରୁ ବଞ୍ଚିଯାଉ ବୋଲି ଆମେ ଯୁକ୍ତି କରୁ ନାହୁଁ । ତେବେ ମରିବା ବେଳେ ସେ ଅନ୍ତତଃ ତାର ଘନ ମେଘାଚ୍ଛନ୍ନ ଭାଗ୍ୟ-ଆକାଶରେ ଆଶାର ସାମାନ୍ୟ ବିଦ୍ୟୁତ୍‌ଛିଟିକା ଖୋଜୁ ଖୋଜୁ ଶେଷ ନିଃଶ୍ୱାସ ଛାଡୁ— ଏତିକି କାମନା !



# ଏକ ପରୀକ୍ଷାଧୀନ ମନସ୍ତତ୍ତ୍ୱ ମତବାଦ

ହସ୍ତରେଖା, ସଂଖ୍ୟା ଓ ଗ୍ରହକ୍ଷେତ୍ରର ଚଳନକୁ ଭିତ୍ତି କରି ପ୍ରତିଷ୍ଠିତ ନିୟମାନୁସାରେ ମଣିଷର ଭବିଷ୍ୟତ ନିର୍ଣ୍ଣୟ କରାଯାଇଥାଏ । କିନ୍ତୁ ଏହି ପାରମ୍ପରିକ ପଦ୍ଧତି ବ୍ୟତୀତ ଅନ୍ୟ କୌଣସି କ୍ଷେତ୍ର ରହିଛିକି, ଯେଉଁଥିରୁ କି ଭବିଷ୍ୟତ ସଂପର୍କରେ କିଛି ସୂଚନା ମିଳିବ ? ଏହି ଅଣପାରମ୍ପରିକ କ୍ଷେତ୍ର କଣ ହୋଇପାରେ ? ଏହାର ପ୍ରକୃତରେ କୌଣସି ଭିତ୍ତି ରହିଛି କି ? ଏହି ପ୍ରଶ୍ନମାନ ବହୁ ଚିନ୍ତାଶୀଳ ବ୍ୟକ୍ତିଙ୍କ ମନକୁ ଆନ୍ଦୋଳିତ କରିଛି । ଏହି ସଂପର୍କରେ ଯଥାର୍ଥ ଉତ୍ତର ପାଇବା ପାଇଁ ସେମାନେ ନିଷ୍ଠାପର ଉଦ୍ୟମ ମଧ୍ୟ କରିଛନ୍ତି ।

ଆମେ ଜାଣୁ ଯେ, ସାହିତ୍ୟକାରମାନେ ନିଜର କଳ୍ପନା ଶକ୍ତି ଓ ଜ୍ଞାନ ଦ୍ୱାରା ପୁସ୍ତକମାନ ରଚନା କରିଥାନ୍ତି । କିନ୍ତୁ ବେଳେ ବେଳେ ଗୋଟିଏ ଗୋଟିଏ ପୁସ୍ତକରେ ଏମିତି ଭବିଷ୍ୟ-ବାର୍ତ୍ତା ନିର୍ଭୁଲ ଭାବେ ଲିପିବଦ୍ଧ ହୋଇଥାଏ ଯେ, ଏହା ଯେ କୌଣସି ପାଠକକୁ ଆଚମ୍ବିତ କରିଦିଏ । ଏହି ପ୍ରସଙ୍ଗରେ ୧୮୯୮ ସାଲରେ ମୋରଗାନ ରବର୍ଟସନ୍‌ଙ୍କ ଦ୍ୱାରା ରଚିତ ''ଦି ରେକ୍ ଅଫ ଦି ଟିଟାନ୍'' ଶୀର୍ଷକ ଉପନ୍ୟାସଟି ଉଲ୍ଲେଖଯୋଗ୍ୟ । ଏହି ଉପନ୍ୟାସର ବିଷୟବସ୍ତୁ ଟିଟାନ୍ ନାମକ ଗୋଟିଏ ବିଳାସପୂର୍ଣ୍ଣ ଜାହାଜ ଉପରେ କେନ୍ଦ୍ରିତ । ଟିଟାନ୍ ଜାହାଜଟି ଏପରି ଶକ୍ତ ଭାବେ ନିର୍ମିତ ଯେ, ଏହା ଦୁର୍ଘଟଣାମୁକ୍ତ ଓ ଅତି ନିରାପଦ ବୋଲି ସାଧାରଣତଃ ବିଶ୍ୱାସ କରାଯାଉଥିଲା । ତଥାପି ଆଟଲାଣ୍ଟିକ ମହାସାଗରରେ ପ୍ରଥମ ସମୁଦ୍ର ଯାତ୍ରା କରିବା ବେଳେ ଦୈବାତ୍ ଏହା ଗୋଟିଏ ଭାସମାନ ବରଫ-ପାହାଡ଼ ସହିତ ଧକ୍କା ଖାଇ ଚୁରମାର୍ ହୋଇଗଲା ଏବଂ ଏଥିରେ ଥିବା ଅମୂଲ୍ୟ ଧନ-ଜୀବନ ନିମିଷକ ମଧ୍ୟରେ ସମୁଦ୍ରର ଅତଳ ଗର୍ଭରେ ଲୁକ୍କାୟିତ ହୋଇଗଲା ।

ରବର୍ଟସନ୍‌ଙ୍କ ଉପନ୍ୟାସର ଉପରୋକ୍ତ ଲୋମହର୍ଷଣକାରୀ ବିଷୟସବସ୍ତୁ ସେତେବେଳେ ବହୁ ପାଠକର ଦୃଷ୍ଟି ଆକର୍ଷଣ କରିଥିଲା । କିନ୍ତୁ ସେମାନେ ଭାବି ନେଇଥିଲେ ଯେ, ଏହା ହେଉଛି ଉପନ୍ୟାସକାରଙ୍କ କଳ୍ପନା-ବିଳାସ ଏବଂ ଏହି ଦୁର୍ଘଟଣା ପଛରେ ସେମିତି କୌଣସି ସତ୍ୟତା ରହି ନପାରେ । କ୍ରମେ କ୍ରମେ ଏହି ଉପନ୍ୟାସ ପାଠକର ମାନସପଟରୁ ଲିଭିଗଲା ।

କିନ୍ତୁ ଏହି ଉପନ୍ୟାସ-ରଚନାର ଚଉଦ ବର୍ଷ ପରେ ଅର୍ଥାତ୍ ୧୯୧୨ ମସିହାରେ ବାସ୍ତବ କ୍ଷେତ୍ରରେ ଏକ ଅବିସ୍ମରଣୀୟ ଜାହାଜ-ଦୁର୍ଘଟଣା ଘଟିବା ପରେ ବିସ୍ମୃତି-ଗର୍ଭରୁ

ରବର୍ଟସନ୍‌ଙ୍କ ଉପନ୍ୟାସ ପୁନର୍ଜୀବିତ ହୋଇ ଉଠିଲା । ପ୍ରକୃତ ବିଷୟ ହେଉଛି ଯେ, ୧୯୧୨ ସାଲରେ ଟିଟାନିକ୍ ନାମକ ଗୋଟିଏ ଅତି ମଜବୁତ ଓ ଆରାମଦାୟକ ଜାହାଜ ନିର୍ମାଣ କରାଗଲା ଏବଂ ଏହି ନିର୍ଭରଯୋଗ୍ୟ ଜାହାଜଟି ଆଟଲାଣ୍ଟିକ୍ ମହାସାଗରରେ ୧୬.୪.୧୯୧୨ ତାରିଖରେ ପ୍ରଥମ ଯାତ୍ରା କରୁଥିବା ବେଳେ ଦୁର୍ଭାଗ୍ୟବଶତଃ ଗୋଟିଏ ତୁଷାର-ଗିରି ଦ୍ୱାରା ପ୍ରଚଣ୍ଡ ଭାବେ ଆଘାତ ପ୍ରାପ୍ତ ହୋଇ ଅଚିରେ ସଲିଳ ସମାଧି ଲଭିଲା ।

ସେତେବେଳେ ସମସ୍ତେ ଅତି ଆଶ୍ଚର୍ଯ୍ୟର ସହିତ ଆଲୋଚନା ଆରମ୍ଭ କରିଦେଲେ – ରବର୍ଟସନଙ୍କ କାଳ୍ପନିକ ଉପନ୍ୟାସର ବିଷୟବସ୍ତୁ ବାସ୍ତବ କ୍ଷେତ୍ରରେ ଘଟିଲା କିପରି ? ଅନୁସନ୍ଧିତ୍ସୁମାନେ ଉପନ୍ୟାସର ବର୍ଣ୍ଣନା ଓ ପ୍ରକୃତ ଘଟଣା ମଧ୍ୟରେ ରହିଥିବା ସାମଞ୍ଜସ୍ୟମାନ ଅନୁଧ୍ୟାନ କରି ନିମ୍ନ ତଥ୍ୟାବଳୀ ସଂଗ୍ରହ କରିଥିଲେ

| | ଉପନ୍ୟାସବର୍ଣ୍ଣିତ କାଳ୍ପନିକ ଟିଟାନ୍ ଜାହାଜ | ବାସ୍ତବକ୍ଷେତ୍ରରେ ବ୍ୟବହୃତ ଟିଟାନିକ ଜାହାଜ |
|---|---|---|
| ଦୁର୍ଘଟଣା- ସମୟ | ଏପ୍ରିଲ | ଏପ୍ରିଲ |
| ଜାହାଜର ଯାତ୍ରୀ ସଂଖ୍ୟା... | ୩,୦୦୦ | ୨,୨୦୭ |
| ଲାଇଫବୋଟର ସଂଖ୍ୟା... | ୨୪ | ୨୦ |
| ଜାହାଜର ଓଜନ (ଟନ୍) | ୭୫,୦୦୦ | ୬୬,୦୦୦ |
| ଜାହାଜର ଦୈର୍ଘ୍ୟ (ଫୁଟ) | ୮୦୦ | ୮୮୨.୫ |
| ପ୍ରପେଲେର୍‌ର ସଂଖ୍ୟା | ୩ | ୩ |
| ଦୁର୍ଘଟଣାକାଳୀନ ବେଗ(ନଟ୍) | ୨୫ | ୨୩ |

*(ଦ୍ରଷ୍ଟବ୍ୟ: ପ୍ରଫେସି ଇନ୍ ଆୱାର ଟାଇମ୍; ପୃଷ୍ଠା ୧୧)*

ଉପରୋକ୍ତ ତାଲିକାରୁ ଅନୁମାନ କରି ହେଉଛି ଯେ, ବାସ୍ତବ ଘଟଣା ସହିତ ଉପନ୍ୟାସକାର ରବର୍ଟସନ୍‌ଙ୍କ ଅଗ୍ରୀମ ବୃତ୍ତାନ୍ତ ମୋଟାମୋଟି ଭାବେ ମେଳ ଖାଉଛି । ଏହି ପରିପ୍ରେକ୍ଷୀରେ ମନରେ ସ୍ୱତଃ ପ୍ରଶ୍ନ ଉଠେ; ରବର୍ଟସନ୍ ଭବିଷ୍ୟତ ସଂପର୍କରେ ଆଗତୁରା ସୂଚନା କିପରି ପାଇଲେ ?

ଅବଶ୍ୟ ଆମ ଭିତରେ ଏମିତି ବି ଲୋକ ଥାଇ ପାରନ୍ତି, ଯେଉଁମାନେ କହିବେ ଯେ, ବେଳେ ବେଳେ ପୋକ କାଟୁ କାଟୁ ଚାରି ଅକ୍ଷର ହୋଇଯାଏ । ସେଇ ନ୍ୟାୟରେ ରବର୍ଟସନ ଉପନ୍ୟାସଟିଏ ଲେଖୁଲେଖୁ ଆକସ୍ମିକ ଭାବେ ତାର ବିଷୟବସ୍ତୁ ବାସ୍ତବ କ୍ଷେତ୍ରରେ ରୂପାୟିତ ହୋଇଗଲା । ଏହି ପ୍ରକାରର ଅଚାନକ ସଂଯୋଗ ପଛରେ ସେମିତି କୌଣସି ହେତୁ ନାହିଁ ।

ସେମାନେ ପୁଣି ଯୁକ୍ତି କରି ପାରନ୍ତି ଯେ, ଯଦି ଉପନ୍ୟାସରୁ ଭବିଷ୍ୟତର ରୂପରେଖ ମିଳୁଥାନ୍ତା, ତାହାହେଲେ ଅଦ୍ୟାବଧି ଯେଉଁ ଅସଂଖ୍ୟ ଉପନ୍ୟାସ ଲେଖାଯାଇଛି, ସେଥିରୁ ଆମେ ବିଭିନ୍ନ ଘଟଣାର ଭବିଷ୍ୟତ ସଂପର୍କରେ ବହୁ ତଥ୍ୟ ଆଗତୁରା ଜାଣି ପାରିଥାନ୍ତେ ।

ବାସ୍ତବିକ ମଣିଷ ଭବିଷ୍ୟ-ଗଣନା କରି ପାରିବ ନାହିଁ— ଏହି ମୂଳ ପ୍ରଶ୍ନଉପରେ ଦୀର୍ଘ ଦିନ ଧରି ବାଦାନୁବାଦ ଚାଲି ରହିଛି । ଏହି ପ୍ରଶ୍ନଟି ଅସମାହିତ ରହିଥିବା ବେଳେ ଉପନ୍ୟାସରୁ ଭବିଷ୍ୟଜ୍ଞାନ ସଂପର୍କରେ ପ୍ରଶ୍ନ ଗୌଣ ମନେ ହୁଏ । ତେବେ ଭବିଷ୍ୟବାର୍ତ୍ତା ସଂପର୍କରେ ଯେ ପୂର୍ବ ସୂଚନା ପାଇ ହେବ—ତାରି ସପକ୍ଷରେ ବହୁ ଚିନ୍ତାଶୀଳ ମନୀଷୀ ମତ ବ୍ୟକ୍ତ କରିଛନ୍ତି । ତନ୍ମଧ୍ୟରେ ସୁଇଜରଲାଣ୍ଡର ମନୋଚିକିତ୍ସକ ପ୍ରଫେସର ସି.ଜି.ୟୁଙ୍ଗ ଅନ୍ୟତମ ।

ୟୁଙ୍ଗ୍‌ଙ୍କ ମତ ହେଉଛି ଯେ ମଣିଷର ମନରେ କେତେକ ଆର୍କିଟାଇପ୍ ବା ମୌଳିକ ଢାଞ୍ଚା ରହିଛି । ଯୁଗ ଯୁଗ ଧରି ମଣିଷ ଯେଉଁ ସବୁ ଅନୁଭୂତି ଦେଇ ଗତି କରିଛି, ତାକୁ ଭିତ୍ତି କରି ଏହି ଆର୍କିଟାଇପ୍‌ମାନ ଗଢ଼ି ଉଠିଛନ୍ତି । ଆର୍କିଟାଇପ୍‌ର ଅସ୍ତିତ୍ୱ ସଂପର୍କରେ ପ୍ରମାଣ କରିବା ପାଇଁ ଆମ ସ୍ୱପ୍ନକୁ ଉଦାହରଣ ଭାବେ ଗ୍ରହଣ କରି ପାରୁଁ । ଆମେ ସମସ୍ତେ ଯେଉଁ ବିଭିନ୍ନ ପ୍ରକାର ସ୍ୱପ୍ନ ଦେଖିଥାଉଁ, ତାରି ମଧ୍ୟରେ କେତେକ ନିର୍ଦ୍ଦିଷ୍ଟ ବିଷୟ ବା ବସ୍ତୁର ବହୁଳ ଭାବେ ପୁନରାବୃତ୍ତି ହୋଇଥାଏ । ଚତୁର ବୁଢ଼ା ବା ବୁଢ଼ୀ, କାଳଜୟୀ ମାତା, ଐନ୍ଦ୍ରଜାଲିକ ଶିଶୁ, ଶଠ ବ୍ୟକ୍ତି, ଗଛ ତଥା ''ବିଶ୍ୱବ୍ରହ୍ମାଣ୍ଡକୁ ପ୍ରତୀକ ଭାବେ ଦର୍ଶାଉଥିବା'' ମଣ୍ଡଳ ଏଇ ଶ୍ରେଣୀଭୁକ୍ତ । ଆମ ସ୍ୱପ୍ନମାନଙ୍କରେ ଏଇ ଧରଣର ଯେଉଁ ସାମଞ୍ଜସ୍ୟ ବା ସାର୍ବଜନୀନତା ବିଦ୍ୟମାନ, ସେଥିରୁ ଆର୍କିଟାଇପ୍‌ର ଆଭାସ ମିଳୁଛି । ମଣିଷର ଭବିଷ୍ୟତ ଜାଣିବା ପାଇଁ ନିମ୍ନ ବୃତ୍ତାନ୍ତରୁ ଏହାର ଭୂମିକା ଅସ୍ୱୀକାର କରାଯାଇ ନ ପାରେ ।

ଆମ ଶାରୀରିକ ସ୍ତରରେ ଶୃଙ୍ଖଳା ଓ ନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟ ରକ୍ଷା କରିବା ପାଇଁ ଜିନ୍ ଯେଉଁ ପ୍ରକାର ଭୂମିକା ଗ୍ରହଣ କରିଥାଏ, ଆମ ମାନସିକ ସ୍ତରରେ ନିର୍ଦ୍ଦିଷ୍ଟତା ରଖିବା ପାଇଁ ଉପରୋକ୍ତ ଆର୍କିଟାଇପ୍‌ର ମୌଳିକ ଢ଼ାଞ୍ଚାମାନ ସେଇ ପ୍ରକାର କାର୍ଯ୍ୟ ତୁଲାଇଥାନ୍ତି । ତେଣୁ ଶରୀରର ଜିନ୍ ଓ ମନର ଆର୍କିଟାଇପ୍ ମଧ୍ୟରେ ଯଥେଷ୍ଟ ସାମଞ୍ଜସ୍ୟ ଥିବା ଅନୁମେୟ । ବାସ୍ତବିକ ଏହି ମାନସିକ ମୌଳିକ-ଉପାଦାନମାନ ନୂଆଁ ନୂଆଁ ମାନସିକ ସ୍ତର ସୃଷ୍ଟି କରିବାରେ ସକ୍ଷମ ହୋଇଥାନ୍ତି । ଏହି ସର୍ଜନା ମଧ୍ୟରେ ଅନାଗତ ଭବିଷ୍ୟତର ଝାପ୍‌ସା ଚିତ୍ର ଅନ୍ତର୍ଭୁକ୍ତ ।

ତେବେ ଏହି ଆର୍କିଟାଇପ୍‌ମାନଙ୍କର କାର୍ଯ୍ୟ କରିବା ପଦ୍ଧତି କଣ ହୋଇପାରେ ? ଏହା ବୁଝାଇବା ପାଇଁ ୟୁଙ୍ଗ ଚିକିତ୍ସକମାନଙ୍କ ଦ୍ୱାରା ବ୍ୟବହୃତ ପେନ୍‌ସିଲିନ୍‌କୁ ଏକ ଦୃଷ୍ଟାନ୍ତ ଭାବେ

ଗ୍ରହଣ କରିଛନ୍ତି । ସାଧାରଣତଃ ଡାକ୍ତରମାନେ ବ୍ୟାକ୍ଟିରିଆ ଯୋଗୁଁ ସଂକ୍ରମଣ ଘଟିଥିଲେ ରୋଗୀକୁ ପେନ୍‌ସିଲିନ୍ ଦେଇଥାନ୍ତି । ଉକ୍ତ ପେନସିଲିନ୍ ଅଣୁମାନ ରୋଗୀର ବ୍ୟାକ୍ଟିରିଆ-କୋଷର କାନ୍ଥରେ ଥିବା ଅଣୁମାନଙ୍କ ସଂସ୍ପର୍ଶରେ ଆସନ୍ତି କିନ୍ତୁ ଏଇ ଦୁଇ ପ୍ରକାର ଅଣୁ ମଧ୍ୟରେ ସଂପୂର୍ଣ୍ଣ ସାମଞ୍ଜସ୍ୟ ନରହିବା କାରଣରୁ ସେମାନେ ଭାରସାମ୍ୟ ରକ୍ଷା କରି ପାରନ୍ତି ନାହିଁ । ଏହା ଦ୍ୱାରା ରୋଗ ଜାତ କରୁଥିବା ବ୍ୟାକ୍ଟୋରିଆର ମୃତ୍ୟୁ ଘଟେ ।

ଏଠାରେ ଲକ୍ଷ୍ୟ କରାଯାଇ ପାରେ ଯେ, ବ୍ୟାକ୍ଟେରିଆକୁ ମାରିବା ପାଇଁ ପେନସିଲିନ୍ ସିଧା ସଳଖ (Causal) କାର୍ଯ୍ୟ କରି ନଥାଏ । ଏକ ଆକସ୍ମିକ ପରିସ୍ଥିତି (କଣ୍ଡିନ୍‌ଜେଣ୍ଡ) ସୃଷ୍ଟି କରି ସେ ଏହି କାର୍ଯ୍ୟ ସିଦ୍ଧ କରିଥାଏ । ଠିକ୍ ଏଇ ପ୍ରକାରେ ଆର୍କିଟାଇପ୍ ନିଜେ ମାନସିକ ସ୍ତରରେ ଏକ ଦ୍ରବକ (କ୍ୟାଟାଲିଷ୍ଟ) ଭାବେ କାର୍ଯ୍ୟ କରେ, ଯାହା ଦ୍ୱାରା କି ମାନସିକ ଅନୁଭୂତିମାନ ଶୃଙ୍ଖଳାର ସହିତ ଉନ୍ମୁକ୍ତ ହୋଇ ଅଗ୍ରଗାମୀ ହୁଅନ୍ତି ଏବଂ ବାସ୍ତବ ଜଗତର ବିଭିନ୍ନ ଘଟଣା ମାଧ୍ୟମରେ ପ୍ରତିଫଳିତ ହୁଅନ୍ତି । ଏହି ମର୍ମରେ ଜିନ୍ ଓ ଆର୍କିଟାଇପ୍ ମଧ୍ୟରେ କିଛି ଅସାମଞ୍ଜସ୍ୟ ପରିଲକ୍ଷିତ ହୁଏ ।

ୟୁଙ୍ଗ୍‌ଙ୍କ ଏହି ମତବାଦରେ ମାନସିକ-ଜଗତ ଓ ବସ୍ତୁଜଗତ ମଧ୍ୟରେ ରହିଥିବା ଘନିଷ୍ଠ ସଂପର୍କ ବିଷୟ ଉତ୍‌ଥାପିତ ହୋଇଛି । ଉପଯୁକ୍ତ ମାନସିକ କ୍ରୀୟାଶୀଳତା ଦ୍ୱାରା ବସ୍ତୁଜଗତର ବିଗତ, ବର୍ତ୍ତମାନ ଓ ଆଗାମୀ ଦିଗମାନ ଉନ୍ମୋଚନ କରିବା ସମ୍ଭବ ବୋଲି ଏଥିରେ ଧାରଣା ଦିଆଯାଇଛି । କିନ୍ତୁ ଏହି ସଫଳତା ପାଇବା ପାଇଁ ବିଭିନ୍ନ ଆର୍କିଟାଇପ୍‌ର ଉପସ୍ଥିତି ସଂପର୍କରେ ୟୁଙ୍ଗ ଉଲ୍ଲେଖ କରିଛନ୍ତି । ଆର୍କିଟାଇପ୍‌ମାନ ପ୍ରତୀକଧର୍ମୀ ମୌଳିକ ଢାଞ୍ଚା ହୋଇଥିବା ଯୋଗୁଁ ଏମାନେ ବ୍ୟକ୍ତିର ସ୍ୱପ୍ନ ବା କଳ୍ପନା ମାଧ୍ୟମରେ ପ୍ରତିଭାତ ହୋଇଥାନ୍ତି । ତେବେ ଏମାନଙ୍କଠାରେ ବ୍ୟକ୍ତିଗତ ସମେତ ସାମୁହିକ ବା ଗଣ ଚରିତ୍ର ବେଶ୍ ସ୍ପଷ୍ଟ ।

ସ୍ୱପ୍ନ ବା କଳ୍ପନା ବ୍ୟତୀତ ଅନ୍ୟ କେତେକ କ୍ଷେତ୍ରରେ ଏମାନେ ଗ୍ରହନକ୍ଷତ୍ର, ହସ୍ତରେଖା, କପ୍‌ରେ ଚା'ପତ୍ର ଜମା ହେବାର ପ୍ରଣାଳୀ, ମେଣ୍ଢା-କଲିଜାର ଅବସ୍ଥା, ପକ୍ଷୀର ଉଡ଼ିବା ଶୈଳୀ ପରି ପାରମ୍ପରିକ ଭବିଷ୍ୟ-ଗଣନା ପଦ୍ଧତି ଉପରେ ପର୍ଯ୍ୟବସିତ ହୋଇଥାନ୍ତି । ଏଇ କଥା ସତ ଯେ, ହସ୍ତରେଖା, ଗ୍ରହନକ୍ଷତ୍ରର ଚଳନ ଇତ୍ୟାଦି ବିଷୟମାନଙ୍କ ସହିତ ମଣିଷ ଜୀବନର ପ୍ରେମ, ମୃତ୍ୟୁ, ବ୍ୟବସାୟ ଇତ୍ୟାଦି ଘଟଣାମାନଙ୍କର, ଆମ ବୋଧଗମ୍ୟ ହେବା ପରି, ପ୍ରତ୍ୟକ୍ଷ ସଂପର୍କ ନାହିଁ । ତେଣୁ ଏଇମାନଙ୍କୁ ଭିତ୍ତି କରି ଭବିଷ୍ୟତ ଗଣନାକୁ ଅବାନ୍ତର ବୋଲି କହି ଦେବାକୁ କେତେକ ବ୍ୟକ୍ତି ପଶ୍ଚାତ୍‌ପଦ ହୋଇ ନ ପାରନ୍ତି । ତଥାପି ଏଇ ସବୁ କୌଶଳମାନଙ୍କୁ ଉପଯୋଗୀ ଶକୁନ ଭାବେ ବର୍ତ୍ତମାନ ମଧ୍ୟ ଗ୍ରହଣ କରାଯାଉଛି । ହୁଏତ ଏହାର ରହସ୍ୟ ସହିତ ପରିଚିତ ନ ହୋଇ ଥିବା ଯୋଗୁଁ, ଆମେ ଅସ୍ୱସ୍ତିକର ମନେ କରୁଛୁ । ତଥାପି ଆମକୁ ମନେ ରଖିବାକୁ ହେବ ଯେ, "ରହସ୍ୟ ହେଉଛି

ଆମ ଅନୁଭୂତିର ସବୁଠାରୁ ସୁନ୍ଦର ବିଷୟ ବା ବସ୍ତୁ । ସମସ୍ତ ପ୍ରକାର ପ୍ରକୃତ କଳା ଓ ବିଜ୍ଞାନର ଏହା ହେଉଛି ଉତ୍ସ ।'' —ଆଇନ୍‌ଷ୍ଟାଇନ୍ (ମିଷ୍ଟରିସ୍ ଅଫ୍ ଦି ଅନ୍‌ଏକ୍ସପ୍ଲେଇନ୍‌ଡ) ତେଣୁ ପାରମ୍ପରିକ ଜ୍ୟୋତିଷ-ଶାସ୍ତ୍ରର ରହସ୍ୟାଚ୍ଛନ୍ନ ପଦ୍ଧତି ପ୍ରତି ଆମେ ସ୍ୱତଃ ଆଗ୍ରହୀ ହୋଇ ଉଠୁ ।

ସେ ଯାହାହେଉ, ୟୁଙ୍ଗଙ୍କ ମତବାଦର ସାରମର୍ମ ହେଉଛି ଯେ, ପ୍ରକୃତରେ କେତେକ ଲୋକଙ୍କ ଅବଚେତନ ମନରେ ଏପରି ଜିନୀୟ ଆର୍କିଟିପଲ୍ ତଥ୍ୟମାନ ଗଚ୍ଛିତ ହୋଇଛି ଯେ, ସେମାନେ ଭବିଷ୍ୟବାଣୀ ଶୁଣାଇବା ପାଇଁ ସକ୍ଷମ ହୋଇପାରୁଛନ୍ତି । ଅବଶ୍ୟ ଏହି ମତବାଦର ମୁଖ୍ୟ ଦୁର୍ବଳତା ହେଉଛି ଯେ, ଏହା ଗାଣିତିକ ସମୀକରଣ ଦ୍ୱାରା ଉପସ୍ଥାପିତ କରାଯାଇ ନାହିଁ । ତଥାପି କେତେକ ବ୍ୟକ୍ତିଙ୍କର ତ୍ରିକାଳ-ଜ୍ଞାନ ରହିବା ସମ୍ଭବ ବୋଲି ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଦ୍ୱାରା ସେ ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି, ତାର ବିଶେଷତ୍ୱ ଅସ୍ୱୀକାର କରାଯାଇ ନ ପାରେ । ବିଶେଷତଃ ଆର୍କିଟାଇପ୍‌ର ଭିତ୍ତିରେ ସାମୂହିକ ଦୃଷ୍ଟିକୋଣରୁ ମହତ୍ତ୍ୱପୂର୍ଣ୍ଣ ବ୍ୟକ୍ତି ବା ଭବିଷ୍ୟତ ସଂପର୍କରେ ଆଗତୁରା ସମ୍ବାଦ ପାଇ ହେବ ବୋଲି ସେ ଯେଉଁ ଦାବୀ କରିଛନ୍ତି, ତାର ସତ୍ୟାସତ୍ୟ ନିରୂପଣ କରିବା ଯଥାର୍ଥ ମନେ ହୁଏ ।

ରବର୍ଟସନ୍‌ଙ୍କ ଉପନ୍ୟାସରେ ଟିଟାନ୍ ଜାହାଜର ଦୁର୍ଘଟଣା ମାଧ୍ୟମରେ ଆମେ ଏହି ସଂପର୍କରେ କିଛି କିଛି ସୂଚନା ପାଉଛେ । କିନ୍ତୁ ଏହାର ସୁସ୍ପଷ୍ଟ ପ୍ରମାଣ ପାଇବାକୁ ଆମେ ଅନ୍ୟ ଦୃଷ୍ଟାନ୍ତ ପ୍ରତି ଦୃଷ୍ଟି ଦେବା । ଏହି ପୃଷ୍ଠଭୂମିରେ ଫରାସୀ ଭବିଷ୍ୟଦାତା ନୋଷ୍ଟ୍ରାଡାମସ୍‌ଙ୍କ (୧୫୦୩–୧୫୬୬) ସଫଳତା ପ୍ରତି ଆମ ଦୃଷ୍ଟି ସ୍ୱତଃ ଆକର୍ଷିତ ହୋଇଯାଏ । ଭବିଷ୍ୟତ ଜାଣିବା ପାଇଁ ତାଙ୍କ ପଦ୍ଧତି ହେଉଛି ଯେ ପିତଳରେ ନିର୍ମିତ ଗୋଟିଏ ତ୍ରିଖମ୍ଭ ଉପରେ ଜଳପାତ୍ରଟିଏ ରଖି ତାରି ମଧ୍ୟକୁ ଦୀର୍ଘ ସମୟ ଯାଏଁ ସେ ନିରୀକ୍ଷଣ କରୁଥିଲେ । ପାରମ୍ପରିକ ନୀତିରେ ଅନ୍ୟାନ୍ୟ ଜ୍ୟୋତିଷୀମାନେ ସ୍ଫଟିକ-ପେଣ୍ଡୁକୁ ଏପରି ଲକ୍ଷ୍ୟ କରି ଭବିଷ୍ୟତ ନିର୍ଣ୍ଣୟ କରୁଥିଲେ । ତେବେ ଏହି ବାହ୍ୟ ବ୍ୟବସ୍ଥା ଯାହା ହେଉନା କାହିଁକି, ଅତୀନ୍ଦ୍ରିୟ ଚେତନାର ନିର୍ଦ୍ଦେଶ କ୍ରମେ ନୋଷ୍ଟ୍ରାଡାମ୍‌ସ ଅନାଗତ ଭବିଷ୍ୟତର ରୂପରେଖ ସ୍ଥିର କରୁଥିଲେ । ସେ ପ୍ରଥମେ ୧୫୫୦ ସାଲରେ ପାଣିପାଗ ସଂପର୍କରେ ଭବିଷ୍ୟବାଣୀ ଦେଇ ବେଶ୍ ଲୋକପ୍ରିୟ ହୋଇଥିଲେ । ତାପରେ ପ୍ରାୟ ଏକ ହଜାର ଭବିଷ୍ୟବାଣୀ ''ସେଞ୍ଚୁରୀ'' ନାମକ ପୁସ୍ତକରେ ସେ ଲିପିବଦ୍ଧ କରିଛନ୍ତି ।

ତଦନୁସାରେ ସେ ଚାରି ବର୍ଷ ପୂର୍ବରୁ ଜଣାଇ ଦେଇଥିଲେ ଯେ, ଫ୍ରାନ୍‌ସର ତତ୍କାଳୀନ ରାଜା ଦ୍ୱିତୀୟ ହେନରୀ କୌତୁକ-ଯୁଦ୍ଧରେ ମାତିଥିବା ବେଳେ ଆହାତ ହୋଇ ମୃତ୍ୟୁ ଲଭିବେ, -ଯାହାକି ଜୁଲାଇ ୧୫୫୯ରେ ସତ୍ୟ ବୋଲି ପ୍ରମାଣିତ ହୋଇଥିଲା ।

୧୬୬୬ରେ ଲଣ୍ଡନରେ ଏକ ଭୟାବହ ଅଗ୍ନିକାଣ୍ଡ ଘଟିବ ବୋଲି ସେ ଯେଉଁ ଅଗ୍ରୀମ ସୂଚନା ଦେଇଥିଲେ, ତାହା ପରବର୍ତ୍ତୀ କାଳରେ ଅକ୍ଷରେ ଅକ୍ଷରେ ସତ ହୋଇଥିଲା ।

ନୋଷ୍ଟ୍ରାଡମ୍‌ସ ବଞ୍ଚିଥିବାବେଳେ ଫ୍ରାନ୍‌ସରେ ରାଜତନ୍ତ୍ର ଚାଲିଥାଏ; ସେତେବେଳେ ସେଠାରେ ଗଣତନ୍ତ୍ରର ନାମଗନ୍ଧ ସୁଦ୍ଧା ନ ଥିଲା । ତଥାପି ତତ୍‌କାଳୀନ ସମ୍ରାଟଙ୍କୁ ସେ ଗୋଟିଏ ଚିଠି ଦ୍ୱାରା ସୂଚାଇ ଦେଇ ଥିଲେ ଯେ, ୧୭୯୨ ସାଲ ହେଉଛି ଫ୍ରାନ୍‌ସର ରାଜନୀତି ପାଇଁ ଏକ ମହତ୍ତ୍ୱପୂର୍ଣ୍ଣ ସମୟ । ରାଣୀ ମେରୀ ଆନ୍ତୋଇନେଟ୍ ଓ ମାଡାମ୍ ଡ୍ୟୁ ବାରି ସାଧାରଣ ଲୋକଙ୍କ ଦ୍ୱାରା କ୍ଷମତା ପ୍ରାପ୍ତ ବିଚାରକଙ୍କ ଦ୍ୱାରା ହତ୍ୟା କରାଯିବେ ବୋଲି ଭବିଷ୍ୟବାଣୀ ଦେଇଥିଲେ । ଏଥିରୁ ମଧ୍ୟ ପରୋକ୍ଷ ଭାବେ ସୂଚିତ ହୁଏ ଯେ, ଫ୍ରାନ୍‌ସରେ ଗଣତନ୍ତ୍ର ପ୍ରତିଷ୍ଠିତ ହେବ ।

ଏତଦ୍‌ବ୍ୟତୀତ ସମ୍ରାଟ ନେପୋଲିଅନ୍‌ଙ୍କର ୧୮୧୫ ସାଲରେ ସେଣ୍ଟ ହେଲେନା ଦ୍ୱୀପକୁ ନିର୍ବାସନ ଦଣ୍ଡ ଓ ଇଂଲଣ୍ଡର ରାଜା ଅଷ୍ଟମ ଏଡ଼ୱାର୍ଡ଼ଙ୍କ ସିଂହାସନ-ତ୍ୟାଗ ସଂପର୍କରେ ମଧ୍ୟ ସେ ବହୁ ପୂର୍ବରୁ ଜାଣି ପାରିଥିଲେ । ଦ୍ୱିତୀୟ ବିଶ୍ୱମହାଯୁଦ୍ଧର ଖଳ ନାୟକ ଆଡ଼ଲ୍‌ଫ ହିଟ୍‌ଲରଙ୍କ ନୃଶଂସତା, ଏପରିକି ତାଙ୍କ ନାମ ମଧ୍ୟ, ସେ ମୋଟାମୋଟି ଭାବେ ବହୁ ପୂର୍ବରୁ ଉଲ୍ଲେଖ କରି ପାରିଥିଲେ । ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ହେଉଛି ଯେ, ଦ୍ୱିତୀୟ ମହାସମର ବେଳେ ହିଟ୍‌ଲର ବିଭିନ୍ନ ପର୍ଯ୍ୟାୟରେ କେଉଁ ପ୍ରକାର ଯୁଦ୍ଧ-ଅଭିଯାନ ଚଳାଇବେ- ତାର କେତେକ ବର୍ଣ୍ଣନା ସେ ଚାରିଶହ ବର୍ଷପୂର୍ବରୁ ପୃଥିବୀବାସୀଙ୍କୁ ଜଣାଇ ପାରିଥିଲେ ।

ଆଗାମୀ ଭବିଷ୍ୟତ ସଂପର୍କରେ ସେ ଉଲ୍ଲେଖ କରିଛନ୍ତି ଯେ, ବିଂଶ ଶତାବ୍ଦୀର ଶେଷ ଆଡ଼କୁ ରୁଷ ଓ ଆମେରିକା ମିଳିତ ଭାବେ ଚୀନ ସହିତ ସମ୍ଭବତଃ ତୃତୀୟ ବିଶ୍ୱ ମହାଯୁଦ୍ଧରେ ଲିପ୍ତ ହେବେ । ପୁଣି ଉତ୍ତର ଗୋଲାର୍ଦ୍ଧ ଭୟାବହ ଦୁର୍ଭିକ୍ଷରେ କବଳିତ ହେବ ବୋଲି ସେ ସତର୍କ କରି ଦେଇଛନ୍ତି । ଏହି ଭବିଷ୍ୟବାଣୀର ସତ୍ୟାସତ୍ୟ ପରୀକ୍ଷା କରିବା ପାଇଁ ବିଶ୍ୱବାସୀ ଉତ୍‌କଣ୍ଠାର ସହିତ ଅପେକ୍ଷା କରିଛନ୍ତି ।

ପ୍ରକାଶ ଥାଉକି, ନୋଷ୍ଟ୍ରାଡ଼ମସ୍ ଦିନେ ଜଣେ ମେଧାବୀ ଛାତ୍ର ଥିଲେ ଏବଂ ପରବର୍ତ୍ତୀ କାଳରେ ଜଣେ ବିଚକ୍ଷଣ ଡାକ୍ତର ଭାବେ ପ୍ରସିଦ୍ଧି ଲାଭ କରିଥିଲେ । ବିଶେଷତଃ ପ୍ଲେଗରୋଗରେ ଆକ୍ରାନ୍ତ ବ୍ୟକ୍ତିମାନଙ୍କୁ ନୂତନ ଉପାୟରେ ଆରୋଗ୍ୟ କରାଇ ସେ ସୁପରିଚିତ ହୋଇ ପାରିଥିଲେ । ଗାଲିଲିଓଙ୍କ ଏକ ଶହ ବର୍ଷ ପୂର୍ବରୁ ସେ ସୂର୍ଯ୍ୟ ଚାରିପଟେ ପୃଥିବୀ ଘୂରୁଥିବା ବିଷୟ ଘୋଷଣା କରି ନିଜ ବୈଜ୍ଞାନିକ ଉଦ୍‌ଭାବନୀ ଶକ୍ତିର ପରିଚୟ ଦେଇଥିଲେ । ଏପରି ବୈଜ୍ଞାନିକ ପୃଷ୍ଠଭୂମି ଓ ଦୃଷ୍ଟିଭଙ୍ଗୀ ଥିବା ସତ୍ତ୍ୱେ ସେ ଭୟ କରୁଥିଲେ

ଯେ, ସେତେବେଳ ତାଙ୍କ ଭୂଖଣ୍ଡରେ ଯେଉଁ ''ଇନ୍‌କ୍ୱିଜିସନ୍''ର ରାଜତ୍ୱ ଚାଲୁଥିଲା, ତାର ସେ ଶିକାର ହୋଇ କାଳେ ଦଣ୍ଡିତ ହେବେ !

ତାଙ୍କୁ ଗୁଣି ଗାରେଡ଼ି ଚଳାଉଥିବା ଅଭିଯୋଗରେ କାଳେ ଦୋଷୀ ସାବ୍ୟସ୍ତ କରାଯିବ ବୋଲି ସେ ମନେ ମନେ ଖୁବ୍ ଆତଙ୍କିତ ହୋଇ ଯାଇଥିଲେ । ତେଣୁ ସେ ବିଭିନ୍ନ ଭବିଷ୍ୟବାଣୀ ସୁସ୍ପଷ୍ଟ ଭାବେ ଘୋଷଣା କରିବା ପାଇଁ ଭୟ କରୁଥିଲେ । ପୁରୁଣାକାଳିଆ ଫରାସୀ, ଲାଟିନ୍ ଓ ଅନ୍ୟାନ୍ୟ ଭାଷାରେ ପଦ୍ୟାକାରରେ, ବିଭିନ୍ନ ସଙ୍କେତ ବ୍ୟବହାର କରି, ସେ ଭବିଷ୍ୟବାଣୀ ଲିପିବଦ୍ଧ କରିଛନ୍ତି । ଏହି ପ୍ରକାରେ ସେ ଜାଣିଶୁଣି ପାଠକ ମନରେ ସନ୍ଦେହ ଓ ଅସ୍ପଷ୍ଟତା ସୃଷ୍ଟି କରୁଥିଲେ ବୋଲି ବହୁ ସମାଲୋଚକ ବିଶ୍ୱାସ କରୁଛନ୍ତି । ଉକ୍ତ ଅସ୍ପଷ୍ଟତା ସତ୍ତ୍ୱେ ତାଙ୍କ ଭବିଷ୍ୟବାଣୀର ନିର୍ଭୁଲତା ସମସ୍ତେ ସ୍ୱୀକାର କରୁଛନ୍ତି ।

ଏଠାରେ ସ୍ମରଣ କରାଯାଇ ପାରେ ଯେ, ନୋଷ୍ଟ୍ରାଡାମ୍‌ସଙ୍କ ଭବିଷ୍ୟବାଣୀ ସର୍ବସାଧାରଣଙ୍କ ଭାଗ୍ୟ-ନିୟନ୍ତ୍ରଣ କରୁଥିବା ମହତ୍ତ୍ୱପୂର୍ଣ୍ଣ ଘଟଣାମାନଙ୍କ ସହିତ ସଂପୃକ୍ତ । ଏହି ଦୃଷ୍ଟିରୁ ୟୁଙ୍ଗ ସମଗ୍ର ମଣିଷ ଜାତି ସାଧାରଣ ଅନୁଭୂତିକୁ ନେଇ କେଉଁ ଆର୍କିଟାଇପ୍ ବିଷୟରେ ସୂଚନା ଦେଇଛନ୍ତି, ତାହା ଗୋଟିଏ ବେଶ୍ ବାସ୍ତବଧର୍ମୀ ଓ ଯୁକ୍ତିଯୁକ୍ତ ବୋଲି ଧାରଣା ଜନ୍ମୁଛି । ଏହା ଦ୍ୱାରା ମନେ ହେଉଛି ଯେ, ହୁଏତ ଆର୍କିଟାଇପ୍‌ମାନ ଭବିଷ୍ୟଗଣନାର ବିସ୍ତୃତ କ୍ଷେତ୍ର ଓ ସମ୍ଭାବନା ପ୍ରସ୍ତୁତ କରି ପାରନ୍ତି ।

କିନ୍ତୁ ୟୁଙ୍ଗଙ୍କ ''ଆର୍କିଟାଇପ୍''ର ପରିକଳ୍ପନା ସମାଲୋଚନା– ମୁକ୍ତ ନୁହେଁ । ପ୍ରଥମତଃ ଏହି ମତବାଦରେ ଗାଣିତିକ ଭିତ୍ତିଭୂମି ନାହିଁ । ତେଣୁ ତାହା ବିଜ୍ଞାନ ସମ୍ମତ ହୋଇ ନ ପାରେ । ଦ୍ୱିତୀୟତଃ ଶରୀର ଓ ମନ ମଧ୍ୟରେ ସାମଞ୍ଜସ୍ୟ ନିର୍ଣ୍ଣୟ କରିବାରେ ଆର୍କିଟାଇପ୍ ଉପରେ ସଂପୂର୍ଣ୍ଣ ନିର୍ଭର କରି ହେବ ନାହିଁ । ପୁଣି ବ୍ୟକ୍ତି ଓ ଗୋଷ୍ଠୀ ତଥା ସାଂପ୍ରତିକ ଓ ଚିରନ୍ତନ ମଧ୍ୟରେ ଆର୍କିଟାଇପ୍ ପରି ଗୋଟିଏ ଅସ୍ପଷ୍ଟ ସଂଜ୍ଞା ପ୍ରକୃତ ସଂଯୋଗକାରୀ ହୋଇ ପାରିବା ଯଥାର୍ଥ ମନେ ହୁଏ ନାହିଁ । ଏତାଦୃଶ ବହୁବିଧ ଅପରିପକ୍ୱତା, ଦୋଷ, ଦୁର୍ବଳତା, ଓ ଅସଂପୂର୍ଣ୍ଣତା ଥିବା ଯୋଗୁଁ ୟୁଙ୍ଗଙ୍କ ମତବାଦ ସନ୍ତୋଷଜନକ ହୋଇ ପାରୁ ନାହିଁ । ତେବେ ଏହାଠାରୁ ଅଧିକ ବୁଦ୍ଧିମନ୍ତ ଓ ବିଜ୍ଞାନ-ସମ୍ମତ ମତବାଦର ଆବଶ୍ୟକତା ବର୍ତ୍ତମାନ ଦେଖା ଦେଇଛି । ଏହି ଦିଗରେ ୟୁଙ୍ଗ୍‌ଙ୍କ ମତବାଦ ଏକ କ୍ଷୁଦ୍ର ପ୍ରାଥମିକ ପଦକ୍ଷେପ ।



# ଏଲୋପାଥି ଓ ପ୍ରାଚୀନ ଚିକିତ୍ସା ଜ୍ଞାନ

ଡକ୍ଟର କର୍ଣ୍ଣେଲ କେ. ଏଲ୍. ଚୋପ୍ରା ଆମ ଦେଶର ଜଣେ ଖ୍ୟାତନାମା ହୃଦ୍‌ରୋଗ-ବିଶେଷଜ୍ଞ ଏବଂ ସେ ବର୍ତ୍ତମାନ ''ହାର୍ଟ କେୟାର ଫାଉଣ୍ଡେସନ୍ ଅଫ୍ ଇଣ୍ଡିଆ'' ନାମକ ଏକ ସେବା-ସଂସ୍ଥାର ସଭାପତି । ତାଙ୍କର ଦୁଇ ପୁଅ ମଧ୍ୟରୁ ଦୀପକଙ୍କର ବୟସ ୪୨ ଓ ସଂଜୀବଙ୍କର ବୟସ ୪୦ ବର୍ଷ । ବାପାଙ୍କ ପରି ଏଇ ଦୁଇ ପୁଅ ସ୍ୱନାମଧନ୍ୟ ଚିକିତ୍ସକ ହୋଇ ପାରିଛନ୍ତି । ଉଭୟେ ଦିଲ୍ଲୀସ୍ଥିତ ''ଆଲ-ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ ଅଫ ମେଡ଼ିକାଲ ସାଇନ୍‌ସ''ରେ ପଢ଼ିବା ପରେ ଆମେରିକାର ବୋଷ୍ଟନଠାରେ ଡାକ୍ତର ଭାବେ ଅବସ୍ଥାପିତ ହୋଇଥିଲେ ।

ଉଭୟ ଦୀପକ ଓ ସଂଜୀବ ଛାତ୍ରାବସ୍ଥାରେ ଆଧୁନିକ ଡାକ୍ତରିବିଦ୍ୟାରେ ତାଲିମ ପାଇଛନ୍ତି । କିନ୍ତୁ ପରବର୍ତ୍ତୀ କାଳରେ ସଂଜୟ ଏଲୋପାଥିରେ ଚିକିତ୍ସା ଅଭ୍ୟାସ କରିବା ବେଳେ ଦୀପକ ମନ ପରିବର୍ତ୍ତନ କରି ଆୟୁର୍ବେଦ ପ୍ରତି ଆକୃଷ୍ଟ ହୋଇଥିଲେ । ଦୀପକଙ୍କ ଜୀବନ ଏଇ ଯେଉଁ ଆଶ୍ଚର୍ଯ୍ୟଜନକ ମୋଡ଼ ନେଲା, ସେଥିପାଇଁ ଗୋଟିଏ ଆକସ୍ମିକ ଘଟଣା ମୁଖ୍ୟତଃ ଦାୟୀ ।

୧୯୮୦ ସାଲର କୌଣସି ଏକ ରବିବାର ଅପରାହ୍ନରେ ଦୀପକ ଗୋଟିଏ ପୁରୁଣା ପୁସ୍ତକ-ଦୋକାନରେ ଖାମଖିଆଲି ଭାବେ ବହିଗୁଡ଼ିକ ଓଲଟାଉଥିବା ବେଳେ ''ଟ୍ରାନ୍‌ସେନ୍‌ଡେଣ୍ଟାଲ୍ ମେଡ଼ିଟେସନ୍'' ନାମକ ଗୋଟିଏ ପୁସ୍ତକ ପ୍ରତି ଆକର୍ଷିତ ହେଲେ । ଏଇ ଘଟଣାର ଦୁଇଦିନ ମଧ୍ୟରେ ମହର୍ଷି ମହେଶ ଯୋଗୀଙ୍କ ଦ୍ୱାରା ପ୍ରବର୍ତ୍ତିତ ଏହି ଯୋଗାଭ୍ୟାସରେ ସେ ସସ୍ତ୍ରୀକ ସଂପୃକ୍ତ ହେଲେ । ଦୈନିକ ଦୁଇ ଥର କୋଡ଼ିଏ ମିନଟ ଲେଖାଏଁ ଧ୍ୟାନାଭ୍ୟାସ କରିବାର କେତେକ ଦିନ ମଧ୍ୟରେ ତାଙ୍କ ଜୀବନଯାପନ ପ୍ରଣାଳୀରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନମାନ ଘଟିବାରେ ଲାଗିଲା । ସେ ପୂର୍ବାପେକ୍ଷା କମ୍ ସିଗାରେଟ, କଫି ଓ ଆଲକହଲ୍ ସେବନ କଲେ । ତାଙ୍କ ମନରେ ଅଧିକ ପ୍ରଶାନ୍ତି ବିରାଜିଲା । ସେ ନିଜେ ସ୍ୱୀକାର କରିଛନ୍ତି, ''ମୋ କାର୍ଯ୍ୟକ୍ଷେତ୍ରରେ ମୁଁ ଦଶଗୁଣ ଅଧିକ ଦକ୍ଷ ହୋଇ ପାରିଲି ।'' (ସ୍ୱାନ, ଜୁଲାଇ ୧୯୯୦ ସଂଖ୍ୟା) ।

ଦିନେ ୧୯୮୫ ସାଲରେ ଆକସ୍ମିକ ଭାବେ ମହର୍ଷି ମହେଶ ଯୋଗୀଙ୍କ ସହିତ ଓ୍ୱାସିଂଟନ୍‌ର ଗୋଟିଏ ହୋଟଲରେ ଦୀପକଙ୍କର ସାକ୍ଷାତ ହେଲା । ସେତେବେଳେ ମହେଶ

ଯୋଗୀ ପ୍ରାଚୀନ ଭାରତୀୟ ଚିକିତ୍ସା ପଦ୍ଧତିର ପୁନରୁତ୍‌ଥାନ ସଂପର୍କରେ ଚିନ୍ତିତ ଥିଲେ । ବିଶେଷତଃ ପାଶ୍ଚାତ୍ୟ ଜଗତରେ ଆୟୁର୍ବେଦର ପ୍ରସାର ପାଇଁ ସେ ଖୁବ୍ ଆଗ୍ରହୀ ଥିଲେ । ମହର୍ଷିଙ୍କର ଏହି ଉଦ୍ଦେଶ୍ୟ ଚରିତାର୍ଥ କରିବାକୁ ଦୀପକ ଆଗଭର ହେଲେ । ପ୍ରକାଶ ଥାଉକି, ସେତେବେଳେ ବୋଷ୍ଟନଠାରେ ଦୀପକଙ୍କର ''ଏଣ୍ଡୋକ୍ରିନୋଲୋଜି'' ଅର୍ଥାତ୍ ଗ୍ରନ୍ଥି ବିଭାଗରେ ଭଲ ପ୍ରାକ୍ଟିସ ଚାଲୁଥିଲା । ତଥାପି ସେ ସେଥିରୁ ବିକର୍ଷିତ ହୋଇ ଆୟୁର୍ବେଦ ପ୍ରତି ଯେପରି ମନ ବଳାଇଲେ, ତାହା ଏକ ଦୁଃସାହସିକ ଏବଂ ଆକସ୍ମିକ ଲମ୍ଫ ପ୍ରଦାନ ପରି ପଦକ୍ଷେପ ହେଲା । ଏହି ପ୍ରକାର ଅସ୍ୱାଭାବିକ ନିଷ୍ପତ୍ତି ନେବା ପରେ ମହର୍ଷି ମହେଶ ଯୋଗୀଙ୍କୁ ସେ ସାକ୍ଷାତ କରିବା ପାଇଁ ବୋଷ୍ଟନରୁ ଦିଲ୍ଲୀକୁ ବହୁବାର ଆସନ୍ତି; ଟେଲିଭିଜନ ଓ ରେଡିଓ କାର୍ଯ୍ୟକ୍ରମମାନଙ୍କରେ ଭାଗ ନିଅନ୍ତି । ସାରା ବିଶ୍ୱ ଭ୍ରମଣ କରି ଆୟୁର୍ବେଦ-ତତ୍ତ୍ୱ ପ୍ରଚାର କରନ୍ତି ।

ଦୀପକ ଭାଷଣ ପ୍ରସଙ୍ଗରେ କହିଥାନ୍ତି, ''ଆୟୁର୍ବେଦର ମୌଳିକ ଉପକ୍ରମ ଅନୁସାରେ, ମଣିଷର ଚେତନା ହେଉଛି ମୁଖ୍ୟ ଏବଂ ବସ୍ତୁ ଗୌଣ । ଚେତନା ସର୍ବ ପ୍ରଥମେ ବସ୍ତୁ ସଂପର୍କରେ ଚିନ୍ତା କରେ; ତାର ମୂଲ୍ୟାୟନ କରେ; ତାକୁ ନିଜ ନିୟନ୍ତ୍ରଣ ଓ ଶାସନରେ ରଖେ ଏବଂ ପରିଶେଷରେ ବସ୍ତୁ ରୂପରେ ପ୍ରକାଶିତ ହୁଏ । କିନ୍ତୁ ପାଶ୍ଚାତ୍ୟ ରାଷ୍ଟ୍ରର ବହୁ ଚିକିତ୍ସକ ଏହାର ବିପରୀତ ମତ ପୋଷଣ କରିଥାନ୍ତି— ସେମାନେ ଚେତନାକୁ ମୁଖ୍ୟ କାରଣ ବୋଲି ଗ୍ରହଣ ନ କରି ଏହାକୁ ପରବର୍ତ୍ତୀ ଅବସ୍ଥାରେ ଏକ ପରିଣତି ବୋଲି ବିଶ୍ୱାସ କରନ୍ତି । ସେମାନେ କହନ୍ତି ଯେ, ମଣିଷ ହେଉଛି ଗୋଟିଏ ଯନ୍ତ୍ର, ଯାହାକି କୌଣସି ମତେ ଚିନ୍ତା କରିବା ବିଷୟଟି ଶିଖି ପକାଇଛି ।''

ଏହି ବିଷୟଟିକୁ ସ୍ପଷ୍ଟ କରିଦେବା ପାଇଁ ''କ୍ୱାଣ୍ଟମ୍ ହିଲିଂ— ଏକ୍ସପ୍ଲୋରିଂ ଦି ଫ୍ରଣ୍ଟିଅରସ ଅଫ ମାଇଣ୍ଡ-ବଡ଼ି ମେସିନ'' ( ବାଣ୍ଟମ୍ ପବ୍ଲିକେଶସନ, ୧୯୮୯ ) ପୁସ୍ତକରେ ଦୀପକ ଲିପିବଦ୍ଧ କରିଛନ୍ତି, ''ଆମ ମନରେ ଥିବା କୌଣସି ଏକ ଚିନ୍ତା ଗୋଟିଏ ଅଣୁ ବା ମଲିକ୍ୟୁଲ୍ ସୃଷ୍ଟି କରିଥାଏ... ତେଣୁ ଆମ ମନରେ ଯଦି ବହୁ ସୁଖପ୍ରଦାୟକ ଚିନ୍ତା ଥାଆନ୍ତି, ତାହାହେଲେ ଆମ ଶରୀରରେ ବହୁତ ଆନନ୍ଦଦାୟକ ଅଣୁ ଉତ୍ପନ୍ନ ହୁଏ ।'' ଆୟୁର୍ବେଦର ଏହି ଦର୍ଶନବାଣୀ ଚିକିତ୍ସାବିଜ୍ଞାନର ନୂତନ ଗବେଷଣା-ଲବ୍ଧ ଜ୍ଞାନ ଦ୍ୱାରା ସମର୍ଥିତ ହେଉଥିବା ଉଲ୍ଲେଖଯୋଗ୍ୟ ।

ସ୍ନାୟୁବିଜ୍ଞାନୀମାନେ ୧୯୭୦ ପୂର୍ବରୁ ବିଶ୍ୱାସ କରୁଥିଲେ ଯେ, ଆମ ସ୍ନାୟବିକ ପ୍ରଣାଳୀର କାର୍ଯ୍ୟ ପଦ୍ଧତିକୁ ଟେଲିଫୋନ-ସିଷ୍ଟମ୍ ସହିତ ତୁଳନା କରାଯାଇପାରେ । ଟେଲିଫୋନରେ ଆମେ କହିବା ବେଳେ ଆମ ଶବ୍ଦମାନ ବୈଦ୍ୟୁତିକ ଶକ୍ତିରେ ରୂପାନ୍ତରିତ ହୋଇ ଟେଲିଫୋନ୍-ତାର ଦ୍ୱାରା ଶ୍ରୋତାର ଟେଲିଫୋନ-ରିସିଭର ନିକଟକୁ ଯାଏ ଏବଂ

ସେଠାରେ ପୁଣି ବିଦ୍ୟୁତ୍‌ରୁ ଶବ୍ଦ ଭାବେ ପରିବର୍ତ୍ତିତ ହୋଇ ଶ୍ରୋତାକୁ ଶୁଣାଯାଏ । ତେବେ ଶ୍ରୋତା ଓ ବକ୍ତା ମଧ୍ୟରେ ସମନ୍ୱୟ ସ୍ଥାପନ ଓ ଉପଯୁକ୍ତ ନିୟନ୍ତ୍ରଣ ପାଇଁ ଟେଲିଫୋନ୍-ଏକ୍ସଚେଞ୍ଜର ଭୂମିକା ଯେ ଅତି ଉପାଦେୟ —ଏହା ଆମେ ମନେ ରଖିବା ଉଚିତ । ଠିକ୍ ସେମିତି ଆମ ମସ୍ତିଷ୍କ ସମନ୍ୱୟ ରକ୍ଷାକାରୀର ଦାୟିତ୍ୱ ସଂପାଦନ କରୁଥିବା ବେଳେ ଆମ ଶରୀରର ବିଭିନ୍ନ ସ୍ନାୟୁ ଟେଲିଫୋନ - ତାରର କାମ ତୁଲାଇଥାନ୍ତି । ଯେତେବେଳେ ଆମ ଶରୀରର କୌଣସି ଅଂଶ ଆଘାତପ୍ରାପ୍ତ ହୁଏ କିମ୍ବା ଏମିତି କୌଣସି ଏକ ଉଲ୍ଲେଖ ଯୋଗ୍ୟ ଘଟଣା ଘଟେ, ତାହାହେଲେ ଏହି ଖବର ବିଦ୍ୟୁତ ଶକ୍ତିରେ ରୂପାନ୍ତରିତ ହୋଇ ଆମ ସ୍ନାୟୁ ଦ୍ୱାରା ମସ୍ତିଷ୍କରେ ପହଞ୍ଚେ ଏବଂ ସେଠାରୁ ଆବଶ୍ୟକୀୟ ଖବର ଓ ପରବର୍ତ୍ତୀ ପଦକ୍ଷେପ ସମ୍ବନ୍ଧରେ ସୂଚନା ଆମ ଶରୀରର ଉପଯୁକ୍ତ ତଥା ସଂପୃକ୍ତ ଅଙ୍ଗ ପ୍ରତ୍ୟଙ୍ଗକୁ ତୁରନ୍ତ ପ୍ରେରିତ ହୁଏ । ଏହି ଦୃଷ୍ଟିରୁ ପ୍ରତୀତ ହୁଏ ଯେ, ଆମ ମସ୍ତିଷ୍କ ଟେଲିଫୋନ-ଏକ୍ସଚେଞ୍ଜ୍‌ର କାମ କରିବା ସଙ୍ଗେ ସଙ୍ଗେ ଆହୁରି ଅଧିକ ଉପାଦେୟ କାର୍ଯ୍ୟ ସଂପନ୍ନ କରେ, ଯେଉଁଥିପାଇଁ କି ଯାନ୍ତ୍ରିକ ଟେଲିଫୋନ ପ୍ରଣାଳୀଠାରୁ ଜୈବ ମସ୍ତିଷ୍କ ମୌଳିକ ଭାବେ ଭିନ୍ନ ।

ମଣିଷ ଶରୀରରେ ନ୍ୟୁରୋଟ୍ରାନ୍‌ସମିଟର୍ ପରି ଅଣୁମାନ ଆବିଷ୍କୃତ ହେବା ପରେ ସ୍ନାୟୁବିତ୍‌ମାନେ ଉପରୋକ୍ତ ମତବାଦରେ ଆମୂଳଚୂଳ ପରିବର୍ତ୍ତନ କରିଛନ୍ତି । ନ୍ୟୁରୋଟ୍ରାନ୍‌ସମିଟର ହେଉଛି ଏମିତି ଗୋଟିଏ ଅଣୁ, ଯିଏକି ଆମ ଶରୀରର ଖବର ରାସାୟନିକ ଉପାୟରେ ଆମ ମସ୍ତିଷ୍କରେ ଥିବା ନ୍ୟୁରୋନ୍‌ମାନଙ୍କ ପାଖକୁ ନେବା ଆଣିବା କରିଥାଏ । ଏହି ଦୃଷ୍ଟିରୁ ନ୍ୟୁରୋଟ୍ରାନ୍‌ସମିଟର୍ ବାର୍ତ୍ତାବହନକାରୀ ଅଣୁ । ଉଦାହରଣ ସ୍ୱରୂପ: ଏନ୍‌କେଫାଲିନ୍ ଓ ଏଣ୍ଡୋରଫିନ୍ ଏକ ପ୍ରକାରର ନ୍ୟୁରୋଟ୍ରାନ୍‌ସମିଟରେ, ଯେଉଁମାନେ କି ସ୍ୱତନ୍ତ୍ର ଭାବେ ଆମ ଯନ୍ତ୍ରଣା ଉପଶମ କରିବା କାର୍ଯ୍ୟରେ ନିଯୁକ୍ତ। ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ନ୍ୟୁରୋଟ୍ରାନ୍‌ସମିଟର ହେଉଛି ପେପ୍‌ଟାଇଡ୍, ଯାହାକି ପ୍ରୋଟିନ୍‌ର ପ୍ରତି କୋଷରେ ଥିବା ଏମିନୋ ଏସିଡର ଜଟିଳ ବନ୍ଧନୀରେ ପରିଦୃଷ୍ଟ ହୁଏ ।

ସଂପ୍ରତି ଗବେଷକମାନେ ବହୁ ସଂଖ୍ୟାରେ ଭିନ୍ନ ଭିନ୍ନ ଧରଣର ନ୍ୟୁରୋଟ୍ରାନ୍‌ସମିଟର୍ ମଣିଷ ଶରୀରରେ ଆବିଷ୍କାର କରି ସାରିଲେଣି । ଆମର କ୍ରୋଧ, ଆନନ୍ଦ, ନିଦ୍ରାଳୁତା, ସ୍କିଜୋଫର୍ଣ୍ଣିଆ ପରି ଭିନ୍ନ ଭିନ୍ନ ପ୍ରକାରର ମାନସିକ ଅବସ୍ଥା ପାଇଁ ଭିନ୍ନ ଭିନ୍ନ ପ୍ରକାରର ନ୍ୟୁରୋଟ୍ରାନ୍‌ସମିଟର୍‌ମାନ ଦେଖାଯାଇଥାନ୍ତି । ତେଣୁ ଆମେ ଯଦି ସୁଖୀ ରହୁ, ଆମ ମନରେ ଯଦି ପ୍ରେମ, ଶ୍ରଦ୍ଧା, ପ୍ରଫୁଲ୍ଲତା ଏବଂ ସ୍ନେହ-ସହାନୁଭୂତି ସଦା ସର୍ବଦା ଦେଖାଦିଏ, ତାହେଲେ ସେଇ ଧରଣର ନ୍ୟୁରୋଟ୍ରାନ୍‌ସମିଟର୍‌ମାନେ ଆମ ଶରୀରରେ ପରିଦୃଷ୍ଟ ହେବେ । ଏଥିରୁ ସ୍ପଷ୍ଟ ହେଉଛି ଯେ, ଆମ ଦେହ ଓ ମନ ମଧ୍ୟରେ ନିବିଡ଼ ସଂପର୍କ ରହିଛି ।

ପୁଣି ଉପରୋକ୍ତ ବିଶ୍ଳେଷଣରୁ ଅନୁମିତ ହୁଏ ଯେ, ଯଦି ଜଣେ ରୋଗୀର ମନରେ ଅନୁକୂଳ ମନୋଭାବ ସୃଷ୍ଟି କରାଯାଏ, ତାହାହେଲେ ସେ ନିଜ ଶରୀରରୁ ରୋଗଜାତକାରୀ ଅବାଞ୍ଛିତ ନ୍ୟୁରୋଟ୍ରାନ୍‌ସିଟର୍‌କୁ ବିତାଡ଼ିତ କରି, ତା' ପରିବର୍ତ୍ତେ ସୁଖଦାୟକ, ଆରୋଗ୍ୟକାରୀ ନ୍ୟୁରୋଟ୍ରାନ୍‌ସମିଟର୍ ସୃଷ୍ଟି କରିବ। ଏହାକୁ ଭିତ୍ତି କରି ''ପ୍ଲେସିବୋ ରେସ୍‌ପାନ୍‌ସ୍''ର ଜନ୍ମ। ଏହି ରେସ୍‌ପାନ୍‌ସ ବା ପ୍ରତିବେଦନ ଅନୁଯାୟୀ ଯଦି ଜଣେ ରୋଗୀ କୌଣସି ଏକ ଡାକ୍ତର କିମ୍ବା ନିର୍ଦ୍ଦିଷ୍ଟ ଏକ ଔଷଧ ବା କିଛି ଏକ ଚିକିତ୍ସାପଦ୍ଧତି ଉପରେ ଗଭୀର ଆସ୍ଥା ରଖିଥାଏ, ତାହାହେଲେ ଉକ୍ତ ଡାକ୍ତର ଔଷଧ ବା ଚିକିତ୍ସାର ବାସ୍ତବରେ ଯାହା କିଛି ଅନ୍ତର୍ନିହିତ ଗୁଣ ଥାଉ ବା ନଥାଉ; ସେ ଆପେ ଆପେ ରୋଗମୁକ୍ତ ହୋଇଯାଏ। ''ହେଲ୍‌ଥ ଏଣ୍ଡ ହିଲିଂ'' ଏବଂ ''ଦି ନେଚୁରାଲ ମାଇଣ୍ଡ''ର ଲେଖକ ଆଣ୍ଡ୍ରୁ ୱେଇଲ୍, ଏମ୍.ଡି., ଏଥି ପ୍ରତି ଲକ୍ଷ୍ୟ ରଖି କହିଛନ୍ତି ଯେ, ଆଜିକାଲି ''କୋରୋନାରି ବାଇପାସ୍ ସର୍ଜ୍ଜରି'' ଦ୍ୱାରା ହୃଦ୍‌ରୋଗ ବହୁ ପରିମାଣରେ ଉପଶମ କରାଯାଇ ପାରୁଛି ବୋଲି ଯେଉଁ ଦାବୀ ପ୍ରକାଶ ପାଉଛି, ଏହାର ପ୍ରକୃତ କାରଣ ବୋଧହୁଏ ''ବାଇପାସ୍ ସର୍ଜ୍ଜରି''ର ଯୋଗ୍ୟତାରେ ନାହିଁ। ''ବାଇପାସ ସର୍ଜ୍ଜରି'' ଗୋଟିଏ ନିର୍ଭରଯୋଗ୍ୟ ଚିକିତ୍ସା ପ୍ରଣାଳୀ ବୋଲି ସର୍ବସାଧାରଣରେ ଯେଉଁ ବିଶ୍ୱାସ ରହି ଆସିଛି ଏହି ମନୋଭାବ ଉକ୍ତ ଚିକିତ୍ସାର ସଫଳତା ପାଇଁ ଅନେକାଂଶରେ ଦାୟୀ। ଏମିତି ''ପ୍ଲାସିବୋ ରେସ୍‌ପାନ୍‌ସ'' ରୋଗୀକୁ ଆରୋଗ୍ୟ କରାଇ ପାରୁଥିବା ଯୋଗୁଁ ଆମେ ବିଶ୍ୱାସ କରୁ ଯେ, ଶରୀର ଅପେକ୍ଷା ମନ ରୋଗୀ ପାଇଁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ।

ଦୀପକଙ୍କ ଅନୁମାନ ଅନୁଯାୟୀ ଯୁକ୍ତରାଷ୍ଟ୍ରରେ ପ୍ରତିବର୍ଷ ଡାକ୍ତରମାନେ ୧,୫୦୦ ନିୟୁତ ଔଷଧ-ବ୍ୟବସ୍ଥାପତ୍ର (ପ୍ରେସକ୍ରିପ୍‌ସନ୍) ଲେଖିଥାନ୍ତି। ଏମାନଙ୍କର ମୂଲ୍ୟାୟନ କରିବାକୁ ଯାଇ ଡାକ୍ତର ୱେଇଲ୍ କହିଛନନ୍ତି, ''ଏଥି ମଧ୍ୟରୁ ଶତକଡ଼ା ଅଶି ଭାଗ ଗୌଣ କିମ୍ବା ଜରୁରୀ ନ ଥିବା ରୋଗ ପାଇଁ ଲିଖିତ... ଆଜିକାଲି ଭେଷଜବିଜ୍ଞାନରେ ସବୁଠାରୁ ବଡ଼ ବିଭାଜକ ହେଉଛି ଯେ, ଦଳେ ଚିକିତ୍ସକ ରୋଗର କାରଣ ଶରୀର ବହିର୍ଭୂତ ବୋଲି ବିଚାରୁଥିବା ବେଳେ ଅନ୍ୟ ଦଳେ ଚିକିତ୍ସକ ଏହାକୁ ଶରୀର-ଅନ୍ତର୍ଗତ ବୋଲି ବିଚାରନ୍ତି। ପ୍ରଥମ ଦଳଟି ଅସ୍ତ୍ର-ଚିକିତ୍ସା, ଭେଷଜବିଜ୍ଞାନର ଅତ୍ୟୁନ୍ନତ ପ୍ରଯୁକ୍ତି କୌଶଳ (ହାଇ-ଟେକ) ଓ ଶକ୍ତିଶାଳୀ ଔଷଧର ବ୍ୟବହାର ଉପରେ ଜୋର ହେଉଥିବା ବେଳେ, ଦ୍ୱିତୀୟ ଗୋଷ୍ଠୀ ରୋଗୀର ଶରୀରରେ ଅନ୍ତର୍ନିହିତ ଥିବା ଆରୋଗ୍ୟକାରୀ ପ୍ରତିବେଦନ ବା ରେସ୍‌ପନ୍‌ସକୁ ପୁନର୍ଜୀବିତ ଓ ତେଜିୟାନ କରିବାକୁ ଇଚ୍ଛା କରନ୍ତି, ଯାହା ଫଳରେ ଏମାନେ ସରଳ, ପ୍ରାକୃତିକ ଓ ଅଣ-ପାଶ୍ଚାତ୍ୟ ପଦ୍ଧତିକୁ ପସନ୍ଦ କରିଥାନ୍ତି।''

ଏଲୋପାଥିକ ମତାନୁସାରେ ରୋଗୀର ରୋଗ ଯେତେ ମାରାତ୍ମକ, ତାକୁ ସେତେ କଡ଼ା ଔଷଧ ଦେବା ଆବଶ୍ୟକ। ଯଥା  କର୍କଟ-ରୋଗୀ ପାଇଁ ରେଡ଼ିଏସନ୍,

କେମୋଥେରାପି ପରି ଭୟଙ୍କର ଚିକିତ୍ସା ଅନୁସୃତ କରାଯାଇଥାଏ । ଏହା ଶତ୍ରୁ ବିରୁଦ୍ଧରେ ଆଣବିକ ବୋମା ପ୍ରୟୋଗ କରାଯିବା ସହିତ ସମାନ । ଏହି ଦୃଷ୍ଟିରୁ ଆଲୋପାଥିଠାରୁ ଦୂରରେ ରହିବା ପାଇଁ ଆୟୁର୍ବେଦ-ଚିକିତ୍ସକମାନେ କହୁଥିବାବେଳେ, ଆଲୋପାଥି ଡାକ୍ତରମାନେ ପ୍ରତିବାଦ ଜଣାଇଥାନ୍ତି,'' ୧୯୭୦ ଦଶକର ପ୍ରାରମ୍ଭରେ ପ୍ରାଚୀନ ଚୀନରେ ପ୍ରବର୍ତ୍ତିତ ଏକ୍ୟୁପଙ୍କଚର୍-ଚିକିତ୍ସା ଯେପରି ପ୍ରାଧାନ୍ୟ ଲାଭ କରି ହଠାତ୍ ଜନମାନସରୁ ଭେଇଗଲା, ସେମିତି ସଂପ୍ରତି ପୁନର୍ଜୀବିତ ହେଉଥିବା ଆୟୁର୍ବେଦ ପରି ଗୋଟିଏ ଖିଆଲ୍ (ବା ''ଫେଡ଼'')ର ଭବିଷ୍ୟତ ସେମିତି ହେବ ।'' (ଦ୍ରଷ୍ଟବ୍ୟ: ଆର୍ଥର କ୍ଲେଇନ୍‌ମ୍ୟାନ, ଭେଷଜ-ନୃତତ୍ତ୍ୱର ହାର୍‌ୱାର୍ଡ଼ ପ୍ରଫେସର୍, ଯୁକ୍ତରାଷ୍ଟ୍ର) ।

କିନ୍ତୁ ୬,୦୦୦ ବର୍ଷର ପୁରୁଣା ଏବଂ ବହୁ ଘାତ ପ୍ରତିଘାତ ଦେଇ ବଂଚିରହିଥିବା ଆୟୁର୍ବିଦ୍ୟା କଣ ଏମିତି ଗୋଟିଏ କ୍ଷଣସ୍ଥାୟୀ ଖିଆଲ୍ ଯେ, ଏହାର ଭବିଷ୍ୟତ ସ୍ଥିତି ବିପର୍ଯ୍ୟସ୍ତ ହେବ ? ଏହି ପ୍ରଶ୍ନର ଉତ୍ତର ସ୍ଥିର କରିବା ବେଳେ ଆମକୁ ଯଥାର୍ଥ ସତର୍କତା ଅବଲମ୍ବନ କରିବାକୁ ହେବ । ପ୍ରଥମତଃ ଆମ ମନରେ ଆଶଙ୍କା ହୁଏ ଯେ ଆୟୁର୍ବେଦ ପାଇଁ ଆମେ ଯେଉଁ କଠୋର ମନୋଭାବ ପୋଷଣ କରୁଛେ, ତାହା ଏଲୋପାଥି ପାଇଁ ବଜାୟ ରଖୁଛେ ନା ଏଲୋପାଥି ପ୍ରତି କୋହଳ ମାନଦଣ୍ଡ ପ୍ରୟୋଗ କରୁଛେ ?

ଏଲୋପାଥିରେ ଦିନେ ଭାରି ଚମକ ସୃଷ୍ଟି କରିଥିବା ''କୋରୋନେରି ଆର୍ଟେରି ବାଇପାସ୍ ସର୍ଜରି'' ଆଜି ବୋଧହୁଏ ବିସ୍ମୃତି-ଗର୍ଭକୁ ଚାଲିଯିବାକୁ ବସିଲାଣି । କିନ୍ତୁ ଏହି ଚିକିତ୍ସାକୁ କେହି ''ଖିଆଲ'' ବୋଲି ହେୟଜ୍ଞାନ କରୁ ନାହାନ୍ତି; ବରଂ ଏହାକୁ ଅତ୍ୟୁନ୍ନତ ଭେଷଜ ପ୍ରଯୁକ୍ତି କୌଶଳର ମର୍ଯ୍ୟାଦା ଦେଉଛନ୍ତି । ..ଏତଦ୍‌ବ୍ୟତୀତ ତଥାକଥିତ ବିଜ୍ଞାନ ସମ୍ମତ କେତେକ ଔଷଧ ବହୁଳ ପରିମାଣରେ ବଜାରକୁ ଆସି ମାସେ ଦୁଇ ମାସ ଭିତରେ ଉଭେଇ ଯାଉଛନ୍ତି । କିନ୍ତୁ ଏହି ପ୍ରକାର କ୍ଷଣସ୍ଥାୟୀ ଔଷଧକୁ ଆମେ ଅସ୍ଥିରତାର ପ୍ରତୀକ ବା ''ଖିଆଲ୍'' ବୋଲି କହିବାକୁ ପଛଘୁଞ୍ଚା ଦେଉ । ଏଥିରୁ ସ୍ପଷ୍ଟ ହୁଏ ଯେ, ଏଲୋପାଥି ପାଇଁ ଆମେ ଯେଉଁ କୋହଳ ମାନଦଣ୍ଡ ରଖୁଛେ, ଆୟୁର୍ବେଦରେ ତାକୁ ପ୍ରୟୋଗ କରୁ ନାହୁଁ । ଏହା ଏକ ଦୁର୍ଭାଗ୍ୟଜନକ, ପକ୍ଷପାତପୂର୍ଣ୍ଣ ବିଚାର । ଏହି ପ୍ରକାର ବିନାଶକାରୀ ମନୋବୃତ୍ତି ପୋଷଣ କରିବା ପରିବର୍ତ୍ତେ ଆୟୁର୍ବେଦର ଯୋଗ୍ୟତା ଓ ସଫଳତା ଖୋଜି ବାହାର କରିବା ଅଧିକ ରଚନାତ୍ମକ ପଦକ୍ଷେପ ହେବ ।

ଆୟୁର୍ବେଦର କୃତିତ୍ୱ ବିଷୟରେ ବର୍ଣ୍ଣନା କରିବାକୁ ଯାଇ ଡାକ୍ତର ଦୀପକ ଚେପ୍ରା ୩୯ ବର୍ଷ ବୟସ୍କା ଇଲିଅନର୍ ନାମ୍ନୀ ଜଣେ କର୍କଟ ରୋଗୀର ପ୍ରସଙ୍ଗ ଉଠାଇଛନ୍ତି । ଇଲିଅନର୍ କର୍କଟ ରୋଗରୁ ମୁକ୍ତ ହେବା ପାଇଁ ଦୀର୍ଘ ତିନି ବର୍ଷ ବ୍ୟାପୀ ଏଲୋପାଥିକ ଚିକିତ୍ସାଧୀନ

ଥିଲେ । ସେ କେମୋଥେରାପି ସମେତ ବିଭିନ୍ନ ପ୍ରକାର ଅତ୍ୟାଧୁନିକ ଚିକିତ୍ସା ଅନୁସରଣ କରିବା ପରେ ମଧ୍ୟ ସୁସ୍ଥ ହୋଇ ପାରିଲେ ନାହିଁ । ତାଙ୍କୁ ଚିକିତ୍ସା କରୁଥିବା ଡାକ୍ତରମାନେ ସେ ବଂଚିବାର ଶତକଡ଼ା ମାତ୍ର ଏକ ଭାଗ ଆଶା ଅଛି ବୋଲି ଜଣାଇଲେ । ପରିଶେଷରେ ସେ ନିରାଶ ହୋଇ ଦୀପକଙ୍କର ଲାଙ୍କାଷ୍ଟେର-ମାସାଚ୍ୟୁସେଟସ ସ୍ଥିତ "ମହର୍ଷି ଆୟୁର୍ବେଦିକ ସ୍ୱାସ୍ଥ୍ୟକେନ୍ଦ୍ର"ରେ ଆଶ୍ରୟ ନେଲେ । ଧ୍ୟାନ, ପରିବର୍ତ୍ତିତ ଖାଦ୍ୟ ଓ ନିଦ୍ରା-ପ୍ରଣାଳୀ, ମାଲିସ୍, ଚେରମୂଳ ଔଷଧ, ଯୋଗଭ୍ୟାସ ଓ କେତେକ ନିର୍ଦ୍ଦିଷ୍ଟ ଧ୍ୱନି ଏବଂ ସୁଗନ୍ଧର ପ୍ରୟୋଗ– ଏମିତି କେତେକ ଅଜବ ଧରଣର ଚିକିତ୍ସା ସେଠାରେ ସେ ପ୍ରାପ୍ତ ହେଲେ । ଆମେରିକାର ସମାଜରେ ଏହି ସବୁ ବିଷୟକୁ ଚିକିତ୍ସାବିଧି ନ କହି ଆଧ୍ୟାତ୍ମିକ ତାଲିମ ବୋଲି ହୁଏତ କୁହାଯାଇଥିବ । କିନ୍ତୁ ଏହା ଦ୍ୱାରା ଇଲିଅନରଙ୍କ ଶରୀରର ଆରୋଗ୍ୟଦାୟକ-ପ୍ରତିବେଦନ ଶକ୍ତିଶାଳୀ ହେଲା । ଦେଢ଼ ବର୍ଷ ଯାଏଁ ଏହି ଚିକିତ୍ସା ଅଧୀନରେ ରହିବା ପରେ ତାଙ୍କ ଏକ୍ସ-ରେ' ଫୋଟ ଓ ରେଡିଓଲୋଜି ରିପୋର୍ଟରୁ ଜଣାଗଲା ଯେ, ସେ କ୍ରମଶଃ ସୁସ୍ଥ ହୋଇ ଆସୁଛନ୍ତି ।

ଡାକ୍ତର ଦୀପକ ଏହି ବିଷୟଟିକୁ ହଠାତ୍ ବିଶ୍ୱାସ କରି ପାରି ନଥିଲେ, "ଏହା ଅତ୍ୟନ୍ତ ନାଟକୀୟ । ଏମିତି ଘଟିବ ବୋଲି ବିଶ୍ୱାସ କରାଯାଉ ନଥିଲା । ପାଶ୍ଚାତ୍ୟ ଡାକ୍ତରମାନେ ଏହାକୁ "ସ୍ୱତଃ-ଉପଶମ" ବୋଲି କହିବେ, ଯାହାକି କିଛି ଶବ୍ଦାବଳୀ ଅଡୁଆଳରେ ସତ କଥାକୁ ଲୁଚାଇବା ସହିତ ସମାନ... ମୁଁ କହିବି ଯେ, ଆମେ ରୋଗୀର ଆରୋଗ୍ୟଦାୟକ-ପ୍ରତିବେଦନକୁ ବନ୍ଧନମୁକ୍ତ କରି ଦେବାରୁ ରୋଗୀ ନିଜେ ନିଜେ ସୁସ୍ଥ ହୋଇ ପାରିଲା ।" ଦୀପକଙ୍କର ଏହି ଉକ୍ତି ମସ୍ତିଷ୍କ-ରସାୟନ (ବ୍ରେନ୍ କେମିଷ୍ଟ୍ରି) ଓ ସ୍ନାୟବିକ- ରୋଗ ପ୍ରତିରୋଧ ଜ୍ଞାନ (ନ୍ୟୁରୋ-ଇମ୍ୟୁ-ନୋଲୋଜି)ର ତଥ୍ୟ ଦ୍ୱାରା ସମର୍ଥିତ ।

ବିଭିନ୍ନ ଦୃଷ୍ଟାନ୍ତରୁ ଜଣାଯାଏ ଯେ, ଏଲୋପାଥି ଓ ଆୟୁର୍ବେଦ ମଧ୍ୟରେ ପାରସ୍ପରିକ ବୁଝାମଣାର ଅଭାବ ରହିଛି । ଏହା ପଛରେ ମୂଳ କାରଣଟି ହେଉଛି ଯେ, ମଣିଷର ରୋଗ ବାହ୍ୟ ଶକ୍ତି ନାଁ ଆଭ୍ୟନ୍ତରୀଣ ଅଭାବ ଯୋଗୁଁ ଘଟୁଛି- ସେଇ ବିଷୟରେ ନିର୍ଧାର୍ଯ୍ୟ ସିଦ୍ଧାନ୍ତରେ ବର୍ତ୍ତମାନ ସୁଦ୍ଧା ବୈଜ୍ଞାନିକମାନେ ପହଞ୍ଚି ପାରି ନାହାନ୍ତି । ଏହି ପ୍ରସଙ୍ଗରେ ହାର୍‌ଭାର୍ଡ଼ ବିଶ୍ୱବିଦ୍ୟାଳୟର ସ୍ୱାସ୍ଥ୍ୟ ସେବାରେ କର୍ମରତ ଜୁଲି ସାଉଥ ମାୟାଡ଼ ମନ୍ତବ୍ୟ ଦେଉଛନ୍ତି, "ରକ୍ତଚାପ, ଅଧକପାଳି ଓ ପେଟରେ ଘା' ବା ଅଲ୍‌ସର୍ ରୋଗ ପାଇଁ ମାନସିକ ଚାପକୁ ଗୋଟିଏ କାରଣ ଭାବେ ଉଲ୍ଲେଖ କରାଯାଇଥାଏ । କିନ୍ତୁ ଡାକ୍ତରମାନେ ଅସୁସ୍ଥତା- ସଂପର୍କିତ ବିଭିନ୍ନ ଆଶଙ୍କା ଏବଂ ମନସ୍ତାତ୍ତ୍ୱିକ ଦିଗମାନଙ୍କ ସମ୍ବନ୍ଧରେ ସମସ୍ତ ଜ୍ଞାନ ଲାଭ କରିଲେଣି ବୋଲି ମୋର ବିଶ୍ୱାସ ହେଉ ନାହିଁ । ଉଦାହରଣ ଭାବେ ରକ୍ତାଧିକ୍ୟରୁ ହୃତ୍‌କ୍ରିୟା ବନ୍ଦ ବିଷୟରେ ବିଚାର କରାଯାଉ । ଏହି ରୋଗର କେତେ ଅଂଶ ଭାବପ୍ରବଣତା ଏବଂ କେତେ ଅଂଶ ଶରୀର ଉପରେ ନିର୍ଭର କରୁଛି-ତାହା ପ୍ରଶ୍ନବାଚୀ ହୋଇ ରହିଛି ।"

ପ୍ରକୃତରେ ଏହି ପ୍ରଶ୍ନର ନିର୍ଭରଯୋଗ୍ୟ ଉତ୍ତର ନ ପାଇବା ପର୍ଯ୍ୟନ୍ତ ଏଲୋପାଥି ଓ ଆୟୁର୍ବେଦ ମଧ୍ୟରେ ହୁଏତ ଯଥାର୍ଥ ଯୋଗାଯୋଗ ରହି ନ ପାରେ । ତଥାପି ବର୍ତ୍ତମାନର ନିରୁତ୍ସାହଜନକ ସ୍ଥିତିରେ ଏଲୋପାଥି ଚିକିତ୍ସକମାନେ ଆୟୁର୍ବେଦିକ ପଦ୍ଧତି ପ୍ରତି ଆକର୍ଷିତ ହେଉଥିବା ସମ୍ବାଦ କୌତୂହଳଜନକ ମନେ ହେଉଛି । ପ୍ରସଙ୍ଗ କ୍ରମେ ଦୀପକଙ୍କ ସାନ ଭାଇ ଡାକ୍ତର ସଞ୍ଜୀବଙ୍କ ବିଷୟରେ ବର୍ତ୍ତମାନ ଉଲ୍ଲେଖ କରାଯାଇପାରେ ।

ଆମ ଦେଶର ବିଶିଷ୍ଟ ଆୟୁର୍ବିଜ୍ଞାନୀ ଡକ୍ଟର ବୃହସ୍ପତି ଦେବ ତ୍ରିଗୁଣ, ଡାକ୍ତର ସଞ୍ଜୀବଙ୍କର ଏକଦା ନାଡ଼ି ପରୀକ୍ଷା କରି ଯେମିତି ଶାରୀରିକ ନିଦାନ କରିଥିଲେ, ତାହା ବିସ୍ମୟକର । ଡାକ୍ତର ତ୍ରିଗୁଣା ତାଙ୍କୁ କହିଥିଲେ, "ଆପଣଙ୍କ ସ୍ୱାସ୍ଥ୍ୟ ଭଲ ଅଛି । ତେବେ ତିନୋଟି ଅତି ସାଧାରଣ ସମସ୍ୟା ଆପଣଙ୍କ ପାଖରେ ରହିଛି । ପ୍ରଥମତଃ ଆପଣଙ୍କ ହୃତ୍‌ପିଣ୍ଡରେ କିଛି ଜ୍ୱଳନ ଅନୁଭବ କରୁଥିବେ । ଦ୍ୱିତୀୟତଃ ନାକ ବାଟେ ନିଃଶ୍ୱାସ ପ୍ରଶ୍ୱାସର ଚଳାଚଳ ବେଳେ ଆପଣଙ୍କର କିଛି କିଛି ଅସୁବିଧା ହେଉଥିବ । ତୃତୀୟତଃ ସ୍ନାନ କରିବା ପରେ ପରେ ଆପଣଙ୍କ ଆଖି ଲାଲ ହୋଇ ଯାଉଥିବ ।"

ଡାକ୍ତର ତ୍ରିଗୁଣା ନାଡ଼ି-ପରୀକ୍ଷାରୁ ଜାଣି ପାରିଥିବା ନିଦାନମାନ ଯେ ଅକ୍ଷରେ ଅକ୍ଷରେ ସତ —ଏହା ଡାକ୍ତର ସଂଜୀବଙ୍କୁ ସେତେବେଳେ ଚମତ୍କୃତ କରିଦେଲା । ବର୍ତ୍ତମାନ ଡାକ୍ତର ସଂଜୀବ ନିୟମିତ ଭାବେ ଯୋଗାଭ୍ୟାସ କରୁଛନ୍ତି । ରୋଗ-ନିର୍ଣ୍ଣୟ କରିବା ଦିଗରେ ଧ୍ୟାନ ତାଙ୍କୁ ସ୍ୱତନ୍ତ୍ର ଅର୍ନ୍ତଦୃଷ୍ଟି ଯୋଗାଉଛି ବୋଲି ସେ ଅନୁଭବ କରୁଛନ୍ତି । ପୁଣି ସେ ସ୍ୱୀକାର କରିଛନ୍ତି, "ଆୟୁର୍ବେଦ ମୁଖ୍ୟତଃ ରୋଗ-ନିରାକରଣ ଉପରେ ଜୋର ଦେଇଥାଏ । କିନ୍ତୁ ରୋଗ ଚିକିତ୍ସା କ୍ଷେତ୍ରରେ ଆୟୁର୍ବେଦର ଅବଦାନ କଣ —ସେ ବିଷୟରେ ମୁଁ ନିଶ୍ଚିତ ନୁହେଁ । ତେବେ ବିଭିନ୍ନ ପ୍ରକାର ବୈଜ୍ଞାନିକ ଗବେଷଣା ଓ ଯତ୍ନର ସହିତ ନିୟନ୍ତ୍ରିତ —ଅନୁଧ୍ୟାନମାନଙ୍କ ମାଧ୍ୟମରେ ପାଶ୍ଚାତ୍ୟ ଡାକ୍ତରି ବିଦ୍ୟା ସହିତ ଆୟୁର୍ବେଦକୁ ତୁଳନା କରିବା ସ୍ୱାଗତଯୋଗ୍ୟ ହେବ ।"

ଯୋଗ ଓ ଧ୍ୟାନର ସୁଫଳ ସଂପର୍କରେ ଉପରୋକ୍ତ ଦୃଷ୍ଟାନ୍ତମାନଙ୍କରେ ଯେଉଁ ଦାବୀ ପେଶ୍ କରାଯାଇଛି, ତାହା ଯେ ସହଜ-ଲବ୍ଧ ନୁହେଁ —ଏଥିପ୍ରତି ଆମେ ଅବହିତ ହେବା ଉଚିତ । ଆଜକୁ ପ୍ରାୟ ୭୫୦ ବର୍ଷ ପୂର୍ବେ ଯୋଗରେ ପାରଙ୍ଗମ ଚକ୍ରଧରସ୍ୱାମୀ, ମହାରାଷ୍ଟ୍ରର ଦେବଗିରି ରାଜାଙ୍କ ଦରବାରରେ ଏକଦା ଉପସ୍ଥିତ ଥିଲେ । ସେତେବେଳେ ଶାଳିବାହାନ ନାମକ ଜଣେ ମନ୍ତ୍ରୀ (ଯିଏକି ଚକ୍ରଧର ସ୍ୱାମୀଙ୍କ ଠାରୁ ପୂର୍ବେ ଯୋଗ ଶିଖିଥିଲେ) ସଭାରେ ଉପସ୍ଥିତ ସଜ୍ଜନ-ମଣ୍ଡଳୀକୁ ପଚାରିଲେ, "ଆପଣମାନଙ୍କ ମଧ୍ୟରୁ କେହି ହଟଯୋଗ ସଂପର୍କରେ କିଛି ଜାଣିଛନ୍ତି କି ?" ସଭାରେ ସମସ୍ତେ ନିରୁତ୍ତର ରହିଲେ ।

ଏଇ ଅବସରରେ ଚକ୍ରଧର ସ୍ୱାମୀ ଯୋଗ୍ୟତା-ଭିତ୍ତିରେ ନିଜ ଶିଷ୍ୟ ଶାଳିବାହନଙ୍କୁ ଯୋଗ ବିଷୟରେ କହିବା ପାଇଁ ଆଜ୍ଞା ଦେଲେ ।

ଗୁରୁଙ୍କଠାରୁ ପ୍ରୋତ୍ସାହନ ପାଇ ମନ୍ତ୍ରୀ ଶାଳିବାହାନ ଉତ୍ଫୁଲ୍ଲିତ ହୋଇଗଲେ ଏବଂ ସଗର୍ବେ ଘୋଷଣା କଲେ ଯେ, ତାଙ୍କଠାରୁ ଯୋଗ ବିଷୟରେ ଆଉ କାହାରି ଅଧିକ ଜ୍ଞାନ ନାହିଁ । ତାପରେ ସେ ଯୋଗର ଗୁଣାବଳୀ କୀର୍ତ୍ତନ କରିବାରେ ଲାଗିଲେ । ଯଥା- ଯୋଗାଭ୍ୟାସ କଲେ, ବାଳ ପାଚେ ନାହିଁ; ଚର୍ମ ଶ୍ଳଥ ହୁଏ ନାହିଁ ଇତ୍ୟାଦି । ଏମିତି ସମୟରେ ଚକ୍ରଧର ସ୍ୱାମୀ ନିଜ ଶିଷ୍ୟର ପାଚିଲା ବାଳକୁ ଲକ୍ଷ୍ୟ କରି ପ୍ରଶ୍ନ କଲେ : ''ତମେ ଯଦି ଯୋଗ ଏତେ ଭଲ ଭାବେ ଅଭ୍ୟାସ କରୁଛ, ତାହେଲେ ତୁମଠାରେ ପାଚିଲା ବାଳ କିପରି ସମ୍ଭବ ହେଲା ?'' ଶାଳିବାହନ ଲଜ୍ଜିତ ହୋଇ ନିଜ ଦୋଷ ସ୍ୱୀକାର ପୂର୍ବକ ଉତ୍ତର ଦେଲେ, ''ତ୍ରୁଟିପୂର୍ଣ୍ଣ ଉପାୟରେ ଯୋଗାଭ୍ୟାସ ଯୋଗୁଁ ମୋର ଏଇ ଦୁର୍ଦ୍ଦଶା ।''

ପ୍ରକାଶ ଥାଉକି, ଉପରୋକ୍ତ ଘଟଣାଟି ତ୍ରୟୋଦଶ ଶତାବ୍ଦୀରେ ଲିଖିତ ''ଲୀଳାଚରିତ୍ର'' ନାମକ ପୁସ୍ତକରେ ବର୍ଣ୍ଣିତ ହୋଇଛି । ସେଥିରେ ଲିପିବଦ୍ଧ କରାଯାଇଛି ଯେ, ଚକ୍ରଧର ସ୍ୱାମୀ ବହୁବର୍ଷ ବଂଚିରହିଥିଲେ ସୁଦ୍ଧା କାୟା ତ୍ୟାଗ କରିବା ଯାଏଁ ତାଙ୍କ ଶରୀରରେ ପୂର୍ଣ୍ଣ ଯୌବନ ଅକ୍ଷୁର୍ଣ୍ଣ ଥିଲା । (ଦ୍ରଷ୍ଟବ୍ୟ: ୨୦୦୧ ସାଇନ୍ସ ଟୁଡ଼େ, ଜୁନ ୧୯୯୦ ସଂଖ୍ୟା) ।

ଆୟୁର୍ବେଦକୁ ଏଇ ଏଲୋପାଥ-ଯୁଗରେ ଏକ ''ଖିଆଲ'' ବୋଲି କୁହାଯାଉଥିବା ଯୋଗୁଁ ତ୍ରୟୋଦଶ ଶତାବ୍ଦୀର ଏହି ବୃତ୍ତାନ୍ତଟି ଆମ ବିଶ୍ୱାସଯୋଗ୍ୟ ହୋଇ ନ ପାରେ । ହୁଏତ ସାଂପ୍ରତିକ ଯୁଗରେ ଆମେ ଆୟୁର୍ବେଦ ଓ ଯୋଗଠାରୁ ଏମିତି କେତେକ ଚମତ୍କପ୍ରଦ ଦୃଷ୍ଟାନ୍ତ ପାଇଁ ବ୍ୟାକୁଳ ଭାବେ ଅପେକ୍ଷା କରି ରହିଛୁ । କିନ୍ତୁ ଆମ ମନରେ ଆଶଙ୍କା ହେଉଛି- ଏହା କଣ ଆଉ ଘଟିବ ? ବିଶେଷତଃ ଏଇ ଯୁଗରେ ଚକ୍ରଧରସ୍ୱାମୀଙ୍କ ପରିବର୍ତ୍ତେ ଶାଳିବାହାନଙ୍କ ପରି ଲୋକେ ଯୋଗାଭ୍ୟାସ କରୁଥିବା ଯୋଗୁଁ ଆମର ଏହି ଆଶଙ୍କା ଗୁରୁତର ମନେ ହେଉଛି ।



# ମୃତ୍ୟୁଦଣ୍ଡ ବନାମ ନ୍ୟାୟାଳୟରେ ହତ୍ୟା ?

ଦୋଷୀକୁ ଦଣ୍ଡ ଦେବା ବିଧେୟ ବୋଲି ପ୍ରାୟ ସମସ୍ତେ ଏକମତ । ବିଶେଷତଃ ଯେଉଁମାନେ ଜଘନ୍ୟ ଅପରାଧ ଘଟାଉଥାନ୍ତି ସେମାନେ କଠୋର ଶାସ୍ତି ଭୋଗିବା ଉଚିତ ବୋଲି ଯୁଗ ଯୁଗ ଧରି ବହୁବିଜ୍ଞ ବ୍ୟକ୍ତି ମତ ବ୍ୟକ୍ତ କରି ଆସୁଛନ୍ତି । ସ୍ଥଳବିଶେଷରେ ବିନା ଦ୍ୱିଧାରେ ଆସାମୀକୁ ମୃତ୍ୟୁଦଣ୍ଡ ଦିଆଯିବା ସଂପର୍କରେ ନୀତି ନିୟମମାନ ମଧ୍ୟ ପ୍ରଣୟନ କରାଯାଇଛି ।

ବିଭିନ୍ନ ଅନୁଧ୍ୟାନରୁ ଜଣାଯାଏ ଯେ, ପ୍ରାଚୀନ କାଳରେ ମୃତ୍ୟୁଦଣ୍ଡ ଭିନ୍ନ ଭିନ୍ନ ପ୍ରକାରେ ବହୁଳ ଭାବେ ପ୍ରଚଳିତ ଥିଲା । ଏହି ପ୍ରସଙ୍ଗରେ ପ୍ରାୟ ଖ୍ରୀଷ୍ଟପୂର୍ବ ୩୦୦ ମସିହାରେ ରଚିତ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରୁ କେତେକ ନିୟମ ଉଦ୍ଧାର କରାଯାଇପାରେ । ମୌର୍ଯ୍ୟ ଯୁଗରେ ମୃତ୍ୟୁଦଣ୍ଡ ବିଭିନ୍ନ ଉପାୟରେ କାର୍ଯ୍ୟକାରୀ କରାଯାଉଥିଲା । ତନ୍ମଧ୍ୟରେ ଗଳାଫାଶ ଲାଗଇବା, ପୋଡ଼ି ଦେବା, ଶର ବା ଅସ୍ତ୍ରବିଦ୍ଧ କରିବା, ପାଣିରେ ବୁଡ଼ାଇ ମାରିବା, ବଳଦ ସାହାଯ୍ୟରେ ଆସାମୀର ଅଙ୍ଗ ପ୍ରତ୍ୟଂଗମାନଙ୍କୁ ଟଣାଟଣି କରି ଛିନ୍ନ ବିଛିନ୍ନ କରିବା ଇତ୍ୟାଦି ଅନ୍ତର୍ଭୁକ୍ତ ।

ନୃଶଂସ ଭାବେ ହତ୍ୟା କରିଥିବା ଅପରାଧୀକୁ ଦଉଡ଼ି ଦ୍ୱାରା ଗଳାଫାଶ ଲଗାଇ ଫାଶୀଦଣ୍ଡ ଦିଆଯାଉଥିବା ବେଳେ ଦେଶଦ୍ରୋହ ଅଭିଯୋଗ ପାଇଁ ଆସାମୀକୁ ଆପଦ ମୁଖ-ମସ୍ତକ ଅଗ୍ନିରେ ଦଗ୍ଧ କରାଯାଉଥିଲା । ଅସ୍ତ୍ରଶସ୍ତ୍ର ଚୋରି କଲେ, ଶରବିଦ୍ଧ କରି ମାରି ଦିଆଯିବା ନିୟମ ଥିଲା । ଯଦି ବିଷ ପ୍ରୟୋଗ କରି କୌଣସି ମହିଳା କାହାରି ଜୀବନ ହାନି କରେ, ତେବେ ତାକୁ ଜଳାଶୟର ଅତଳ ଗହ୍ୱର ମଧ୍ୟକୁ ଫୋପାଡ଼ି ଦିଆଯାଉଥିଲା । କିନ୍ତୁ ସ୍ୱାମୀହନ୍ତା ପତ୍ନୀର ବିଭିନ୍ନ ଅଂଗପ୍ରତ୍ୟଙ୍ଗକୁ ବଳଦ ଦ୍ୱାରା ଛିଣ୍ଡାଇ ବାହାର କରି ଦିଆଯାଉଥିଲା ଏବଂ ଭୀଷଣ ଯନ୍ତ୍ରଣା ମଧ୍ୟରେ ଛଟପଟ ହୋଇ ତାକୁ ମରାଯାଉଥିଲା ।

ଖ୍ରୀଷ୍ଟପର ୨୦୦ ମସିହାରେ ରଚିତ ଯଜ୍ଞବଲ୍‌କ୍ୟ-ସ୍ମୃତିରେ ଲିଖିତ ଅଛି ଯେ, ଯଦି କୌଣସି ନାରୀ କୌଣସି ପୁରୁଷକୁ ହତ୍ୟା କରେ ତେବେ ତା ବେକରେ ଗୋଟିଏ ଓଜନିଆ ପଥର ବାନ୍ଧି ତାକୁ ସଲିଳ-ସମାଧି ଦିଆଯିବ । ଗୃହଦାହ କିମ୍ବା ରାଜପତ୍ନୀଙ୍କ ସହିତ ଅବୈଧ ପ୍ରଣୟ ପ୍ରମାଣିତ ହେଲେ, ଅଭିଯୁକ୍ତକୁ ନୃଶଂସ ଭାବେ ପୋଡ଼ି ଦିଆଯାଉଥିଲା ।

ଏହି କଠୋର ଦଣ୍ଡବିଧି କେବଳ ଆମର ଶାସନ ବା ଧର୍ମ ମଧ୍ୟରେ ସୀମିତ ନ ଥିଲା । ବୌଦ୍ଧ ଯୁଗର ଶାସ୍ତ୍ରିମାନଙ୍କ ମଧ୍ୟରେ "ଶଙ୍ଖ ମୁଣ୍ଡିକ ଦଣ୍ଡ" ନାମକ ଏକ ଶାସ୍ତି ପ୍ରଚଳିତ

ଥିଲା, ଯାହାକି ମୃତ୍ୟୁଦଣ୍ଡ ପରି ଚରମ ନ ହେଲେ ସୁଦ୍ଧା ଅତି ଯନ୍ତ୍ରଣାଦାୟକ ଥିଲା । ଏହି ଦଣ୍ଡ ଅନୁସାରେ ଆସାମୀର ଖପୁରୀର ଚମଡ଼ାକୁ ଗୋଟିଏ କାନ ପାଖରୁ ଅନ୍ୟ କାନ ଯାଏଁ ଗୋଲ କରି କାଟିବା ପରେ, ସେଥିର ବାଳକୁ ଧରି ଖୁବ୍‌ଜୋରରେ ଉପରକୁ ଝିଙ୍କି ଦିଆଯାଉଥିଲା । ଏହା ଦ୍ୱାରା ଛେଳି ବା କୁକୁଡ଼ାର ଛାଲ ଉତାରିବା ପରି ଅପରାଧୀର ଖପୁରୀ ଉପରର ଚମଡ଼ା ଉଠି ଆସୁଥିଲା । ତାପରେ ଏହି ଚମଛଡ଼ା ସ୍ଥାନକୁ ଝାମାଇଟା ଦ୍ୱାରା ଘଷି ଶଙ୍ଖ ପରି ଚିକ୍କଣ ଓ ଧଳା କରାଯାଉଥିଲା ।

ଏହି ପ୍ରକାର ବିଭିନ୍ନ କଠୋର ଶାସ୍ତି ବିଧାନ କରିବା ପାଇଁ ଦଣ୍ଡଧାରୀମାନଙ୍କୁ କ୍ଷମତା ଦିଆଯାଇଛି । କିନ୍ତୁ ଏହା କାର୍ଯ୍ୟକ୍ଷେତ୍ରରେ କିପରି ପ୍ରୟୋଗ କରାଯାଇଥାଏ, ତାହା ବେଳେ ବେଳେ ଆପତ୍ତିଜନକ ମନେ ହୁଏ । ବିଶେଷତଃ ମୃତ୍ୟୁ-ଦଣ୍ଡାଦେଶ ବେଳେ ଯେମିତି ସତର୍କତା ଅବଲମ୍ବନ କରିବା କଥା, ତାହା ଅନେକ ସମୟରେ ପାଳିତ ହେଉ ନଥିବା ଯୋଗୁଁ, ମୃତ୍ୟୁଦଣ୍ଡକୁ ନ୍ୟାୟାଳୟ ଦ୍ୱାରା ହତ୍ୟା ବୋଲି କେହି କେହି ଆକ୍ଷେପ କରି ପାରନ୍ତି । ଏହି ପ୍ରସଙ୍ଗରେ କେତୋଟି ଦୃଷ୍ଟାନ୍ତ ପ୍ରଣିଧାନଯୋଗ୍ୟ ।

ସାଲେମର୍ ମାସାଚ୍ୟୁସେଟ୍‌ସ-ସି-ପୋର୍ଟିଠାରେ ମାଥ୍ୟୁ ମାଉଲ୍ ନାମକ ଜଣେ ଗରିବ ପ୍ୟୁରିଟାନ୍-ପନ୍ଥୀ ବ୍ୟକ୍ତି ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ବାସ କରୁଥାଏ । ତାର ଗୋଟିଏ ଝରଣା ଥିଲା, ଯାହାର କି ପାଣି ସ୍ୱଚ୍ଛ ଓ ମଧୁର । ଗିଲ୍‌ବର୍ଟ ପିଞ୍ଚିଆନ୍ ନାମକ ଜଣେ ଧନୀ ବ୍ୟବସାୟୀ ମାଉଲ୍‌ର ଏହି ଝରଣାଟି ଉପରେ ଲୋଲୁପ ଦୃଷ୍ଟି ପକାଇଲା । ତେଣୁ ସେ ଷଡ଼ଯନ୍ତ୍ର କରି ମାଉଲ୍ ବିରୋଧରେ ଗୁଣି ଗାରେଡ଼ି କରୁଥିବା ଦର୍ଶାଇ ଅଦାଲତରେ ମିଥ୍ୟା ଅଭିଯୋଗ ପେଶ୍ କଲା ।

ମକଦ୍ଦମାରେ ମାଉଲ୍ ପରାଜିତ ହୋଇ ମୃତ୍ୟୁଦଣ୍ଡ ପାଇଲା । କିନ୍ତୁ ସେ ଭଲ ଭାବେ ଜାଣେ ଯେ ସେ ନିର୍ଦ୍ଦୋଷ ଏବଂ ତାର ପ୍ରାଣଦଣ୍ଡାଦେଶ ପାଇଁ କୁଚକ୍ରୀ ପିଞ୍ଚିଆନ୍ ଦାୟୀ । ତେଣୁ ଫାଶୀଖୁଣ୍ଟକୁ ଚଢ଼ିବା ବେଳେ ସେ ମୃତ୍ୟୁକାଳୀନ ଭବିଷ୍ୟବାଣୀ ଶୁଣାଇଲା, ''ଭଗବାନ ପିଞ୍ଚିଆନକୁ ରକ୍ତପାନ କରିବା ପାଇଁ କହିବେ ।''

ନିଜ ଷଡ଼ଯନ୍ତ୍ର ଚରିତାର୍ଥ ହେବା ପରେ ପିଞ୍ଚିଆନ୍ ଉକ୍ତ ଝରଣା କୂଳରେ ୧୬୬୮ ମସିହାରେ ଗୋଟିଏ ସୁରମ୍ୟ ଅଟ୍ଟାଳିକା ନିର୍ମାଣ କଲା । କିନ୍ତୁ ସେ ଯେଉଁଦିନ ଗୃହ ପ୍ରବେଶ ଉତ୍ସବ ଆୟୋଜନ କଲା, ସେଦିନ ହଠାତ ତା ପାଟିରୁ ଅବାରିତ ରକ୍ତସ୍ରାବ ହେଲା ଏବଂ ସେ ଅଳ୍ପ ସମୟ ମଧ୍ୟରେ ମୃତ୍ୟୁ ବରଣ କଲା । ସେତେବେଳେ ସେଠାରେ ଉପସ୍ଥିତ ଥିବା ଜନତା ମାଉଲ୍‌ର ମୃତ୍ୟୁକାଳୀନ ଅଭିଶାପ ବିଷୟ ସ୍ମରଣ କରିଥିଲେ ।

ଏହି ଘଟଣାରେ ଲକ୍ଷ୍ୟ କରିବା କଥା ଯେ, ଅଦାଲତର ସତର୍କ ଦୃଷ୍ଟି ସତ୍ତ୍ୱେ ମାଉଲ୍ ପରି ଜଣେ ନିରପରାଧ ବ୍ୟକ୍ତି ପ୍ରାଣ ହରାଇଲା । ସୁଖର ବିଷୟ ଯେ, ଭଗବାନଙ୍କ

ନ୍ୟାୟବିଚାରରୁ ପିଞ୍ଚିଅନ୍ ପରି ଜଣେ ଜଘନ୍ୟ ହତ୍ୟାକାରୀ ଅକାଳରେ ମୃତ୍ୟୁ ବରଣ କଲା ଏବଂ ନିର୍ଦ୍ଦୋଷ ମାଉଲ୍‌ର ଶାପ ଫଳ ପ୍ରଦ ହେବା ପରି ଜନସାଧାରଣଙ୍କ ମନରେ ପ୍ରତ୍ୟୟ ଜାତ ହେଲା । କିନ୍ତୁ ସମଗ୍ର ଘଟଣାଟିକୁ ବିଶ୍ଳେଷଣ କଲେ ଜଣାଯାଏ ଯେ, ନ୍ୟାୟାଳୟରୁ ପ୍ରକୃତ ନ୍ୟାୟ-ବିଚାର ମିଳିଲା ନାହିଁ । ଯଦି ଅଦାଲତର ବିଚାର-ପ୍ରଣାଳୀରେ ଏପରି ତ୍ରୁଟି ଅନ୍ତର୍ନିହିତ, ତାହାହେଲେ ଏହି ପରିସ୍ଥିତି ଅବଶ୍ୟ ଅକ୍ଷମଣୀୟ ଏବଂ ମୃତ୍ୟୁ ଦଣ୍ଡାଦେଶ ଦେବା ସେମାନଙ୍କ ପକ୍ଷେ ଯୁକ୍ତିଯୁକ୍ତ ହୋଇ ନ ପାରେ ।

ମାଉଲ୍-ମାମଲା ପରି ଅନ୍ୟ ଗୋଟିଏ ଲୋମହର୍ଷଣକାରୀ ଘଟଣା ଏଠାରେ ଉପସ୍ଥାପନା କରାଯାଇପାରେ । ଅବଶ୍ୟ ଏହି ଘଟଣାର ଗୋଟିଏ ସ୍ୱାଗତଯୋଗ୍ୟ ଦିଗ ହେଉଛି ଯେ, ଆସାମୀ ବିରୁଦ୍ଧରେ ନ୍ୟାୟାଳୟ ଯେତେ ଯାହା ଅନ୍ୟାୟ କରୁଥିଲେ ସୁଦ୍ଧା, ଦୈବଶକ୍ତି । ତା ସପକ୍ଷରେ ସକ୍ରିୟ ହେଉଥାଏ । ଫଳରେ ଆସାମୀ ଦଣ୍ଡିତ ହେବା ପରିବର୍ତ୍ତେ ପରିଶେଷରେ ପୁରସ୍କୃତ ହୋଇ ପାରିଲା ।

ଉନବିଂଶ ଶତାବ୍ଦୀର ଶେଷ ଦଶକରେ ଉପରୋକ୍ତ ଅତି ବିସ୍ମୟଜନକ ଘଟଣାଟି ଘଟିଥିଲା । ମିସିସିପିର ଗୋଟିଏ କୃଷକକୁ ହତ୍ୟା କରିଥିବା ଅପରାଧରେ ୱିଲ୍ ପର୍ଭିସ ନାମକ ଜଣେ ବ୍ୟକ୍ତିକୁ ମୃତ୍ୟୁ-ଦଣ୍ଡାଦେଶ ହୋଇଥିଲା । ୭/୨/୧୮୯୪ ତାରିଖରେ ଫାଶୀମଞ୍ଚ ଉପରକୁ ନିଆଯାଇ ଯେତେବେଳେ ଗଳାଫାଶଟି ତା ବେକ ଉପରକୁ ଓହଳାଗଲା, ଏହା ବେକରେ ନ ଲାଗି ତଳକୁ ଖସି ଚାଲିଗଲା । ତଥାପି ତାକୁ ଯେତେବେଳେ ଫାଶୀଦଣ୍ଡ ନ୍ୟାୟାଳୟ ଦ୍ୱାରା ଦିଆଯାଇଛି, ତାହା ଯେ କୌଣସି ମତେ ପାଳନ କରିବାକୁ ପଡ଼ିବ । ତେଣୁ ଫାଶିଆଳକୁ ଦ୍ୱିତୀୟ ଥର ଚେଷ୍ଟା କରିବାକୁ ପଡ଼ିଲା । କିନ୍ତୁ ଏଇ ଥର ମଧ୍ୟ ସେ ଆଶ୍ଚର୍ଯ୍ୟଜନକ ଭାବେ ଗଳାଫାଶ କବଳରୁ ରକ୍ଷା ପାଇ ଯାଇଥିଲା । ଏମିତି ଥରକୁ ଥର ବିଫଳ ହେବା ଯୋଗୁଁ ପରବର୍ତ୍ତୀ ଆଦେଶ ପର୍ଯ୍ୟନ୍ତ ଉକ୍ତ ଦଣ୍ଡବିଧାନକୁ ସ୍ଥଗିତ ରଖାଗଲା ।

ଇତ୍ୟବସରରେ ପର୍ଭିସ୍‌ର ଓକିଲଙ୍କ ବହୁ ଅନୁରୋଧ ସତ୍ତ୍ୱେ ଏହି ଦଣ୍ଡାଦେଶ କୋହଳ କରାଯାଇ ନଥିଲା । ୧୨.୧୨.୧୮୯୫ ତାରିଖରେ ପୁଣି ଫାଶୀ ଦିଆଯିବା ପାଇଁ ଯେତେବେଳେ ଦିନ ସ୍ଥିର କରାଗଲା, ପର୍ଭିସ୍‌ର କେତେ ଜଣ ସାଥି ତାକୁ ଜେଲ ଭିତରୁ କୌଶଳ କ୍ରମେ ଲୁଚାଇ ନେଇ ମୁକ୍ତ କରିଦେଲେ ।

ଏମିତି କେତେକ ଘଟଣା ଯୋଗୁଁ ପର୍ଭିସ୍ ସାରା ଯୁକ୍ତରାଷ୍ଟ୍ରରେ ବିଖ୍ୟାତ ହୋଇଗଲା । ତା ପରବର୍ଷ ଯେତେବେଳେ ମିସିସିପି ରାଜ୍ୟ ପାଇଁ ଏକ ନୂତନ ଗଭର୍ଣ୍ଣର ନିଯୁକ୍ତ ହେଲେ, ପର୍ଭିସ୍ କର୍ତ୍ତୃପକ୍ଷଙ୍କ ନିକଟରେ ଆତ୍ମସମର୍ପଣ କଲା । ତତ୍କାଳୀନ ନୂତନ ଗଭର୍ଣ୍ଣର୍ ପର୍ଭିସ ପ୍ରତି ସହାନୁଭୂତିଶୀଳ ହୋଇ ତାର ମୃତ୍ୟୁଦଣ୍ଡକୁ କୋହଳ କରି ଯାବଜ୍ଜୀବନ କାରାବାସରେ

ପରିବର୍ତ୍ତନ କରିଦେଲେ । ପରିଶେଷରେ ଜନସାଧାରଣଙ୍କ ପ୍ରବଳ ଚାପରେ ପର୍ଭିସ୍‌କୁ ୧୮୯୮ ସାଲରେ କାରାମୁକ୍ତ କରିଦେଇଥିଲେ ।

ତେବେ ଏହି ଘଟଣାର ଏଠାରେ ପରିସମାପ୍ତି ଘଟି ନଥିଲା । ବହୁ ବର୍ଷ ପରେ ୧୯୧୭ ସାଲରେ ଜୋସେଫ ବିଅର୍ଡ଼ ନାମକ ଜଣେ ବ୍ୟକ୍ତି ଶେଷ ନିଃଶ୍ୱାସ ତ୍ୟାଗ କରିବା ପୂର୍ବରୁ ଘୋଷଣା କଲା ଯେ, ମିସିସିପିର ଯେଉଁ କୃଷକର ହତ୍ୟା ପାଇଁ ପର୍ଭିସକୁ ଦଣ୍ଡିତ କରାଯାଇଥିଲା, ସେଥିପାଇଁ ପର୍ଭିସ ମୋଟେ ଦାୟୀ ନୁହେଁ, ଏହି ହତ୍ୟାକାଣ୍ଡଟି ସେ ନିଜେ ଘଟାଇଛି ।

ଜୋସେଫ୍‌ର ଏହି ସ୍ୱୀକାରୋକ୍ତି ଚତୁର୍ଦ୍ଦିଗରେ ଚାଞ୍ଚଲ୍ୟ ସୃଷ୍ଟି କଲା । ପ୍ରକାଶ ଥାଉକି, ଏଇ ଗୁରୁତ୍ୱପୂର୍ଣ୍ଣ ମକଦ୍ଦମାର ବିଚାର ଗୋଟିଏ ବାରଜଣିଆ ବିଚାରକ-ମଣ୍ଡଳୀ କରୁଥିଲେ । ସେମାନେ ଯେତେବେଳେ ପର୍ଭିସ୍‌କୁ ଦୋଷୀ ସାବ୍ୟସ୍ତ କରିଥିଲେ, ସେତେବେଳେ ନିରପରାଧ ପର୍ଭିସ ଆଶ୍ଚର୍ଯ୍ୟ ହୋଇଯାଇଥିଲା ଏବଂ ଗଭୀର ଆର୍ତ୍ତନାଦର ସହିତ ଅଦାଲତ-କକ୍ଷରେ ଚିତ୍କାର କରି କହିଥିଲା, ‘‘ତମେ ବାରଜଣ ଯାକ ବିଚାରପତି ମରିବା ଯାଏଁ ମୁଁ ଏମିତି ବଂଚି ରହିବି ।’’

ଭଗବାନଙ୍କ ବିଚାର ବଡ଼ ବିଚିତ୍ର ଯେ, ପ୍ରକୃତରେ ଜଣକ ପରେ ଜଣେ ହୋଇ ବାରଜଣ ଯାକ ବିଚାରପତି ମରିବା ଯାଏଁ ନିର୍ଦ୍ଦୋଷ ପର୍ଭିସ୍ ବଂଚି ରହିଥିଲା । ପ୍ରକୃତରେ ଦ୍ୱାଦଶ ବିଚାରପତି ମରିବାର ତିନି ଦିନ ପରେ ସେ ଗଭୀର ଆତ୍ମସନ୍ତୋଷର ସହିତ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲା ।

ଏହି ଘଟଣା ଦ୍ୱାରା ଦାବୀ କରାଯାଇପାରେ ଯେ, ସତ୍ୟର ଜୟ ହୁଏ । ତେବେ ଏହି ଆଦର୍ଶ ହାସଲ କରିବା ପାଇଁ ନ୍ୟାୟାଳୟ କେତେଦୂର ସହାୟକ- ତାହା ବିଜ୍ଞ ବ୍ୟକ୍ତିମାନେ ବିଚାର କରନ୍ତୁ । ସେ ଯାହାହେଉ, ପର୍ଭିସ୍ ଅକାରଣରେ ଦୁଃଖ କଷ୍ଟ ଭୋଗିଥିବା ଯୋଗୁଁ ମିସିସିପି କର୍ତ୍ତୃପକ୍ଷ ତାକୁ ୫,୦୦୦ ଡଲାର ପୁରସ୍କାର ! ଦେଇଥିଲେ । (ଦ୍ରଷ୍ଟବ୍ୟ: କ୍ଳେରିଅନ୍ ଲେଜର୍ ୧୯୫୫; ଡେଲି କ୍ଳେରିଅନ୍ ଲେଜର୍ ୧୯୧୭; ନ୍ୟୁ ଅର୍କ ଟାଇମ୍‌ସ ୧୮୯୪; ଟି.ପି. ନ୍ୟୁ ଅର୍ଲିନ୍ ଷ୍ଟେଟ ମ୍ୟାଗାଜିନ ୧୯୪୭) ।

ପ୍ରକାଶ ଥାଉକି, ପର୍ଭିସ-ମାମଲାରେ ବିଚାରକ-ମଣ୍ଡଳୀ ଆଇନାନୁମୋଦିତ ପନ୍ଥାରେ ମକଦ୍ଦମା ପରିଚାଳନା କରିଥିବେ ଏବଂ ନିରପେକ୍ଷ ଭାବେ ସେମାନଙ୍କ ରାୟ ଅବଶ୍ୟ ଦେଇଥିବେ । ସେମାନଙ୍କ ବିରୋଧରେ କୌଣସି ବିଷୟରେ ସେମିତି କିଛି ଅଭିଯୋଗ ଅଣାଯାଇ ନାହିଁ । ତଥାପି ସେମାନଙ୍କ ଦ୍ୱାରା ଅନ୍ୟାୟ ପରିବେଷ୍ଟିତ ହେବା ଦୁର୍ଭାଗ୍ୟର ବିଷୟ । ବୋଧହୁଏ ଐଶୀଶକ୍ତି ପ୍ରଭାବରୁ ବଳି ପଡ଼ିବାକୁ ଯାଉଥିବା ଜଣେ ନିରୀହ ବ୍ୟକ୍ତିର

ପ୍ରାଣରକ୍ଷା ହୋଇଗଲା । ପୁନଶ୍ଚ ଘଟଣାର କ୍ରମ ଏମିତି ତାଳ ପକାଇ ଚାଲିଲା ଯେ, ଏଇ ଯୁଗରେ ଅଭିଶାପର କୌଣସି ମୂଲ୍ୟ ନାହିଁ ବୋଲି ସର୍ବ ସାଧାରଣ ବିଶ୍ୱାସ କରୁଥିଲେ ସୁଦ୍ଧା, ଏହି କ୍ଷେତ୍ରରେ ତାର ବ୍ୟତିକ୍ରମ ଘଟିଲା । ବାସ୍ତବିକ ଜଣେ ଦଣ୍ଡିତର ଶାପ କପରି ଦଣ୍ଡଧାରୀଙ୍କ ଉପରେ ନିଷ୍ଠୁର ଭାବେ ପଡ଼ିଲା- ତାହା ଅବିଶ୍ୱାସ୍ୟ ହେଲେ ସୁଦ୍ଧା ସେତେବେଳେ ବେଶ୍ ଆଲୋଡ଼ନ ସୃଷ୍ଟି କରିଥିଲା ।

ଅବଶ୍ୟ ଏହି ଘଟଣାମାନଙ୍କ ଦ୍ୱାରା ନିଶ୍ଚିତ ଭାବେ ପ୍ରମାଣ କରାଯାଇ ପାରିବ ନାହିଁ ଯେ, ସତ୍ୟର ସର୍ବଦା ଜୟ ହୁଏ ଏବଂ ନିର୍ଦ୍ଦୋଷ ଫାଶୀଆସାମୀମାନେ କୌଣସି ନାଁ କୌଣସି ମିରାକଲ୍ ଦ୍ୱାରା ଗଳାଫାଶରୁ ରକ୍ଷା ପାଇଯାଇଥାନ୍ତି ।

ମୃତ୍ୟୁ ଦଣ୍ଡକୁ ବର୍ତ୍ତମାନ ଅନ୍ୟ ଏକ ଦୃଷ୍ଟିକୋଣରୁ ଆଲୋଚନା କରାଯାଉ । ୫/୭/୮୩ ତାରିଖରେ ପି.ଟି. ଆଇ ଦ୍ୱାରା ପ୍ରଦତ୍ତ ଗୋଟିଏ ସଂବାଦରୁ ଆମେ ଜାଣୁଁ ଯେ, ବାହାରିନ୍‌ରେ ଶ୍ରୀମତୀ ସେଲି ଏମ୍ ପାରିରା ନାମ୍ନୀ ଶ୍ରୀଲଙ୍କାର ଜଣେ ଖ୍ରୀଷ୍ଟିଆନ୍ ଯୁବତୀ ପୂର୍ବରୁ କିରାଣୀ ଭାବେ ନିଯୁକ୍ତ ହୋଇ କାର୍ଯ୍ୟରତଥିଲେ । ସେଠାରେ ମହମ୍ମଦ ମୁନୀର୍ ହାଫିଦ ନାମକ ପାକିସ୍ଥାନର ଜଣେ ମୁସଲମାନ ଯୁବକ ବଢ଼େଇ ଭାବେ କାମ କରୁଥିଲେ । ଉଭୟେ ପୂର୍ବରୁ ବିବାହିତ ହୋଇଥିବା ସତ୍ତ୍ୱେ ସେମାନେ ପ୍ରଣୟରେ ଲିପ୍ତ ହେଲେ । ଏହି ଘଟଣାଟିର ବିଚାର କରାଯାଇ ଖ୍ରୀଷ୍ଟଧର୍ମୀ ଶ୍ରୀମତୀ ପାରିରଙ୍କୁ ତିନି ମାସ ଜେଲ ଏବଂ ୭୫ ପାହାର ବେତମାଡ଼ ମିଳିଲା । କିନ୍ତୁ ଇସଲାମୀୟ ଆଇନ ଅନୁସାରେ ଶ୍ରୀ ହାଫିଦଙ୍କୁ ଟେକା ମାରି ମାରି ମୃତ୍ୟୁଦଣ୍ଡ ଭୋଗିବାକୁ ଆଦେଶ ଦିଆଗଲା ।

ଉପରୋକ୍ତ ଯୁବକ ଓ ଯୁବତୀ ଉଭୟେ ସମାନ ଅପରାଧ କରିଥିବା ସ୍ଥଳେ ସେମାନଙ୍କୁ ଯେମିତି ପୃଥକ୍ ଶାସ୍ତି ମିଳିଥିଲା- ତାହା କେତେକ ଲୋକ ନାପସନ୍ଦ କରି ପାରନ୍ତି । କିନ୍ତୁ ଏହି ଦଣ୍ଡାଦେଶ ଧର୍ମଭିତ୍ତିକ ଥିଲା । ଶ୍ରୀ ମୁନିର ହୁଏତ ନିଜ ଧର୍ମ ପ୍ରତି ଆସକ୍ତ ହୋଇ ଥିବା ଯୋଗୁଁ ଏହି ପକ୍ଷପାତପୂର୍ଣ୍ଣ ଦଣ୍ଡାଦେଶକୁ ମୁଣ୍ଡ ପୋତି ସହି ଯାଇଥିବେ । ନଚେତ ଏମିତି ବି ହୋଇପାରେ ଯେ, ସେ ମାଉଲ୍ ଓ ପର୍ଣ୍ଣିସ୍‌ଙ୍କ ପରି ବିଚାରପତିଙ୍କୁ ଅଭିଶାପ ଦେଇଥିବେ; ଯାହାକି ଫଳପ୍ରଦ ହୋଇ ନଥିଲା । ପ୍ରକୃତରେ ଅଭିଶାପମାନ ଯେ ପ୍ରତି କ୍ଷେତ୍ରରେ ପ୍ରଭାବଶାଳୀ ହେବ- ଏମିତି ଧାରଣା ଆମେ ନ ରଖିବା ଉଚିତ । ସେ ଯାହାହେଉ, ସାମଗ୍ରିକ ଭାବେ ବିଷୟଟିକୁ ବିଚାର କଲେ ଆମର ହୃଦବୋଧ ହୁଏ ଯେ, ଉକ୍ତ ରାୟର ଯଥାର୍ଥତା ବିବାଦମୁକ୍ତ ନୁହେଁ ।

ଏଠାରେ ସ୍ମରଣ କରାଯାଇ ପାରେ ଯେ, ପାପ ପ୍ରଣୟ ସଂପର୍କରେ କଠୋର ଦଣ୍ଡମାନ ପ୍ରାଚୀନ ଯୁଗରୁ ପ୍ରଚଳିତ ଅଛି । କେବଳ ''ଯଜ୍ଞ ବଲ୍‌କ୍ୟ-ସ୍ମୃତି''ରେ ନୁହେଁ;

ଅନ୍ୟ ମତାନୁସାରେ ମଧ ଏହା ଏକ ଗୁରୁତର ଅପରାଧ ବୋଲି ସ୍ୱୀକୃତ ହୋଇଛି ଏବଂ ଏଥିପାଇଁ ମୃତ୍ୟୁଦଣ୍ଡ ଯଥାର୍ଥ ବୋଲି ଗୃହୀତ ହୋଇଛି । ତେବେ ବର୍ତ୍ତମାନ ଯୁଗରେ, କେତେକ ସ୍ଥଳରେ, ଅବୈଧ ଯୌନ ସଂପର୍କ ଓ ପାଶବିକ ଅତ୍ୟାଚାର ବିଷୟରେ ଭିନ୍ନ ମତ ପୋଷଣ କରାଯାଉଛି ।

୧୯୮୩ ସାଲରେ ସାଉଥ୍ କାରୋଲିନାର ଅଣ୍ଡରସନ୍ଠାରେ ତିନି ଜଣ ଯୁବକ ଜଣେ ୨୩ ବର୍ଷ ବୟସ୍କା ଯୁବତୀକୁ ଧର୍ଷଣ କରିବା ପରେ ତାକୁ ଭୀଷଣ ମାଡ଼ ଦେଇ ଆକ୍ରାନ୍ତ କରି ଦେଇଥିଲେ । ଏହି ଅପରାଧର ବିଚାର କରି ମାନ୍ୟବର ନ୍ୟାୟମୂର୍ତ୍ତି ଆଦେଶ ଦେଲେ ଯେ, ଅଭିଯୁକ୍ତ ଅପରାଧୀମାନଙ୍କୁ ୩୦ ବର୍ଷ କାରାଦଣ୍ଡ ଭୋଗିବାକୁ ପଡ଼ିବ । କିନ୍ତୁ ସେମାନେ ଯଦି କୌଣସି ରାସାୟନିକ ପ୍ରକ୍ରିୟା ବା ଅସ୍ତ୍ରୋପଚାର ଦ୍ୱାରା ନପୁଂସକ ହେବା ପାଇଁ ପ୍ରସ୍ତୁତ ଅଛନ୍ତି, ତାହହେଲେ ସେମାନଙ୍କୁ ଉକ୍ତ ଜେଲଦଣ୍ଡ ଭୋଗିବାକୁ ପଡ଼ିବ ନାହିଁ । ଅପରାଧକୁ ଯଥାଯଥ ବିଚାର କରି ସେ ଏପରି ଅଭିନବ ବିକଳ୍ପ-ଆଦେଶ ଦେଇଛନ୍ତି ବୋଲି ସେତେବେଳେ ଦର୍ଶାଇଥିଲେ । ଏହି ରାୟରେ ମୃତ୍ୟୁଦଣ୍ଡ ତ ଦୂରର କଥା; କାରାବାସକୁ ମଧ ଏଡ଼ାଇବା ପାଇଁ ଏକ ବିକଳ୍ପ ଦଣ୍ଡ ଉଲ୍ଲେଖ କରାଯାଇଛି । ତେବେ ନପୁଂସକ ହେବା ମଧ କିଛି କମ୍ କଠୋର ଓ ନୃଶଂସ ବ୍ୟବସ୍ଥା ନୁହେଁ ବୋଲି ଅଭିଯୁକ୍ତଙ୍କ ଓକିଲ ସେତେବେଳେ ତୀବ୍ର ପ୍ରତିବାଦ କରିଥିଲେ ।

ପ୍ରକୃତରେ ନପୁଂସକ ହେବା ପରିବର୍ତ୍ତେ ସୁଗମ ଓ ଅଧିକ ଗ୍ରହଣୀୟ ଉପାୟ ରହିଥିବା ବିଷୟ ଅନ୍ୟ ଏକ ମକଦ୍ଦମାର ରାୟରୁ ଜଣାଯାଏ । ଅଳ୍ପ କେତେ ବର୍ଷ ପୂର୍ବେ ଅପଜନ୍ ଫର୍ମାସ୍ୟୁଟିକାଲ୍ କମ୍ପାନୀର ଜଣେ ଦାୟାଦ ନିଜର ୧୪ ବର୍ଷ ବୟସ୍କା ସାବତ-କନ୍ୟା ପ୍ରତି ପାଶବିକ ଅତ୍ୟାଚାର କରିଥିଲେ । ଘଟଣାଟି ଧରା ପଡ଼ିବା ପରେ ଗୋଟିଏ ମକଦ୍ଦମା ରୁଜୁ କରାଗଲା । ମାମଲାଟିର ଶୁଣାଣୀ ଶେଷ ହେବା ପରେ ମାନ୍ୟବର ବିଚାରପତି ମନ୍ତବ୍ୟ ଦେଲେ, ''କେତେକ ପୁରୁଷଙ୍କ ଶରୀରରେ ଅଧିକ ପରିମାଣରେ ପୁ-ହାର୍‌ମୋନ୍ ଜାତ ହୋଇଥାଏ; ଯାହା ଫଳରେ ସାଧାରଣ ବ୍ୟକ୍ତିଙ୍କ ଅପେକ୍ଷା ସେମାନଙ୍କ ଯୌନ-କ୍ଷୁଧା ଅତ୍ୟଧିକ ବୃଦ୍ଧି ପାଏ.. ଏବଂ ସେମାନେ ଯୌନ-ଲାଳସା ନିୟନ୍ତ୍ରଣ କରିବାରେ ଅସମର୍ଥ ହୋଇଥାନ୍ତି ।'' ଏହି କାମ-ପିପାସୁ ବ୍ୟକ୍ତିଙ୍କଠାରେ ଟେଷ୍ଟୋସ୍ଟେରୋନ୍‌ର ମାତ୍ରା ଅଧିକ ଥାଏ ବୋଲି ଭେଷଜ ବିଜ୍ଞାନୀଙ୍କ ମତ । ତେଣୁ ସେମାନଙ୍କୁ ଯୌନ ଅପରାଧରୁ ନିବୃତ୍ତ କରିବାକୁ ହେଲେ ଟେଷ୍ଟୋସ୍ଟେରୋନ୍ କମାଇବା ପାଇଁ ଉପଯୁକ୍ତ ଔଷଧ ଦେବାକୁ ପଡ଼ିବ । ଏହି କାରଣରୁ ବିଚାରପତି ମହାଶୟ ଉପରୋକ୍ତ ଅଭିଯୁକ୍ତକୁ ଜେଲ୍‌କୁ ନ ପଠାଇ ଆବଶ୍ୟକୀୟ ଔଷଧ ସେବନ କରିବା ପାଇଁ ପରାମର୍ଶ ଦେଇଥିଲେ । ପ୍ରକାରାନ୍ତରେ, ଏହାର ଅନ୍ୟ ଏକ ଅର୍ଥ ହୋଇପାରେ ଯେ, ଅଦାଲତ ଦ୍ୱାରା ଅଦ୍ୟାବଧି ଯେଉଁମାନେ ମୃତ୍ୟୁଦଣ୍ଡ ଭୋଗିଛନ୍ତି,

ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ନ୍ୟାୟାଳୟ ଦ୍ୱାରା ହତ୍ୟା କରାଯାଇଥିବା ସହିତ ସମାନ ! କାରଣ ଏହି ମର୍ମାନୁଯାୟୀ ସେମାନଙ୍କୁ ନ ମାରି ଔଷଧ ଓ ଇଂଜେକସନ୍ ଉପଯୁକ୍ତ ଭାବେ ଦିଆଯାଇଥିଲେ, ସେମାନେ ଯଥାର୍ଥ ନ୍ୟାୟ ପାଇଥାନ୍ତେ ।

ଅବଶ୍ୟ ମିଆମିସ୍ଥିତ ଫ୍ଲୋରିଡ଼ା ଇଣ୍ଟରନ୍ୟାସନାଲ ବିଶ୍ୱବିଦ୍ୟାଳୟର ଅପରାଧ-ନ୍ୟାୟ ଓ ବିଜ୍ଞାନ ବିଭାଗର ପ୍ରଫେସର ୱିଲିୟମ୍ ଲି ୱିଲବ୍ୟାଙ୍କ୍ସ ଏହି ଧରଣର ଅପରିଣାମଦର୍ଶୀ ନ୍ୟାୟ ବିଚାର ପ୍ରତି ନିଜର ଗଭୀର ଅସନ୍ତୋଷ ପ୍ରକାଶ କରି ରହିଛନ୍ତି ଯେ, ଏହା ଦ୍ୱାରା ଅପରାଧ ଓ ବ୍ୟଭିଚାରର ଏକ ନୂତନ ଯୁଗ ଆରମ୍ଭ ହେଲା । ତଥାପି ମୃତ୍ୟୁଦଣ୍ଡ ପାଇବାକୁ ଯୋଗ୍ୟ ହେଉଥିବା ଆସାମୀକୁ ଯେ ''ରୁଗ୍‌ଣ ବ୍ୟକ୍ତି'' ବୋଲି ଦର୍ଶାଯାଇ ଔଷଧ ସେବନ କରିବାକୁ କେବଳ କୁହାଯିବ -ଏହା ସବୁଠାରୁ ଆଶ୍ଚର୍ଯ୍ୟଜନକ ମନେ ହୁଏ । ଏହା ଦ୍ୱାରା ନ୍ୟାୟ-ବିଭାଗ ଏକ ନୂତନ ଆଭିମୁଖ୍ୟ ପାଇଲା । ଏଣିକି ବିଚାରପତିଙ୍କ ସ୍ଥାନ ଚିକିତ୍ସକମାନେ ଗ୍ରହଣ କରି ପାରନ୍ତି ଏବଂ ଅଦାଲତମାନଙ୍କୁ ''ଚିକିତ୍ସାଳୟ'' ବୋଲି ନାମିତ କରାଯାଇପାରେ ।

ଆଗାମୀ ଯୁଗରେ ଏହି ପ୍ରକାରର ସମ୍ଭାବନା କଣ ସତରେ ବାସ୍ତବ ରୂପ ଗ୍ରହଣ କରିବ ?



# ଇହଲୋକରେ ଆତ୍ମାର ବିଚାର

ସେତେବେଳେ ପ୍ରଖ୍ୟାତ ଚିତ୍ରକାର ଆବୁ ଆବ୍ରାହମ୍‌ଙ୍କୁ ପନ୍ଦର ବର୍ଷ ବୟସ ହୋଇଥାଏ । ସେ ତ୍ରିଭେନ୍ଦ୍ରମ୍‌ର ମିଶନାରି ଦ୍ୱାରା ପରିଚାଳିତ ଏଲ୍. ଏମ୍. ଏସ୍. ହଷ୍ଟେଲରେ ରହି ଇଣ୍ଟର ମିଡ଼ିଏଟ୍ ଶ୍ରେଣୀରେ ପଢୁଥାନ୍ତି । ନଗର କୋଏଲ୍‌ର ଜଣେ ବାର ବର୍ଷ ବୟସ୍କ ତାମିଲ୍ ବାଳକ ଉକ୍ତ ହଷ୍ଟେଲ୍‌ର ପୂଜାରିଙ୍କୁ ରୋଷେଇବାସରେ ସାହାଯ୍ୟ କରିବା ପାଇଁ ନିଯୁକ୍ତ ହୋଇଥାଏ । ଦିନେ ହଠାତ ଏଇ ବାଳକଟିର ଆଚରଣରେ ଆଶ୍ଚର୍ଯ୍ୟଜନକ ପରିବର୍ତ୍ତନ ଦେଖାଦେଲା । ସେ ଅସୀମ ଶକ୍ତି ପ୍ରଦର୍ଶନ କରି ଗୋଟିଏ ଶିଳପୁଆରେ ନିଜ ଛାତିକୁ ଖୁବ୍ ଜୋରରେ ବାରମ୍ବାର ଆଘାତ କରିବାରେ ଲାଗିଲା । ନିଜ ପ୍ରତି ବିପଦକୁ ଖାତିର୍ ନ କରି ହାତରେ ଜଳନ୍ତା କାଠଖଣ୍ଡମାନ ଧରି ବହୁ ସମୟ ଯାଏଁ ନାଚିଲା । ତାକୁ ଆୟତ୍ତ କରିବା ପାଇଁ ଚାରି ପାଞ୍ଚ ଜଣ ବଳୁଆ ଲୋକ ଶତ ଚେଷ୍ଟା । କରି ବିଫଳ ହେଉଥାନ୍ତି । ଅପ୍ରତ୍ୟାଶିତ ଭାବେ ସେ ଏମିତି ଅସୁର ପରି ଶକ୍ତିଶାଳୀ ହୋଇଯିବା ଯୋଗୁଁ ସମସ୍ତେ ସ୍ତମ୍ଭୀଭୂତ ହୋଇ ଯାଇଥିଲେ । ଏହି ଅସ୍ୱାଭାବିକ ଆଚରଣ ପ୍ରାୟ ଏକ ଘଣ୍ଟା ରହିବା ପରେ ପିଲାଟି ଅତି ଦୁର୍ବଳ ହୋଇ ତଳେ ପଡ଼ିଗଲା । ସେତେବେଳେ ତା ପାଟିରୁ ଫେଣ ବାହାରୁଥାଏ । ତା ପରଦିନ ବିନା ଚିକିତ୍ସାରେ ସେ ପୁଣି ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଲା ।

ଏହି ପ୍ରକାର ଅଦ୍ଭୁତ ଘଟଣା ପିଲାଟିର ଜୀବନରେ ଥରକୁ ଥର ଘଟୁଥାଏ । ସବୁଠାରୁ ଉଲ୍ଲେଖନୀୟ ବିଷୟ ହେଉଛି ଯେ, ପିଲାଟିର ଏପରି ବିଚିତ୍ର ବ୍ୟବହାର ବେଳେ, ତାର ନିଜସ୍ୱ କଣ୍ଠସ୍ୱର ବଦଳି ଯାଉଥାଏ । ସେ କୌଣସି ଏକ ପ୍ରାପ୍ତବୟସ୍କ ବ୍ୟକ୍ତିର କଣ୍ଠସ୍ୱରରେ କହିବା ପରି ଜଣାପଡୁଥାଏ ।

ପିଲାଟି ଥରେ ଏମିତି ବିଚିତ୍ର ଆଚରଣ ପ୍ରଦର୍ଶନ କରୁଥିବା ବେଳେ ନଗରକୋଏଲ୍‌ରୁ ତାର କେତେ ଜଣ ସଂପର୍କୀୟ ବ୍ୟକ୍ତି ଦୈବାତ୍ ହଷ୍ଟେଲ୍‌କୁ ବୁଲି ଆସିଥିଲେ । ସେମାନେ ଉକ୍ତ ବାଳକର ପରିବର୍ତ୍ତିତ କଣ୍ଠସ୍ୱରରୁ ତୁରନ୍ତ ଜାଣି ପାରିଲେ ଯେ, ଏହା ତାଙ୍କ ଗାଁର ଜଣେ ମୃତ ବ୍ୟକ୍ତିର, ଯିଏକି ପିଲାଟିର କକା ହେବ ଏବଂ କେତେ ବର୍ଷ ପୂର୍ବେ ସେ ସନ୍ଦେହଜନକ ପରିସ୍ଥିତିରେ ମୃତ୍ୟୁ ବରଣ କରିଥିଲା । ସେତେବେଳେ ସମସ୍ତେ ବୁଝି ପାରିଥିଲେ ଯେ, ମୃତ କକାର ଅତୃପ୍ତ ଆତ୍ମା ପିଲାଟିର ଶରୀରରେ ସବାର ହୋଇଥିବା ଯୋଗୁଁ ସେ ଏପରି ରହସ୍ୟଜନକ ପରିସ୍ଥିତି ସୃଷ୍ଟି କରୁଛି ।

ସ୍ୱଚକ୍ଷୁରେ ଏପରି ଏକ ଅଲୌକିକ ଘଟଣା ଦେଖିଥିବା ଯୋଗୁଁ ଆବୁଆବ୍ରାହମ୍ ଗଭୀର ଆତ୍ମବିଶ୍ୱାସର ସହିତ ସ୍ୱୀକାର କରିଛନ୍ତି, ''ମୁଁ ନିଜେ ଏ ପର୍ଯ୍ୟନ୍ତ ଭୂତ ଦେଖିନାହିଁ । କିନ୍ତୁ କେହି ଭୂତ ଦେଖିଛି ବୋଲି କହିଲେ ତାକୁ ମୁଁ ଅବିଶ୍ୱାସ ମଧ୍ୟ କରେ ନା । ସେହି ପରି ମୁଁ ଏପର୍ଯ୍ୟନ୍ତ ଅନ୍ୟ ଜଗତରୁ ପ୍ରେରିତ କୌଣସି ଅଚିହ୍ନା ଉଡ଼ନ୍ତା ବସ୍ତୁ (ବୈଜ୍ଞାନିକଙ୍କ ଭାଷାରେ 'ୟୁଫୋ' ବା ''ଅନ୍‌ଆଇଡେଣ୍ଟି ଫାଇଡ୍ ଫ୍ଲାଇଙ୍ଗ୍ ଅବଜେକ୍ଟ୍'') ଦେଖିବାର ସୁଯୋଗ ପାଇ ନାହିଁ । କିନ୍ତୁ ଏହା କଳ୍ପନା ପ୍ରସୂତ ବୋଲି ମୁଁ ମନେ କରେ ନାହିଁ.... ଅବଶ୍ୟ ଭୂତ ବା ୟୁଫୋ ଦେଖିବା ଆଖିର ଏକ ଭ୍ରମ ହୋଇପାରେ । ତେବେ ଏଭଳି ସବୁ ଘଟଣାକୁ ଅବାସ୍ତବ କହିବା ମଧ୍ୟ ଠିକ୍ ନୁହେଁ । ମୁଁ ନିଜେ ଜଣେ ନାସ୍ତିକ ଓ ହେତୁବାଦୀ ବୋଲି ଦେଖାଇ ହେବାକୁ ମତେ ଭଲ ଲାଗେ । କିନ୍ତୁ ଅଲୌକିକ ଘଟଣାଗୁଡ଼ିକୁ ଅନ୍ଧବିଶ୍ୱାସ ବା କୁସଂସ୍କାର କହି ଆଡ଼େଇ ଯିବାକୁ ମତେ ଭଲ ଲାଗେ ନାହିଁ ।'' (ଧରିତ୍ରୀ; ୨୪.୪.୮୮) ।

ନିଜ ଅନୁଭୂତିରୁ ଆବୁ ଆବ୍ରାହାମ୍ ହୃଦୟଙ୍ଗମ କରି ପାରିଛନ୍ତି ଯେ, ଅଲୌକିକତାର ଅନ୍ତ ନାହିଁ । ଅନେକ ସମୟରେ ଏହି ଅଲୌକିକତା ମୃତ ବ୍ୟକ୍ତିର ଆତ୍ମା ଦ୍ୱାରା ସୃଷ୍ଟି ହୋଇଥାଏ । ନିକଟ ଅତୀତରେ ଏପରି ଏକ ଘଟଣାର ବିସ୍ତୃତ ବିବରଣୀ 'ଟେଲିଗ୍ରାଫ' ପତ୍ରିକାରେ ପ୍ରକାଶିତ ହୋଇଥିଲା ।

କିଛି ବର୍ଷ ପୂର୍ବେ ଗୋଟିଏ ପାନ୍-ଆମ୍ ଯାତ୍ରୀବାହୀ ବିମାନକୁ ବିମାନଦସ୍ୟୁମାନେ କରାଚୀକୁ ଅପହରଣ କରି ନେଇ ଯାଇଥିଲେ । ସେତେବେଳେ ନୀରଜା ନାମ୍ନୀ ଜଣେ ବରିଷ୍ଠ ଏୟାର୍-ହଷ୍ଟେସ୍ ତିନୋଟି ଶିଶୁକୁ ଉଦ୍ଧାର କରିବାକୁ ଯାଇ ଗୁଳିମାଡ଼ରେ ନିଜେ ପ୍ରାଣ ହରାଇଥିଲେ । ତାଙ୍କର ଏହି ନିଃସ୍ୱାର୍ଥପର ସାହସିକତା ପାଇଁ ଭାରତ ସରକାର ତାଙ୍କୁ ମରଣୋତ୍ତର 'ଅଶୋକ-ଚକ୍ର' ଉପାଧିରେ ଭୂଷିତ କରିଥିଲେ ।

କିନ୍ତୁ ନୀରଜାଙ୍କ ମୃତ୍ୟୁ-ପରବର୍ତ୍ତୀ ଜୀବନକୁ କେନ୍ଦ୍ର କରି କେତେକ ଚାଞ୍ଚଲ୍ୟକର ବିବରଣୀ ଲୋକ-ଲୋଚନକୁ ଆସିଛି । ୧୯୮୮ ମସିହା ଅକ୍ଟୋବର ୨୬ ତାରିଖ ସକାଳ ୭ଟା ୧୫ ମିନଟ୍ ବେଳେ ବମ୍ବେରୁ ପ୍ରକାଶ ପାଉଥିବା 'ଆଇଲ୍ୟାଣ୍ଡ' ପତ୍ରିକାର ଦୁଇ ଜଣ ସାମ୍ବାଦିକ ନୀରଜାଙ୍କ ମାତା ଶ୍ରୀମତୀ ଭାନେଟ୍‌ଙ୍କ ଘରେ ପହଞ୍ଚିଲେ । ସେମାନେ ପୂର୍ବରୁ ଶୁଣିଥିଲେ ଯେ, ନୀରଜା କୁଆଡ଼େ ପରଲୋକରୁ ମର୍ତ୍ତ୍ୟଲୋକରେ ଥିବା ତାଙ୍କ ମା'ଙ୍କ ସହିତ ଯୋଗାଯୋଗ ସ୍ଥାପନ କରି ବିଭିନ୍ନ ପରାମର୍ଶ ଦେଉଛନ୍ତି । ତେଣୁ ଏହି ଘଟଣାର ସତ୍ୟାସତ୍ୟ ଜାଣିବା ପାଇଁ ସେମାନେ କୌତୂହଳ ବଶତଃ ସେଠାକୁ ଯାଇଥିଲେ ।

ଅନ୍ୟଦିନ ପରି ସେଦିନ ମଧ୍ୟ ଯଥା ସମୟରେ ଭୌତିକ ପ୍ରକ୍ରିୟା ଆରମ୍ଭ ହେଲା । ଶ୍ରୀମତୀ ଭାନେଟ୍ ଗୋଟିଏ ସାଦା କାଗଜ ଉପରେ ନିଜ ପେନ୍‌ଟି ହାଲୁକା ଭାବେ ଧରିଥାନ୍ତି ।

ପେନ୍‌ଟି ମନକୁ ମନ ଚାଲିବା ପରେ ପ୍ରଥମେ ପ୍ରଥମେ କିଛି ଅଙ୍କାବଙ୍କା ରେଖା ପରିଦୃଷ୍ଟ ହୋଇ କ୍ରମଶଃ ସ୍ପଷ୍ଟ ଅକ୍ଷର ଲିଖିତ ହେଲା । ସେଦିନ ନୀରଜା ତାଙ୍କ ମାତାଙ୍କୁ ସାଂସାରିକ ଜଞ୍ଜାଳରୁ ମୁକ୍ତ ରହି ଭଗବାନଙ୍କ ଉପରେ ଅଧିକ ଆସ୍ଥାବାନ ହେବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ତେବେ ସେ ସେଇ ସାମ୍ବାଦିକ ଦ୍ୱୟଙ୍କ ଉପସ୍ଥିତିକୁ ନାପସନ୍ଦ କରୁଛନ୍ତି ବୋଲି ସେତେବେଳେ ଲିଖିତାକାରରେ ଜଣାଇବା ବିସ୍ମୟଜନକ ମନେ ହୁଏ ।

ସେ ଯାହାହେଉ, ନୀରଜାଙ୍କ ମା ଭାନେଟ୍ ନିଜ କନ୍ୟା ସହିତ କିପରି ଯୋଗସୂତ୍ର ସ୍ଥାପନ କରିଥିଲେ, ତାର ବିବରଣୀ ମଧ ବେଶ୍ କୌତୂହଳ ଜନକ । ଏକଦା "ସାର୍ଭ" ନାମକ ଏକ ପତ୍ରିକାରେ ଜଣେ ପାର୍ସୀ ମହିଳାଙ୍କ ସଂପର୍କରେ କିଛି ଚାଞ୍ଚଲ୍ୟକର ସମ୍ବାଦ ପରିବେଷଣ କରାଯାଇଥିଲା । ସେଥିରେ ଉଲ୍ଲେଖ କରାଯାଇଥିଲା ଯେ, ଏହି ପାର୍ସୀ ମହିଳା ଜଣକ ନିଜର ପରଲୋକଗତ ଦୁଇଟି ପୁତ୍ରଙ୍କ ସହିତ ଯୋଗାଯୋଗ ରକ୍ଷା କରିଛନ୍ତି । ଏହି ପରି ଏକ ଅସମ୍ଭବ ଖବର ପଢ଼ି ଶ୍ରୀମତୀ ଭାନେଟ୍‌ଙ୍କ ମନରେ କୌତୂହଳ ସୃଷ୍ଟି ହେଲା ଏବଂ ସେ ଭାବିଲେ ଯେ, ନିଜ କନ୍ୟା ସହିତ ସେ ହୁଏତ ଏହି ଉପାୟରେ ଯୋଗସୂତ୍ର ରକ୍ଷା କରିପାରିବେ । ଏହି ଭାବନା ଯୋଗୁଁ ସେ ଆଉ ସ୍ଥିର ହୋଇ ରହି ପାରିଲେ ନାହିଁ । ସେ ଉକ୍ତ ପାର୍ସୀ ମହିଳାଙ୍କ ଖୋଜ ଖବର ସଂଗ୍ରହ କରି ତାଙ୍କ ନିକଟରେ ପହଞ୍ଚିଲେ ଏବଂ ତାଙ୍କୁ ଜଣାଇଲେ ଯେ, ସେ ନିଜ ମୃତ କନ୍ୟାନୀରଜାଙ୍କ ସହିତ ସଂପର୍କ ସ୍ଥାପନ କରିବା ପାଇଁ ଆଗ୍ରହୀ ।

ଏହା ଶୁଣି ପାର୍ସୀ ମହିଳା ଜଣକ ପରଲୋକରେ ଥିବା ନିଜ ପୁତ୍ରଦ୍ୱୟଙ୍କୁ ଶ୍ରୀମତୀ ଭାନେଟ୍‌ଙ୍କ ଅଭିପ୍ରାୟ ସଂପର୍କରେ ନୀରଜାଙ୍କୁ ଜଣାଇ ଦେବା ପାଇଁ ଅନୁରୋଧ କଲେ । ଆଶ୍ଚର୍ଯ୍ୟର ବିଷୟ ହେଉଛି ଯେ, ମୃତ ପୁତ୍ରଦ୍ୱୟ ନୀରଜାଙ୍କୁ ଠିକ୍ ସମୟରେ ଏହି ସମ୍ବାଦ ଦେଇଥିଲେ । ଫଳ ସ୍ୱରୂପ ଦଶ ଦିନ ଅଭ୍ୟାସ କରିବା ପରେ ଶ୍ରୀମତୀ ଭାନେଟ୍ ନୀରଜାଙ୍କ ସହିତ ଯୋଗସୂତ୍ର ସ୍ଥାପନ କରିବାରେ ସକ୍ଷମ ହୋଇଥିଲେ ।

ପ୍ରକାଶ ଥାଉ କି, ଏଥିପୂର୍ବରୁ ମଧ ସ୍ୱର୍ଗତା ନୀରଜା ନିଜ ଆତୁ ପିତାମାତାଙ୍କ ସହିତ ଯୋଗାଯୋଗ ରକ୍ଷା କରିବାକୁ ଉଦ୍ୟମ କରିଥିଲେ । ସେ ପରଲୋକରୁ ଯୋଗେଶ୍ୱର ଅନନ୍ତ ସରସ୍ୱତୀ ନାମକ ଜଣେ ବ୍ୟକ୍ତିଙ୍କ ନିକଟକୁ ନିଜର ଏହି ଅଭିପ୍ରାୟ ଜଣାଇଥିଲେ ଏବଂ ତୁରନ୍ତ ତାଙ୍କ ପିତା ହରୀଶ ଭାନେଟ୍‌ଙ୍କୁ ଏହି ମର୍ମରେ ଖଣ୍ଡେ ଚିଠି ପଠାଇ ଦେଲେ । ହରୀଶ ଭାନେଟ୍ ଆର୍ଯ୍ୟ ସମାଜର ଜଣେ ସଭ୍ୟ ଓ ସେ କୌଣସି ଭୌତିକ ଘଟଣାରେ ବିଶ୍ୱାସ କରୁ ନଥିବା ଯୋଗୁଁ ଏହି ଚିଠିକୁ ଗୁରୁତ୍ୱ ଦେଲେ ନାହିଁ । କିନ୍ତୁ ପରେ ଯେତେବେଳେ ନିଜ ପତ୍ନୀଙ୍କ ଉଦ୍ୟମରେ ନୀରଜାଙ୍କ ସହିତ ଯୋଗାଯୋଗ ରକ୍ଷା ହେଲା, ସେ ଆଶ୍ଚର୍ଯ୍ୟରେ ଅଭିଭୂତ

ହୋଇ ପଡ଼ିଥିଲେ । ପରଲୋକ ଏବଂ ଇହଲୋକ ମଧ୍ୟରେ ସଂପର୍କ ଯେ ରକ୍ଷା କରି ହେବ, ଏହା ନିଜ ଅନୁଭୂତିରୁ ଜାଣିବା ତାଙ୍କ ପକ୍ଷେ ସବୁଠାରୁ ବିସ୍ମୟଜନକ ବିଷୟ ଥିଲା ।

ବିଭିନ୍ନ ପ୍ରକାର ଅଲୌକିକ ଘଟଣାରୁ ଜାଣିବା ସହଜ ହୁଏ ଯେ, ଜୀବର ଶରୀରରେ ଆତ୍ମା ଅଛି । ଆମ ଶରୀର ନଶ୍ୱର; କିନ୍ତୁ ଆତ୍ମା ଶାଶ୍ୱତ । ତେଣୁ ମୃତ୍ୟୁ ଯୋଗୁଁ ଆମ ଶରୀର ନଷ୍ଟ ହୋଇ ଗଲେ ସୁଦ୍ଧା ଆତ୍ମାର ପରିସମାପ୍ତ ଘଟେ ନାହିଁ । ପୁଣି ଏହା ସ୍ଥଳ-ବିଶେଷରେ ଅନ୍ୟ ଶରୀରରେ ପ୍ରବେଶ କରି ନିଜର ଉଦ୍ଦେଶ୍ୟ ସିଦ୍ଧ କରିଥାଏ । ଏତଦ୍‌ବ୍ୟତୀତ ଆତ୍ମା ଯୋଗୁଁ ବେଳେ ବେଳେ ମଣିଷର ପୁନର୍ଜନ୍ମ ସମ୍ଭବ ହୋଇଥାଏ ବୋଲି ବିଭିନ୍ନ ଧର୍ମଗ୍ରନ୍ଥରେ ଉଲ୍ଲେଖ କରାଯାଇଛି ।

କିଛି ବର୍ଷ ପୂର୍ବେ ଏହି ପୁନର୍ଜନ୍ମ ତତ୍ତ୍ୱ ଉପରେ ବିଶ୍ୱାସ କରି ନେପାଳର ବୌଦ୍ଧଧର୍ମଗୁରୁ ବା 'ଲାମା'ଙ୍କୁ ଅନ୍ୱେଷଣ କରାଯାଇଥିଲା । ଇୟେଶୀ ନାମଧେୟ ଜନୈକ ଲାମା ୧୯୮୪ ମସିହା ଅକ୍ଟୋବର ମାସରେ ଲସଏଞ୍ଜୋଲସ୍‌ର ଏକ ହାସପାତାଳରେ ପ୍ରାଣ ତ୍ୟାଗ କରିବା ପରେ ପରେ ତାଙ୍କର କେଉଁଠାରେ ପୁନର୍ଜନ୍ମ ହେବ, ସେଇ ବିଷୟରେ ଅନୁସନ୍ଧାନ କରାଗଲା ।

ନେପାଳର କାଠମାଣ୍ଡୁ ନିକଟବର୍ତ୍ତୀ କୋପାନ-ମନାଷ୍ଟ୍ରି-ମହାଯାନ-ବୌଦ୍ଧ ସଂପ୍ରଦାୟର ବିଶ୍ୱାସ ଯେ, ଇୟେଶୀ ପୁଣି ମଣିଷ-ଗର୍ଭରେ ଜନ୍ମ ହେବେ ଏବଂ ସେ ହିଁ ପୁନର୍ବାର ଲାମା ହେବେ । ଏଇ ପୁନଃଜନ୍ମିତ ଇୟେଶୀଙ୍କୁ ଖୋଜି ବାହାର କରିବା ଦାୟିତ୍ୱ ଜୋପାଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ସେ ଏଇ ଉଦ୍ଦେଶ୍ୟ ନେଇ ସାରା ବିଶ୍ୱ ପରିଭ୍ରମଣ କରୁ କରୁ ଦୈବାତ୍ ୧୯୮୫ ମସିହାରେ ସ୍ପେନର ଗ୍ରାନାଡ଼ା ପ୍ରଦେଶ ଅନ୍ତର୍ଗତ ବିବୁଦ ଗ୍ରାମର ପ୍ୟାବେହିଟାଙ୍କ ଘରେ ପହଞ୍ଚିଲେ । ସେଠାରେ ତାଙ୍କ ଶିଶୁପତ୍ର ଓ' ସଲେ ଉପରେ ଜୋପାଙ୍କ ନଜର ପଡ଼ିଲା ଏବଂ ସେ ସ୍ଥିର କଲେ ଯେ, ଏଇ ଶିଶୁଟି ହେଉଛି ପ୍ରକୃତରେ ଗୋଟିଏ ଦେବଶିଶୁ ଓ ସେ ହିଁ ହେଉଛି ଇୟେଶୀଙ୍କ ପୁନଃ-ଅବତାର ।

ଏଇ ସଂପର୍କରେ ବର୍ଣ୍ଣନା କରିବାକୁ ଯାଇ ଓସଲେର ମାତା ମାରିୟା ଟରେସ କହନ୍ତି, "ଓସଲୋକୁ ଦେଖି ଜୋପାଙ୍କର କାହିଁକି ଯେ ଭିନ୍ନ ରକମର ପ୍ରତିକ୍ରିୟା ହେଲା, ତାହା ମୁଁ ଜାଣେନା । କିନ୍ତୁ ସେ ଯେତେବେଳେ ଓସଲେ ଜନ୍ମ ହେବା ପୂର୍ବରୁ କିଛି ଉଲ୍ଲେଖନୀୟ ଘଟଣା ଘଟିଥିଲା ନାଁ ନାହିଁ ଜାଣିବାକୁ ଚାହିଁଥିଲେ, ମୁଁ ସେତେବେଳେ ଗୋଟିଏ ଅଦ୍ଭୁତ ସ୍ୱପ୍ନ ଦେଖିଥିବା ବିଷୟ କହିଲି । ତାପରେ ଜୋପା ଇୟେଶୀ ଶେଷ ଥର ସ୍ପେନ ଆସିଥିବା ବେଳେ ଶେଷ କଥା କିଛି କହିଥିଲେ କି ବୋଲି ପଚାରନ୍ତେ, ମୁଁ କହିଲି ଯେ, ସେ ମୋ ଦେହରେ ବଂଚିବେ ବୋଲି ଭବିଷ୍ୟବାଣୀ ଶୁଣାଇଥିଲେ ।"

ଅବଶ୍ୟ ଜୋପା ଓସଲେର ମାତାଙ୍କଠାରୁ ଏହି ସନ୍ଦେଶ ପାଇ ସନ୍ତୁଷ୍ଟ ହୋଇଯାଇଥିଲେ । ତଥାପି ପରେ ପରେ ଶିଶୁ ଓସଲେଙ୍କୁ ଅଧିକ ପରୀକ୍ଷା କରିବା ପାଇଁ ଦଲାଇ ଲାମା ତାକୁ ବହୁତଗୁଡ଼ାଏ ଜପାମାଳି ଦେଖାଇ ସେଥି ମଧ୍ୟରୁ ଇୟେଶୀଙ୍କ ଜପାମାଳାଟିକୁ ବାଛିବା ପାଇଁ କହିଥିଲେ । ଓସଲେ ସେତେବେଳେ ଭଲ ଭାବେ କଥା କହିବା ଶିଖି ନଥିଲା । ପଦେ ଅଧେ ନିଜର ସ୍ପେନୀୟ ମାତୃଭାଷା ବୁଝିଲେ, ବୁଝୁଥିବ । ତଥାପି ସେ ଇଂରେଜିରେ କହୁଥିବା ଦଲାଇ ଲାମାଙ୍କ ବିଦେଶୀ ଭାଷା ବୁଝି ପାରି, ଇୟେଶୀଙ୍କ ଜପାମାଳାଟି ଖୋଜି ବାହାର କରିଦେବା ନିଶ୍ଚୟ ବିସ୍ମୟଜନକ । ଏଥିରୁ ଜୋପାଙ୍କ ବିଶ୍ୱାସ ଜନ୍ମିଗଲା ଯେ, ଶିଶୁ ଓସଲେ ହେଉଛି ଇୟେଶୀଙ୍କ ଦ୍ୱିତୀୟ ଅବତାର ।

ସେ ଯାହାହେଉ, ଇୟେଶୀଙ୍କ ପୁନର୍ଜନ୍ମ ବିଷୟରେ ଜାଣିବା ପଛରେ ମୁଖ୍ୟ କାରଣ ଥିଲା ଓସଲେଙ୍କ ମା ମାରିୟା ଟରେସ୍‌ଙ୍କ ସ୍ୱପ୍ନ । ଏହି ସପର୍କରେ ମାରିୟା ଟରସେଙ୍କ ବକ୍ତବ୍ୟ ହେଉଛି, "ମୁଁ ଦିନେ ସ୍ୱପ୍ନ ଦେଖିଲି ଯେ, ମୁଁ ଗୋଟିଏ ବୌଦ୍ଧମଠରେ ଶୋଇଥାଏ । ଲାମା ଇୟେଶୀ ଆସି ମୋ ମୁଣ୍ଡ ଉପରେ ହାତ ରଖିଛନ୍ତି ଏବଂ ତାଙ୍କ ହାତର ସ୍ପର୍ଶ ଯେପରି ବିଜୁଳି ଭଳି ମୋ ଦେହରେ ଖେଳିଗଲା । କେତେ ଦିନ ପରେ ମୁଁ ଅନୁଭବ କଲି, ମୁଁ ସନ୍ତାନ-ସମ୍ଭବା । ସେତେବେଳେ ବୁଝିଲି- ଆଇ ଆମ୍ କ୍ୟାରିଂ ଏ ସ୍ପେଶଲ ଚାଇଲ୍‌ଡ – ଇଂରାଜୀ ପ୍ରବଚନ ଅନୁଯାୟୀ, ଏଇ ଶିଶୁଟି ଦିନେ ହେବ –ଏ ଟିବଟାନ୍ ଲାମା, ହୁ ହାଭ୍ ନୋ ପାପା, ନୋ ମାମା ।"

ଉପରୋକ୍ତ ଦୃଷ୍ଟାନ୍ତରୁ ଜୀବାତ୍ମାର ଅସ୍ତିତ୍ୱ ସଂପର୍କରେ ଅନୁମାନ କରି ହେଉଛି । ଇହଲୋକରେ ଏହି ଆତ୍ମା କେତେବେଳେ ପ୍ରେତ ରୂପରେ, କେତେବେଳେ ସ୍ୱପ୍ନ ମାଧ୍ୟମରେ କିମ୍ବା ଏତାଦୃଶ ଅନ୍ୟାନ୍ୟ ବିସ୍ମୟଜନକ ପ୍ରକ୍ରିୟା ଦ୍ୱାରା ପ୍ରକାଶ ହୋଇଥାଏ । ଭଗବାନଙ୍କ ରହସ୍ୟମୟ ସୃଷ୍ଟିକୁ ଏହା କେବଳ ବୈଚିତ୍ର୍ୟରେ ପରିପୂର୍ଣ୍ଣ କରି ନଥାଏ; ଏହି ବିଷୟଟି ହୃଦୟଙ୍ଗମ କଲେ, ଆମ ଆଧ୍ୟାତ୍ମିକ ଚେତନାର ଉନ୍ମେଷ ଘଟିବ ।

ସଂପ୍ରତି ଆମ ମଧ୍ୟରେ ହେତୁବାଦୀ ମନୋଭାବ ଯେମିତି ଉଗ୍ରରୂପ ନେଇଛି, ସେଥିରେ ଆମେ ସ୍ୱପ୍ନ ପରି ଗୋଟିଏ ବିଷୟକୁ ଗୁରୁତ୍ୱ ଦେବା ପାଇଁ ପଶ୍ଚାତ୍ ପଦ ହେଉଁ । ବୋଧହୁଏ ଏହି ବୈଜ୍ଞାନିକ ଯୁଗରେ ନିଜକୁ ପ୍ରଗତିଶୀଳ ଭାବେ ପରିଚିତ କରାଇବାକୁ ହେଲେ, ସ୍ୱପ୍ନକୁ ଅତି ଅବାସ୍ତବ ଓ ଅସଂଗତ ବୋଲି ବର୍ଣ୍ଣନା କରିବାକୁ ପଡ଼ିବ । କିନ୍ତୁ ଏହି ପ୍ରକାର ମନୋଭାବ କେତେ ଦୂର ଯୁକ୍ତିଯୁକ୍ତ ?

ଏଠାରେ ସ୍ମରଣ କରାଯାଇ ପାରେ, ବୈଜ୍ଞାନିକମାନେ ଆମଠାରୁ ଯଥେଷ୍ଟ ଅଧିକ ହେତୁବାଦୀ ହୋଇଥିଲେ ସୁଦ୍ଧା ସ୍ୱପ୍ନର ନାଁ ପଡ଼ିଲେ ଆମ ପରି ନାକ ଟେକି ନ ଥାନ୍ତି । କାରଣ

ବେଳେ ବେଳେ ସ୍ୱପ୍ନ ଦ୍ୱାରା ନୂତନ ବୈଜ୍ଞାନିକ ପ୍ରଣାଳୀର ସନ୍ଧାନ ପାଇବା ଦୃଷ୍ଟାନ୍ତ ରହିଛି । ଏହି ମର୍ମରେ ବିଶିଷ୍ଟ ବୈଜ୍ଞାନିକ ଜେମ୍‌ସଓ୍ୱାଟ୍‌ଙ୍କ ବିଷୟ ଉଲ୍ଲେଖ କରାଯାଇପାରେ । ସେ ପ୍ରାୟ ଏକ ସପ୍ତାହ ବ୍ୟାପୀ ପ୍ରତି ରାତିରେ ସ୍ୱପ୍ନ ଦେଖୁଥାନ୍ତି, ଯେ, ସେ ରାସ୍ତାରେ ଯାଉଥିବା ବେଳେ ପ୍ରବଳ ବୃଷ୍ଟି ହେଉଛି ଏବଂ ବର୍ଷା ପାଣି ବିନ୍ଦୁ ବିନ୍ଦୁ ହୋଇ ଭୂତଳକୁ ଖସିବା ପରେ ଶିଶାରୁ ଛୋଟ ଛୋଟ ଗୋଲକ ସଦୃଶ ହୋଇ ଯାଉଛନ୍ତି । ଏହି ପ୍ରତୀକଧର୍ମୀ ସ୍ୱପ୍ନର ପ୍ରକୃତରେ କଣ ସଙ୍କେତ ଥାଇପାରେ, ଓ୍ୱାଟ୍ ବୁଝି ପାରି ନଥିଲେ । କିନ୍ତୁ ଅବିଳମ୍ୱେ ସେ ଯାଇ ଗୋଟିଏ ସୁଉଚ୍ଚ ଗୀର୍ଜାର ଶୀର୍ଷସ୍ଥାନରୁ ତଳେ ରଖାଯାଇଥିବା ଜଳପାତ୍ର ମଧ୍ୟକୁ ତରଳ ଶିଶା ଢାଳିଲେ । କିଛି ସମୟ ପରେ ସେ ଦେଖିଲେ ଯେ, ଜଳପାତ୍ରରେ ଅନେକ କ୍ଷୁଦ୍ର ଗୋଲାକାର ଶିଶା ଖଣ୍ଡ ପ୍ରସ୍ତୁତ ହୋଇ ଯାଇଛି । ଏହି ବର୍ତ୍ତୁଳ ଶିଶା ବନ୍ଧୁକରେ ବ୍ୟବହାର କରିବା ପାଇଁ ଅତି ଉପଯୋଗୀ । ସେ ଯାହାହେଉ, ସ୍ୱପ୍ନାଦେଶ ବଳରେ ସେ ଯେମିତି ଶିଶାର ଗୋଲକ ଅତି ସରଳ ଉପାୟରେ ଏବଂ କମ୍ ଦାମରେ ପ୍ରସ୍ତୁତ କରି ପାରିଲେ, ତାହା ଆଶ୍ଚର୍ଯ୍ୟଜନକ । ଏହି ପ୍ରଣାଳୀ ଅବଲମ୍ୱନ କରି ଭବିଷ୍ୟତରେ ବଂଧୁକ ବ୍ୟବସାୟୀମାନେ ବେଶ ଲାଭବାନ ହୋଇଥିଲେ ।

ଅବଶ୍ୟ ଏହାର ଅର୍ଥ ନୁହେଁ ଯେ, ସ୍ୱପ୍ନାଦେଶ ଅନୁସାରେ କାର୍ଯ୍ୟ କରିବା ବିଜ୍ଞାନସମ୍ମତ ଏବଂ ସ୍ୱପ୍ନର ସାର୍ବଭୌମତା ଉପରେ ବିଶ୍ୱାସ କରିବା ବୈଜ୍ଞାନିକ ମନୋବୃତ୍ତିର ପରିଚାୟକ । ତେବେ ଏଠାରେ ସ୍ପଷ୍ଟ କରି ଦିଆଯାଇ ପାରେ ଯେ, ବୈଜ୍ଞାନିକ ଜେମସ୍ ଓ୍ୱାଟ୍ ସ୍ୱପ୍ନ ସମେତ ତଥାକଥିତ ବିଭିନ୍ନ ଅବାସ୍ତବ ବିଷୟ ବସ୍ତୁର ସତ୍ୟାସତ୍ୟ ସଂପର୍କରେ ଅନୁସନ୍ଧାନ ଓ ପରୀକ୍ଷା ନିରୀକ୍ଷା କରିବା ପାଇଁ ନିଜମନ ଖୋଲା ରଖିଥିଲେ । ତେଣୁ ଆମେ ଯଦି ସଚ୍ଚା ବୈଜ୍ଞାନିକ ମନୋଭାବ ପ୍ରଦର୍ଶନ କରିବାକୁ ଚାହୁଁ, ତାହାହେଲେ କୌଣସି ବିଷୟ ପ୍ରତି ପୂର୍ବକଳ୍ପିତ ବିଦ୍ୱେଷ ଭାବ ପୋଷଣ କରିବା ଉଚିତ ନୁହେଁ । କିନ୍ତୁ ଆଜିକାଲିର ତଥାକଥିତ ଶିକ୍ଷିତ ଓ ଆଧୁନିକ ବ୍ୟକ୍ତିମାନେ କିପରି ଖୋଲାମନରେ ବିଭିନ୍ନ ବିଷୟମାନ ବିଶ୍ଳେଷଣ କରିବାକୁ ବିମୁଖ, ତାର ପ୍ରମାଣ ନିମ୍ନ ଦୃଷ୍ଟାନ୍ତରୁ ମିଳେ ।

ନିକଟ ଅତୀତରେ କେତେକ ଅଲୌକିକ ଘଟଣା ଉପରେ ଆଧାରିତ ''ହୋନି ଅନ ହୋନି'' ଶୀର୍ଷକ ଏକ ଧାରାବାହିକ ଦୂରଦର୍ଶନରେ ପ୍ରଦର୍ଶିତ କରାଯାଇଥିଲା । ସେତେବେଳେ ତଥାକଥିତ ବହୁ ବିଜ୍ଞବ୍ୟକ୍ତି, ବୁଦ୍ଧିଜୀବୀ ଓ ହେତୁବାଦୀ ସଂଗଠନ ତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ଏହି ଧାରାବାହିକୀ ଅନ୍ଧବିଶ୍ୱାସ ଓ କୁସଂସ୍କାରକୁ ଉତ୍ସାହିତ କରୁଛି ବୋଲି ମାର୍କସ୍‌ବାଦୀ ଷ୍ଟଡ଼ି ସର୍କଲ୍‌ର ଆବାହକ ଇପଟେକର ଜାମସେଦପୁରଠାରେ ଆପତ୍ତି ଉଠାଇଲେ । ଏହାର ପ୍ରଦର୍ଶନ ତୁରନ୍ତ ବନ୍ଦ କରିବା ପାଇଁ ''ହୋନି- ଅନ ହୋନି ବିରୁଦ୍ଧି କୃତି ସମିତି'' ନାମକ ଏକ କମିଟି ମଧ୍ୟ ବମ୍ୱେଠାରେ

ଗଠିତ କରାଯାଇ ୱ୍ଲର୍ଲି ଟିଭି କେନ୍ଦ୍ର ଆଗରେ ବିକ୍ଷୋଭ କରାଯାଇଥିଲା । ପୁଣି ଏହାର ପ୍ରସାର ନିଷିଦ୍ଧ କରିବାକୁ ଗୁଜରାଟ ହାଇ-କୋର୍ଟରେ ଆବେଦନ କରାଯାଇଥିଲା । ପାର୍ଲାମେଣ୍ଟରେ କେତେକ ଲୋକ ସଭା ସଦସ୍ୟ ମଧ୍ୟ ଯୁକ୍ତି ବାଢ଼ିଥିଲେ ଯେ, ଅର୍ଦ୍ଧମନସ୍ତତ୍ତ୍ୱ ଉପରେ ଆଧାରିତ ଏହି ଧାରାବାହିକୀର ପ୍ରତ୍ୟକ୍ଷ ଜୀବନ କିମ୍ବା ବିଜ୍ଞାନ ସହିତ ସେମିତି କିଛି ସଂପର୍କ ନାହିଁ । ଏତଦ୍‌ବ୍ୟତୀତ ‘‘ମହାରାଷ୍ଟ୍ର ଅନ୍ଧଶ୍ରଦ୍ଧ ନିର୍ମୂଳନ ସମିତି; ପୁଣେ’’ ଶାଖା ତରଫରୁ ଏକ ଦୃଢ଼ ପ୍ରତିବାଦ-ପତ୍ର ଦୂରଦର୍ଶନର ଉଚ୍ଚକର୍ତ୍ତୃପକ୍ଷଙ୍କୁ ଦିଆଯାଇଥିଲା ।

ଏହି ପ୍ରକାରେ, ବହୁ ବ୍ୟକ୍ତି ଓ ଯୁକ୍ତିବାଦୀ ସଂଗଠନ ଦର୍ଶାଇଥିଲେ ଯେ, ଏହି ଧାରାବାହିକୀ ଭାରତୀୟ ସଂବିଧାନର ୫୧ ଏ ‘‘ଏଚ୍’’ ଧାରା ଏବଂ ଧାରାବାହିକ-ପ୍ରସାରଣ ଆଇନ ଉଲଙ୍ଘନ କରୁଛି । ଅଲୌକିକ କଥାବସ୍ତୁକୁ ବାସ୍ତବ ରୂପ ଦେଲେ, ସାଧାରଣ ଲୋକେ ବିପଥଗାମୀ, ଅନ୍ଧବିଶ୍ୱାସୀ ଓ କୁସଂସ୍କାରାଚ୍ଛନ୍ନ ହୋଇଯିବେ ବୋଲି ସେମାନେ ଆଶଙ୍କା ପ୍ରକାଶ କରିଥିଲେ ।

ଉପରୋକ୍ତ ପ୍ରତିବାଦ, ବିକ୍ଷୋଭ, ସଭାସମିତି, ପଟୁଆର ଇତ୍ୟାଦି ନଜରରେ ପଡ଼ିଲେ, ଯେ କୌଣସି ଲୋକର ମନରେ ହଠାତ ବିଶ୍ୱାସ ଜନ୍ମିବ -ସତେ ଯେମିତି ‘‘ହୋନି ଅନ ହୋନି’’ ଏକ ମାରାତ୍ମକ ପ୍ଲଟ୍ ଉପରେ ଆଧାରିତ ଓ ଏହାର ସାମାନ୍ୟତମ ପ୍ରଦର୍ଶନ ମଧ୍ୟ ସାରା ଦେଶକୁ କୁସଂସ୍କାରର ଘନ ଆବରଣରେ ଆଚ୍ଛାଦିତ କରି ପକାଇବ ।

କିନ୍ତୁ ପ୍ରକୃତରେ ‘‘ହୋନି ଅନ ହୋନି’’ର ବିଷୟବସ୍ତୁ କଣ ? ଦୃଷ୍ଟାନ୍ତ ସ୍ୱରୂପ, ଏହି ଧାରାବାହିକୀର କୌଣସି ଗୋଟିଏ ଅଧ୍ୟାୟରେ, ଚିତ୍ରକାର ଆବୁ ଆବ୍ରାହାମ୍ ନଗର କୋଏଲ୍‌ର ତାମିଲ-ବାଳକର ଶରୀରରେ ପ୍ରେତ-ସବାର ହେବା ପରି ବିଷୟଟିଏ ଉପସ୍ଥାପିତ କରାଯାଇଛି । ହୁଏତ ସର୍ବସାଧାରଣ ଏହି ପରି ଘଟଣା ଅଙ୍ଗେ ନିଭାଇ ନଥାନ୍ତି । କିନ୍ତୁ ତାର ଅର୍ଥ ନୁହେଁ ଯେ, ଏପରି ଅଲୌକିକ ଘଟଣା ଅସମ୍ଭବ । ଆବୁ ଆବ୍ରାହମ୍‌ଙ୍କ ପରି ଅନ୍ୟମାନଙ୍କ ଭୌତିକ ଅନୁଭୂତିକୁ ଆମେ ସମ୍ମାନ ଦେବା କଦାପି ଗର୍ହିତ କାର୍ଯ୍ୟ ହୋଇ ନ ପାରେ । ଦୂରଦର୍ଶନର ପରଦାରେ ‘‘ହୋନି ଅନହୋନି’’ର ପ୍ରଦର୍ଶନ ଏହି ଉଦାର ଭାବନାର ଏକ ପ୍ରତିଫଳନ ମାତ୍ର । କେତେକ ଅପରିଚିତ, ଅସ୍ୱାଭାବିକ ଅନୁଭୂତିକୁ ସର୍ବସାଧାରଣଙ୍କ ସମ୍ମୁଖରେ ଉପସ୍ଥାପନା କରିବା ଏହାର ଲକ୍ଷ୍ୟ ।

ପୁଣି ଆତ୍ମା, ପରମାତ୍ମା, ଭୂତ-ପ୍ରେତ, ପୁନର୍ଜନ୍ମ ଇତ୍ୟାଦି ବିଷୟରେ ଆଜିଯାଏଁ ଯୁକ୍ତିତର୍କ ମହାମହା ପଣ୍ଡିତଙ୍କ ମଧ୍ୟରେ ଲାଗି ରହିଥିବାବେଳେ ଏବଂ ଏହି ବିଷୟରେ ବହୁଯୋଗ, ସାଧନା, ତପସ୍ୟା ସତ୍ତ୍ୱେ କୌଣସି ନିଧାର୍ଯ୍ୟ ନିଷ୍ପତ୍ତି ବର୍ତ୍ତମାନ ଯାଏଁ ସମ୍ଭବ ହୋଇ ପାରୁ ନଥିବାରୁ, ଆମେ ଏହି ସବୁ ବିଷୟକୁ ଅବାସ୍ତବ, ଅସାର, ଅଣବୈଜ୍ଞାନିକ ଇତ୍ୟାଦି କହି କଟୁ ସମାଲୋଚନା କରିବା କେତେ ଦୂର ଯଥାର୍ଥ ?

ଏହି ପ୍ରସଙ୍ଗରେ ଡକ୍ଟର କାଭୁର୍‌ଙ୍କ ବିଷୟ ଉପସ୍ଥାପନା କରାଯାଇପାରେ । ସେ ଜଣେ ଯୁକ୍ତିବାଦୀ । ଭଗବାନ ସତ୍ୟ ସାଇବାବାଙ୍କୁ ଜଣେ ପ୍ରବଞ୍ଚକ ବୋଲି ସେ ଆଖ୍ୟା ଦେବାକୁ ପଛେଇ ନାହାନ୍ତି । ପୁଣି ବାବା ଯେଉଁ ଭୌତିକ ଘଟଣାମାନ ପ୍ରଦର୍ଶନ କରୁଛନ୍ତି, ତାହା ଯାଦୁବିଦ୍ୟା ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି ସେ ଘୋଷଣା କରିଛନ୍ତି । ସରଳ ଲୋକମାନଙ୍କୁ ଭୁଲାଇ, ଠକି ନିଜର ଭକ୍ତ କରିବା ପାଇଁ ସାଇବାବା ଏପରି ନିନ୍ଦନୀୟ କୌଶଳ ଅବଲମ୍ବନ କରୁଛନ୍ତି ବୋଲି ସେ ଗୁରୁତର ଅଭିଯୋଗମାନ ବାଢ଼ିଛନ୍ତି ।

ଡକ୍ଟର କାଭୁର୍ କେବଳ ସାଇବାବାଙ୍କ ବିରୁଦ୍ଧରେ ନୁହେଁ; ସେ କୌଣସି ପ୍ରକାର ଭୌତିକ ଘଟଣାରେ ଆଦୌ ବିଶ୍ୱାସ କରନ୍ତି ନାହିଁ ବୋଲି ଦାବୀ କରୁଛନ୍ତି । ଭୂତ-ପ୍ରେତ ଇତ୍ୟାଦିକୁ ମନଗଢ଼ା ତତ୍ତ୍ୱ ବୋଲି ସେ ବିବେଚନା କରନ୍ତି । ଏକଦା ଭୂତ ଦେଖିବା ପାଇଁ ସେ କୁଆଡ଼େ ଗୋଟିଏ ଶ୍ମଶାନରେ ସାରା ରାତି ଜଗିଲେ; ତଥାପି କୌଣସି ଭୂତ ଆଖିରେ ପଡ଼ିଲା ନାହିଁ । ତେଣୁ ସେ ତତ୍‌କ୍ଷଣାତ୍ ଉପସଂହାରରେ ପହଞ୍ଚିଲେ ଯେ, ଭୂତ ପ୍ରେତ, ଅଶରିରୀ ଆତ୍ମା ଇତ୍ୟାଦି ବିଷୟମାନ ଅବାସ୍ତବ ! ଅମୂଳକ ।

କିନ୍ତୁ ଡକ୍ଟର କାଭୁର୍‌ଙ୍କ ଏହି ପ୍ରକାର ଯୁକ୍ତି ଆଦୌ ଦୃଢ଼ ନୁହେଁ ବୋଲି ଚିତ୍ରକାର ଆବୁ ଅବ୍ରାହାମ୍ ବ୍ୟଙ୍ଗ କରିଛନ୍ତି । କାରଣ ଆମେ ଜାଣୁଁ ଯେ, ଉଡ଼ନ୍ତା ବସ୍ତୁ ବା ''ୟୁଫୋ'' ଆକାଶରୁ ଭୂପୃଷ୍ଠକୁ ବେଳେ ବେଳେ ଖସି ଆସେ ବୋଲି କେତେକ ବୈଜ୍ଞାନିକ ମତ ଦିଅନ୍ତି । ଧରାଯାଉ ଯେ, ୟୁଫୋକୁ ଦେଖିବା ପାଇଁ ଆମେ ଗୋଟିଏ ରାତି ଅନିଦ୍ରାରେ ଆକାଶକୁ ଚାହିଁ କଟାଇଲୁ; କିନ୍ତୁ ଏମିତି କୌଣସି ଉଡ଼ନ୍ତା ବସ୍ତୁ ଆମ ଆଖିରେ ପଡ଼ିଲା ନାହିଁ । କିନ୍ତୁ ଏହାର ଅର୍ଥ କଣ ହେଉଛି ଯେ, ୟୁଫୋ ଅବାସ୍ତବ ? ଆମକୁ ମନେ ରଖିବାକୁ ପଡ଼ିବ ଯେ, ଆମେ ଅଲୌକିକତାକୁ ଖୋଜିଲେ, ସେ ଦୃଷ୍ଟିଗୋଚର ହେବ । ମାତ୍ର ସେ ଆପଣା ଛାଏଁ ଆମ ହାତରେ ଧରା ଦେବେ ବୋଲି ଭାବି ନେବା ଅନୁଚିତ; ଅଯୌକ୍ତିକ ମଧ୍ୟ ।

ପ୍ରକୃତରେ ପ୍ରେତ ହେଉ କିମ୍ବା ୟୁଫୋ ହେଉ; ଯେତେବେଳେ ଆମେ କୌଣସି ଆକସ୍ମିକ ଘଟଣା ସଂପର୍କରେ ନିର୍ଦ୍ଦିଷ୍ଟ ଉପସଂହାରରେ ପହଞ୍ଚିବାକୁ ଚାହୁଁ; ଆମକୁ ଦୀର୍ଘ ସମୟ ଧରି ଅନୁସନ୍ଧାନ୍ କରିବାକୁ ପଡ଼ିବ । ଗୋଟିଏ କିମ୍ବା ଦୁଇଟି ରାତିରେ ଆମେ କୌଣସି ନୂତନ ତଥ୍ୟ କିମ୍ବା ବସ୍ତୁଟିଏ ଆବିଷ୍କାର କରିଦେବୁ ବୋଲି ଭାବିବା ଆମ ବୋକାମିର ପରିଚୟ ଦେବ । ତେଣୁ ଡକ୍ଟର କାଭୁର୍‌ଙ୍କ ପରି ଯେଉଁମାନେ ହେତୁବାଦୀ, ସେମାନେ ଧୈର୍ଯ୍ୟ ଧରି ଅଧିକ ଅଧ୍ୟବସାୟ କରନ୍ତୁ ଏବଂ ଅଲୌକିକତା ପ୍ରକୃତରେ ସମ୍ଭବ କି ନାଁ; ତାହା ନିଷ୍ଠାର ସହିତ ଖୋଲାମନରେ ପରୀକ୍ଷା କରନ୍ତୁ । ତାହାହେଲେ ସେମାନଙ୍କ ବୌଦ୍ଧିକ ସାଧୁତା ପ୍ରତି କେହି ସନ୍ଦେହ ପ୍ରକାଶ କରିବେ ନାହିଁ ।

ବାସ୍ତବିକ ଯେଉଁମାନେ ''ହୋନି ଅନହୋନି''କୁ ଦେଖି ଦେଖି ପ୍ରାଣ ପଣେ ଶଙ୍କିତ ହୋଇ ଯାଉଛନ୍ତି, ସେମାନଙ୍କ ଅନ୍ତରରେ ବୈଜ୍ଞାନିକ ଚିନ୍ତାଧାରାର ବିନ୍ଦୁ ବିସର୍ଗ ଅଛି କି ନାହିଁ, ତାହା ସନ୍ଦେହଜନକ । ଯେଉଁମାନେ ପ୍ରକୃତରେ ବୈଜ୍ଞାନିକ, ସେମାନେ ଜେମ୍‌ସ୍ ୱାଟ୍‌ଙ୍କ ଭଳି ସ୍ୱପ୍ନ ପରି ଘଟଣାକୁ ଗୁରୁତ୍ୱ ଦେଉଥିବା ବେଳେ, ଆମ ପରି ତଥାକଥିତ ଆଧୁନିକ ଶିକ୍ଷିତ ବ୍ୟକ୍ତିମାନେ ''ହୋନି- ଅନହୋନି''ର ବିଷୟବସ୍ତୁକୁ ନିଷିଦ୍ଧ କରିବା ପାଇଁ ଦାବୀ କରିବା ନିହାତି ଅଯୌକ୍ତିକ । ଏଥିରୁ ପ୍ରତୀତ ହୁଏ ଯେ, ଆତ୍ମାର ଧର୍ମ ଓ ଅସ୍ତିତ୍ୱ ସଂପର୍କରେ ବିଚାର କରିବା ପାଇଁ ଆମେ ଇହଲୋକରେ ଅନୁକୂଳ ବାତାବରଣ ସୃଷ୍ଟି କରିବାକୁ ପ୍ରସ୍ତୁତ ନୋହୁଁ ।

ଅବଶ୍ୟ ଏହାର ଅର୍ଥ ନୁହେଁ ଯେ, ''ହୋନି- ଅନହୋନି' ପରି ଅଲୌକିକ ଘଟଣାମାନଙ୍କୁ ଅବତାରଣା କରୁଥିବା ବିଭିନ୍ନ କାର୍ଯ୍ୟକ୍ରମର ପ୍ରତିଟି ବିଷୟ ସତ ଏବଂ ଆମେ ଏଇ ସବୁକୁ ସମାନ୍ୟାନେ ଗ୍ରହଣ କରିବା ଆବଶ୍ୟକ । ତେବେ ପ୍ରକୃତ ବିଷୟ ହେଉଛି ଯେ, ଆମ ମନ ଖୋଲା ରହିବା ଆବଶ୍ୟକ, ଯାହା ଦ୍ୱାରା ଆମେ ବିଭିନ୍ନ ବିଷୟକୁ ବିନା ବିଦ୍ୱେଷରେ ବିଶ୍ଳେଷଣ କରିବାର ସୁଯୋଗ ପାଇବୁ । ଏପରି କରିବା ପରିବର୍ତ୍ତେ ଯଦି ଅଲୌକିକ ଘଟଣଗୁଡ଼ିକର ବର୍ଣ୍ଣନା ନିଷିଦ୍ଧ କରାଯାଏ, ତାହାହେଲେ ପ୍ରମାଣିତ ହୋଇଯିବ ଯେ, ଆମେ ଭୟାଳୁ; ଆମର ଆତ୍ମବିଶ୍ୱାସ ନାହିଁ ଏବଂ ଭୌତିକ ଘଟଣାର ସମ୍ମୁଖୀନ ହେବା ପାଇଁ, ଶାରୀରିକ କିମ୍ବା ମାନସିକ ସ୍ତରରେ ଆମର ସତ୍‌ସାହସ ନାହିଁ । ତେଣୁ ଭୌତିକ ଘଟଣାର ବିବୃତି ଉପରେ ନିଷେଧାଜ୍ଞା ଜାରି କରିବାର ଅର୍ଥ ହେଉଛି, ଆମେ ଆମ ମସ୍ତିଷ୍କକୁ ପକ୍ଷାଘାତ ରୋଗରେ ପୀଡ଼ିତ କରାଇ, ଶଯ୍ୟାଶାୟୀ କରିବାକୁ ବଦ୍ଧ ପରିକର । .....ଏହାର ଅନ୍ୟ ଏକ ଗୁରୁତର କୁପରିଣାମ ହେଉଛି ଯେ, ଆମ ମସ୍ତିଷ୍କର ଡାହାଣ ଭାଗ ନିଷ୍କ୍ରିୟ ହୋଇଯିବ ଏବଂ ଆମେ ସୃଜନଶୀଳତା ହରାଇବା । ଏହି ମନୋବୈଜ୍ଞାନିକ ସିଦ୍ଧାନ୍ତକୁ ଉପେକ୍ଷା କଲେ, ମାନବ ସଭ୍ୟତା ପାଇଁ ଦୁର୍ଦ୍ଦିନ ପହଞ୍ଚିପାରେ ।



# ପୁରସ୍କାର ପାଇଁ ପରଲୋକ ବ୍ୟବସ୍ଥା

''ସଂସ୍କୃତି ଓ ଅପସଂସ୍କୃତି'' ପୁସ୍ତକ ସକାଶେ ଶ୍ରୀ ଶରତ କୁମାର ମହାନ୍ତିଙ୍କୁ ନବମ ସାରଳା ପୁରସ୍କାର ପାଇଁ ମନୋନୀତ କରାଯିବା ପରେ ପରିସ୍ଥିତି କିଛି ପରିମାଣରେ ଅସ୍ୱାଭାବିକ ହେଲା । ବିଚିତ୍ର ବିଷୟ ହେଉଛି ଯେ, ଉକ୍ତ ପୁସ୍ତକର 'ସାହିତ୍ୟିକ ମେଡାଲ୍ ଓ ସିଡ଼ି ତ୍ରିଭୁଜ'' ଶୀର୍ଷକ ଏକ ଅଧ୍ୟାୟରେ ଲେଖକ ଶ୍ରୀ ମହାନ୍ତି ''ପୁରସ୍କାର-ପ୍ରହସନ'' ବିରୋଧରେ ମନ୍ତବ୍ୟ ଦେଇଛନ୍ତି । ପୁରସ୍କାର ବିରୋଧରେ ଲେଖା ଯାଇଥିବା ଗୋଟିଏ ପୁସ୍ତିକ ପୁରସ୍କୃତ ହେବା ନିଶ୍ଚିତ ଭାବେ ଏକ ଖାପଛଡ଼ା ଘଟଣା । ତେଣୁ ଶ୍ରୀ ମହାନ୍ତି ପୁରସ୍କାର ବର୍ଜନ କରି ଜଣାଇଲେ, ''..ମୁଁ ବି ଲେଖିଛି ପୁରସ୍କାର ସାହିତ୍ୟିକ ବାତାବରଣକୁ କଳୁଷିତ କରୁଛି ବୋଲି । ପୁଣି କେଉଁ ମୁହଁରେ ମୁଁ ପୁରସ୍କାର ଗ୍ରହଣ କରିଥାନ୍ତି ? ଭବିଷ୍ୟତ ବଂଶଧର ମୋତେ ଏଥିପାଇଁ ଦାୟୀ କରିବେନି ? (ପ୍ରଜାତନ୍ତ୍ର ସାପ୍ତାହିକୀ, ୧୯-୨୫ଜୁନ୍ ୧୯୮୮) ।

ଶ୍ରୀ ମହାନ୍ତିଙ୍କର ପୁରସ୍କାର-ବିରୋଧୀ ମନୋଭାବର କାରଣ ସେ ନିଜେ ବିଶ୍ଳେଷଣ କରିଛନ୍ତି, ''ମନେ ହେଉଛି, ସାହିତ୍ୟ ଲେଖାଯାଉଛି କେବଳ ପୁରସ୍କାରକୁ ଭିତ୍ତି କରି । ସାହିତ୍ୟ ଆଲୋଚନା ମଧ୍ୟ ପୁରସ୍କାର-କେନ୍ଦ୍ରିକ ହୋଇ ପଡୁଛି । ଦୁଃଖର କଥା, ଓଡ଼ିଶାର ବଡ଼ ବଡ଼ ଲେଖକ, ସାହିତ୍ୟିକଙ୍କର ଯୋଗ୍ୟତା ଥିବା ସତ୍ତ୍ୱେ ପୁରସ୍କାର ପ୍ରଦାନ କ୍ଷେତ୍ରରେ ସେମାନଙ୍କୁ ଅବହେଳା କରାଗଲେ, ପୁରସ୍କାର ପାଇଁ ସେମାନଙ୍କ ମଧ୍ୟରେ ଯେଉଁ ବ୍ୟାକୁଳତା ପ୍ରକାଶ ପାଉଛି, ତାହାହିଁ ବିସ୍ମୟକର । ସାହିତ୍ୟ ଜରିଆରେ ସମାଜର ଯାବତୀୟ ଅଳିଆ ଆବର୍ଜନାକୁ ଦୂର କରିବା ପାଇଁ କ'ଣ ବଡ଼ ବଡ଼ ସାହିତ୍ୟିକମାନଙ୍କର କୌଣସି କର୍ତ୍ତବ୍ୟ ନାହିଁ ଯେ, ସେମାନେ ଗୋଷ୍ଠୀ ଗଠନ କରି ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ପ୍ରଭାବ ବିସ୍ତାର କରି ପୁରସ୍କାର ପାଇବାକୁ ବ୍ୟାକୁଳତା ପ୍ରକାଶ କରିବେ ?...ଓଡ଼ିଆ ସାହିତ୍ୟ ନିଜ ବହିର ସମୀକ୍ଷା ନିଜେ ଲେଖିବା, ନିଜ ଲେଖା ସଂପର୍କରେ ନିଜେ ଚିଠି ଲେଖିବା ବା ପୁରସ୍କାର ପାଇଁ ଧରାଧରି କରିବା ଘଟଣା ମତେ ଖୁବ୍ ଦୁଃଖ ଦେଇଛି'' ।

ଯାହାମନେ ହେଉଛି, ଶ୍ରୀ ମହାନ୍ତିଙ୍କର ପୁରସ୍କାର ପ୍ରତ୍ୟାଖ୍ୟାନର ମୂଳ ଉଦ୍ଦେଶ୍ୟ ହେଉଛି, ପ୍ରତିବାଦ ଜଣାଇବା । ସାଂପ୍ରତିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଯେଉଁ ନୈତିକ ସ୍ଖଳନ ଓ ଅଧୋଗତି ଘଟିଛି, ତା'ରି ବିରୋଧରେ ସ୍ୱର ଉତ୍ତୋଳନ କରିବା । କେବଳ ନିମ୍ନଗାମୀ ସାହିତ୍ୟ ନୁହେଁ, ଯେ କୌଣସି ସାହିତ୍ୟ ସଂସ୍ଥାର ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଅସମ୍ମାନଜନକ

ବ୍ୟବହାର ମଧ ସେ ସହ୍ୟ କରିପାରି ନାହାନ୍ତି । ଉଦାହରଣ ଭାବେ ଓଡ଼ିଆ ସାହିତ୍ୟ ଏକାଡ଼େମୀର ପୁରସ୍କାର ବିଷୟରେ ବିଚାର କରାଯାଇପାରେ ।

ଏକାଡେମୀର ନିୟମ ଅନୁସାରେ ଯେଉଁ ଲେଖକ କିମ୍ବା ଲେଖକର ପ୍ରକାଶକ ପୁରସ୍କାର ପାଇବା ପାଇଁ ଆଗ୍ରହୀ, ସେମାନଙ୍କୁ ନିଜେ ଏକାଡେମୀରେ ବହି ଦାଖଲ କରିବାକୁ ପଡ଼ିବ । ଏହି ନିୟମ ଶ୍ରୀ ମହାନ୍ତିଙ୍କ ସମେତ କେତେକ ଅଭିମାନୀ ଓ ସଚେତନ ସାହିତ୍ୟିକଙ୍କୁ ମାନସିକ ସ୍ତରରେ ଆଘାତ ଅବଶ୍ୟ ଦେଇଥିବ । ତେଣୁ ୧୯୮୩ ସାଲରେ ଯେତେବେଳେ 'ଗ୍ରୀକ ଜାତିର ଗାଥା' ପୁସ୍ତକ ପାଇଁ ଶ୍ରୀ ମହାନ୍ତିଙ୍କୁ ଏହି ପୁରସ୍କାର ଦେବାକୁ ମନୋନୀତ କରାଗଲା, ସେ ଉକ୍ତ କାରଣ ଦର୍ଶାଇ ପୁରସ୍କାର ବର୍ଜନ କରିଥିଲେ ।

ଥରକୁ ଥର ପୁରସ୍କାର ଗ୍ରହଣ ନ କରିବା ଦ୍ୱାରା ଯେଉଁ ପ୍ରକାର ପ୍ରଭାବ ପଡ଼ିପାରେ, ତାହା ଶ୍ରୀ ମହାନ୍ତି ଉଲ୍ଲେଖ କରିଛନ୍ତି, ''ଆମେମାନେ ସାହିତ୍ୟର 'ଉପଯୋଗ' ଉପରେ ଗୁରୁତ୍ୱ ନଦେଇ ଅଯଥାରେ ସାହିତ୍ୟର ''ପୁରସ୍କାର'' ଉପରେ ହିଁ ଗୁରୁତ୍ୱ ଦେଇ ଆସିଛୁ । ଯେ ପର୍ଯ୍ୟନ୍ତ ଓଡ଼ିଶାର ସଚେତନ ପାଠକ ଗୋଷ୍ଠୀ ଦୃଷ୍ଟି ନ ଦେଇଛନ୍ତି ବା ସାହିତ୍ୟର ମୂଲ୍ୟବୋଧ ପ୍ରତି ଦୃଷ୍ଟି ରଖି ସେମାନେ ଜାଗ୍ରତ ପ୍ରହରୀ ଭଳି କାମ ନ କରିଛନ୍ତି, ସେ ପର୍ଯ୍ୟନ୍ତ ପୁରସ୍କାର ପ୍ରହସନର ପ୍ରତିକାର ସମ୍ଭବ ନୁହେଁ । ...ମୁଁ ପୁରସ୍କାର ଗ୍ରହଣ ନକରିବା ଦ୍ୱାରା ସାମୟିକ ଉତ୍ତେଜନା ଓ ପ୍ରତିକ୍ରିୟା ସୃଷ୍ଟି ହେବ ଓ ତା'ର କୌଣସି ପ୍ରଭାବ ବିଶେଷ ଭାବରେ ପଡ଼ିବ ନାହିଁ ବୋଲି ମୁଁ ଜାଣିଛି । ମାତ୍ର ଯାହା ମୁଁ ଲେଖିଛି, ତାହାକୁ କାର୍ଯ୍ୟରେ କରି ଦେଖାଇବା ଲାଗି ମୁଁ ପ୍ରତିବାଦ କରୁଛି ପୁରସ୍କାର ନେବାକୁ । ଏହାର ପ୍ରଭାବ କିଛି ନ ପଡ଼ିଲେ ନପଡୁ । ତାହା ଅନ୍ତତଃ ଆମର ସାଂସ୍କୃତିକ ଇତିହାସରେ ଲିପିବଦ୍ଧ ହୋଇ ରହିବ ।''

ଯେତେବେଳେ ଜଣେ ପୁରସ୍କୃତ ବ୍ୟକ୍ତି ପୁରସ୍କାର ଗ୍ରହଣ କରି ନଥାଏ, ସେ ତା'ର କାରଣ ଜଣାଇଥାଏ । ବେଳେ ବେଳେ ଏହି କାରଣ ବ୍ୟକ୍ତିଗତ ହୋଇଥାଏ । କିନ୍ତୁ ଅନେକ ସମୟରେ ଏହା ସ୍ୱାର୍ଥଠାରୁ ଉର୍ଦ୍ଧ୍ୱରେ ଥାଏ । ଶ୍ରୀ ମହାନ୍ତିଙ୍କର ପୁରସ୍କାର ପ୍ରତ୍ୟାଖ୍ୟାନ କରିବା ପଛରେ ମୁଖ କାରଣ ହେଉଛି, ସାଂପ୍ରତିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ରହିଥିବା କଳୁଷିତ ବାତାବରଣ ତଥା ନିନ୍ଦନୀୟ ପ୍ରଥା । କିନ୍ତୁ ଏହାର ଅର୍ଥ ନୁହେଁ ଯେ, ପୁରସ୍କାର ପ୍ରତ୍ୟାଖ୍ୟାନ ବିଷୟ କେବଳ ସାଂପ୍ରତିକ ଓଡ଼ିଆ ସାହିତ୍ୟ ପରି ପ୍ରଦୂଷିତ କ୍ଷେତ୍ରରେ ହିଁ ପରିଦୃଷ୍ଟ ହେବ । ଉପାଧି-ଉଚ୍ଛେଦ ପାଇଁ ଓଡ଼ିଶା ବାହାରେ ମଧ ବହୁ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ଦ୍ୱାରା ଦାବୀ କରାଯାଉଛି ।

ଫ୍ରାନସ୍‌ର ବିଶିଷ୍ଟ ଲେଖକ ଜ୍ୟାଁ ପଲ୍ ସାର୍ତ୍ରେ ''ଲିଜିଅନ୍ ଅଫ୍ ଅନର'' ଗ୍ରହଣ ନକରିବା ବେଳେ ଜଣାଇଥିଲେ ଯେ, ଜଣେ ଲେଖକ ସାଧାରଣତଃ ମାନବ ସଭ୍ୟତାର ହିତ

ଦୃଷ୍ଟିରୁ କିଛି ଆଦର୍ଶ ବା ମହତ୍ ଉଦ୍ଦେଶ୍ୟ ଆଖି ଆଗରେ ରଖି ଲେଖନୀ ଚାଳନା କରିଥାଏ । ତେଣୁ ଯଦି ଆମେ ଜଣେ ଲେଖକକୁ ପୁରସ୍କାର ଦେବା, ତାହାହେଲେ ତା'ର ଅର୍ଥ ହେବ ଯେ, ଲେଖକଟି ଯେଉଁ ଆଦର୍ଶ ନେଇ ଲେଖୁଛି, ତାହା ବଡ଼ ନୁହେଁ, କିନ୍ତୁ ବଡ଼ ହେଉଛି ନିଜେ ଲେଖକ ଜଣକ । ଏହାଦ୍ୱାରା ଯଥେଷ୍ଟ କୁପ୍ରଭାବ ପଡ଼ିବ; କାରଣ ଏହାଦ୍ୱାରା ଲେଖକର ସମାଜ ପାଇଁ ଥିବା ମହତ୍ ଉଦ୍ଦେଶ୍ୟ ମଳିନ ଜଣା ପଡ଼ିବ ଓ ଏହା ପରିବର୍ତ୍ତେ ନିଜେ ଲେଖକ ଜଣକ ଅଧିକ ଗୌରବ ମଣ୍ଡିତ, ମହତ୍ତ୍ୱପୂର୍ଣ୍ଣ, ମର୍ଯ୍ୟାଦାସଂପନ୍ନ ତଥା ଜାଜ୍ୱଲ୍ୟମାନ ଦେଖାଯିବ ।

ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଯେଉଁ ଉତ୍ସବରେ ଶ୍ରୀ ଶରତ କୁମାର ମହାନ୍ତି ନବମ ସାରଳା ପୁରସ୍କାର ଗ୍ରହଣ କରିବା କଥା ଥିଲା, ସେଥିରେ ଜ୍ଞାନପୀଠ ପୁରସ୍କାର ବିଜେତା ଲେଖକ ଡକ୍ଟର ବୀରେନ୍ଦ୍ର କୁମାର ଭଟ୍ଟାଚାର୍ଯ୍ୟ ମୁଖ୍ୟ ଅତିଥିଭାବେ ଯୋଗ ଦେଇଥିଲେ । ପୁରସ୍କାର-ବର୍ଜନ ବିଷୟ ଉଲ୍ଲେଖ କରିବାବେଳେ ସେ ମନ୍ତବ୍ୟ ଦେଇଥିଲେ ଯେ, ସାହିତ୍ୟିକକୁ ପୁରସ୍କାର ଦେବା ଅର୍ଥ ହେଉଛି ଯେ ତାକୁ ସ୍ୱୀକୃତି ଦିଆଗଲା । କିନ୍ତୁ ପୁରସ୍କାର କେବଳ ଏକମାତ୍ର ବ୍ୟବସ୍ଥା ନୁହେଁ, ଯାହାଦ୍ୱାରା ଲେଖକକୁ ସ୍ୱୀକୃତି ଦିଆଯାଇ ପାରିବ; ଏଥିପାଇଁ ବହୁତ ବିକଳ୍ପ ଉପାୟ ମଧ୍ୟ ଅଛି । ତେବେ ପ୍ରଶ୍ନ ଉଠୁଛି ଯେ, ଏହି ବିକଳ୍ପ ପନ୍ଥାମାନ କଣ ହୋଇପାରେ, ଯାହାଦ୍ୱାରା ପାଠକ କିମ୍ବା ସମାଜ ଜଣେ ଭଲ ଲେଖକକୁ ନିଜର କୃତଜ୍ଞତା ଜଣାଇ ପାରିବ ?

୧୯୭୦ ସାଲରେ ଶ୍ରୀକୃଷ୍ଣ ଆଲ୍ଲାନାହଲ୍ଲୀ କନ୍ନଡ଼-ସାହିତ୍ୟରେ ନୂତନ ଭାବେ ପ୍ରବେଶ କରିଥାନ୍ତି । ସେତେବେଳକୁ ସେ ଖଣ୍ଡିଏ ମାତ୍ର କ୍ଷୁଦ୍ର କବିତା ପୁସ୍ତକର ରଚୟିତା । ଏହି ପୃଷ୍ଠଭୂମିରେ ପ୍ରକାଶକ ଜି.ବି. ଯୋଶୀ ଅଭିଜ୍ଞ-ମତାମତ ଜାଣିବା ପାଇଁ ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ଦ୍ଦେଶକ ଗିରୀଶ କନ୍ନଡ଼ଙ୍କୁ ଭେଟି ଶ୍ରୀ ଆଲାନାହଲ୍ଲୀଙ୍କ "କାଡୁ" ଶୀର୍ଷକ ଏକ କ୍ଷୁଦ୍ର ଉପନ୍ୟାସର ପାଣ୍ଡୁଲିପିଟି ଦେଖାଇଥିଲେ । ତାହା ପ୍ରଥମ ଥର ପଢୁଥିବାବେଳେ ଶ୍ରୀ ଗିରୀଶ କନ୍ନଡ଼ ଯେଉଁ ମନ୍ତବ୍ୟ ଦେଇଥିଲ, ତାହା ପ୍ରଣିଧାନଯୋଗ୍ୟ, "ମୁଁ ପାଣ୍ଡୁଲିପିଟିର ଅଧାଅଧି ପଢ଼ିଥିବା ସମୟରେ ଅନୁଭବ କଲି ଯେ, ଏହି ଉପନ୍ୟାସଟିକୁ ଭିତ୍ତିକରି ମୋତେ ଗୋଟିଏ ଚଳଚ୍ଚିତ୍ର ନିର୍ମାଣ କରିବାକୁ ପଡ଼ିବ । ଗୋଟିଏ ପୁସ୍ତକକୁ ଚଳଚ୍ଚିତ୍ର କିମ୍ବା ନାଟକରେ ପ୍ରଦର୍ଶନ କରିବା, ଏମିତିକି ଅନୁବାଦ କରିବାର ଅର୍ଥ ହେଉଛି, ବହିଟିର କ୍ଷମତା ବା ପ୍ରଭାବ ନିକଟରେ ନିଜକୁ ସଂପୂର୍ଣ୍ଣଭାବେ ସମର୍ପଣ କରିଦେବା । ଏହାର ଅନ୍ୟ ଏକ ଅର୍ଥ ହେଉଛି ଯେ, ମୁଁ ସେ ବହିଟି ନିଜେ କାହିଁକି ଲେଖି ପାରିଲି ନାହିଁ ବୋଲି ନିଜ ଉପରେ କ୍ରୁଦ୍ଧ ହେବା । ପ୍ରକାରାନ୍ତରେ ସେଇ ଲେଖକର ସଫଳତାକୁ ଅକ୍ତିଆର ବା ଲୁଣ୍ଠନ କରିବାକୁ ଏହା ଏକ ଚେଷ୍ଟା ।

ଏତଦ୍‌ବ୍ୟତୀତ ମୁଁ ଆଉ କିଛି ଅଧିକା କହିବାକୁ ଚାହୁଁନାହିଁ ।'' (୨୦-୧୧-୧୯୭୮; ମୁଖବନ୍ଧ, କାନ୍ତୁ) ।

ଏଥିରୁ ହୃଦ୍‌ବୋଧ ହୁଏ ଯେ, କୌଣସି ଲେଖକର ଲେଖାକୁ ଅନୁବାଦ କରିବା ତଥା ଚଳଚ୍ଚିତ୍ର କିମ୍ବା ନାଟକରେ ରୂପାନ୍ତରିତ କରିବା ଦ୍ୱାରା ମଧ୍ୟ ଜଣେ ବ୍ୟକ୍ତି ଲେଖକକୁ ସ୍ୱୀକୃତି ଜଣାଇଥାଏ । ଏମିତିକି ଲେଖାକୁ ଚୋରାଇ ନିଜ ନାମରେ ପ୍ରକାଶ କରିବା ପରି ମନ୍ଦ ବୃତ୍ତିରେ ମଧ୍ୟଲେଖକକୁ ଅନ୍ୟ ଏକ ଉପାୟରେ କୃତଜ୍ଞତା ଜଣାଇ ହୁଏ । ସ୍ୱୀକୃତି ଜଣାଇବା ପାଇଁ ବହୁ ବିକଳ୍ପ ପନ୍ଥାଥିବା ବେଳେ ପୁରସ୍କାର ବ୍ୟବସ୍ଥାକୁ ଆମେ ମନ ପ୍ରାଣ ଦେଇ ଜାବୁଡ଼ି ଧରିବା ଆମ ମନର ସଂକୀର୍ଣ୍ଣତା ପ୍ରମାଣ କରିଥାଏ ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି ପୁରସ୍କାର-ବ୍ୟବସ୍ଥା ଯଦି ବିଭିନ୍ନ ପ୍ରକାର ଚ୍ୟାଲେଞ୍ଜର ସମ୍ମୁଖୀନ ହୁଏ, ଏହାର ଅସ୍ତିତ୍ୱ ବିପନ୍ନ ହେବ କି ନାହିଁ ? ବହୁବିଧ ଆକ୍ରମଣର ସମ୍ମୁଖୀନ ହୋଇ ଏହା ନିଷ୍ପ୍ରଭ ତଥା ମ୍ରିୟମାଣ ହୋଇଯିବ ନାହିଁ କି ?

ସାଧାରଣତଃ ପୁରସ୍କାରଦାତାମାନେ କିଛି ମହତ୍ ଉଦ୍ଦେଶ୍ୟ ନେଇ ପୁରସ୍କାର ବିତରଣ କରିବା ବ୍ୟବସ୍ଥା କରିଥାନ୍ତି । ଏହାଦ୍ୱାରା କେତେକ ପ୍ରତିଭାଶାଳୀ ବ୍ୟକ୍ତିଙ୍କୁ ହୁଏତ ଉତ୍ସାହିତ ନତୁବା ପ୍ରଲୋଭିତ କରି ଲେଖାଲେଖି ଦିଗକୁ ଆକର୍ଷିତ କରି ହେବ । ପୁଣି ଭଲ ଲେଖକଙ୍କୁ ସମ୍ମାନିତ କରିବା ସୁଯୋଗ ମିଳିବ । ଆହୁରି ମଧ୍ୟ ପାଠକମାନଙ୍କୁ ଭଲ ବହି ଚିହ୍ନାଇ ଆବଶ୍ୟକ ସ୍ଥଳେ ସେମାନଙ୍କ ରୁଚି ମାର୍ଜିତ କରିହେବ । ଦୁଃଖର ବିଷୟ ହେଉଛି ଯେ, ପୁରସ୍କାରଦାତାର ଏହି ପ୍ରଶଂସନୀୟ ଲକ୍ଷ୍ୟ ସତ୍ତ୍ୱେ ସେ ଜାଣିପାରେ ନାହିଁ ଯେ, ସେ ଦିଅଁ ଗଢୁ ଗଢୁ ବେଳେ ବେଳେ ମାଙ୍କଡ଼ ଗଢ଼ି ପକାଉଛି । ଆମେ ଅନେକ ସମୟରେ ପୁରସ୍କାର ବିଜୟୀମାନଙ୍କର ନାମ, ଗ୍ରାମ, ପରିଚୟ, କୃତି ଇତ୍ୟାଦି ମୁଖସ୍ଥ କରି ସେମାନଙ୍କ ତୂରୀ ବଜାଉଥାଉ । କିନ୍ତୁ ବର୍ତ୍ତମାନ ବେଳ ଓଲଟି ଯାଇଥିବା ପରି ମନେ ହୁଏ । ଯେତେବେଳେ ସ୍ୱୟଂ ପୁରସ୍କାର-ବ୍ୟବସ୍ଥା ରହିବ ନା ନାହିଁ ବୋଲି ମୌଳିକ ପ୍ରଶ୍ନଟିଏ ଉଠିଲାଣି, ସେତେବେଳେ ପୁରସ୍କାର-ବିଜୟ ସଂପର୍କରେ ଭାବୁଛି କିଏ ? ଏହି ଯୁଦ୍ଧ କ୍ଷେତ୍ରରେ ସେ ବିଜୟୀ ହୋଇ ପାରିବ ତ ? ତାର ବିଜୟର କେତେଦୂର ସମ୍ଭାବନା ରହିଛି ? ବର୍ତ୍ତମାନ ଏହି ପ୍ରଶ୍ନର ବିଶ୍ଳେଷଣ ଆବଶ୍ୟକ ।

ଆମେ ''ଦିଲ୍ଲୀକା ଲଡ୍‌ଡୁ'' ବିଷୟରେ ଜାଣିଛୁ ଯେ, ଯିଏ ଏହି ଲଡୁ ଖାଇବ, ସେ କାନ୍ଦିବ । ମାତ୍ର ଯିଏ ନ ଖାଇଥିବ, ସିଏ ମଧ୍ୟ ଝୁରି ହେଉଥିବ । କିନ୍ତୁ ଏଣିକି ନୂଆଁ ପ୍ରକାର ''ଦିଲୀକା ଲଡ୍‌ଡୁ'' ତିଆରି ହେଉଛି ଯାହାର କି ଫଳ ଠିକ୍ ଓଲଟା । ଅର୍ଥାତ୍ ଏହି ଲଡୁ ଯିଏ ହାତରେ ଭିଡ଼ି ଧରିବ, ସିଏ ଭାରି ଖୁସୀ ହେବ । ପୁଣି ଯିଏ ହାତରୁ ଫୋପାଡ଼ି ଦେବ, ସିଏ

ମଧ୍ୟ କମ୍ ଖୁସୀ ହେବ ନାହିଁ । ଏଇ ନୂଆଁ ଲଡୁର ପ୍ରକୃତ ନାମ ହେଉଛି ପୁରସ୍କାର । ଯିଏ ପୁରସ୍କାର ଗ୍ରହଣ କରୁଛି, ତାକୁ ଅଭିନନ୍ଦନ ଜଣାଇବାକୁ କେତେ ଯେ କରମର୍ଦ୍ଦନ, ଅଭିନନ୍ଦନ, ଚିଠି, ଟେଲିଗ୍ରାମ ମିଳୁଛି, ତାହା ଅନୁଭବୀମାନେ ହିଁ ଜାଣନ୍ତି । କିନ୍ତୁ ଏହି ପୁରସ୍କାର ଯିଏ ପ୍ରତ୍ୟାଖ୍ୟାନ କରେ, ତା ପାଖରେ ମଧ୍ୟ କମ୍ ଭିଡ଼ ଜମି ନଥାଏ । ଲୋକେ ତାକୁ ବୀର, ସାହସୀ, ସଚ୍ଚୋଟ, ନିଷ୍କଳଙ୍କ, ନିର୍ମଳ, ଦୁର୍ନୀତିମୁକ୍ତ ଇତ୍ୟାଦି ବହୁ ବିଶେଷଣ ପ୍ରୟୋଗ କରି ଅଜସ୍ର ସାଧୁବାଦ ବର୍ଷଣ କରିଥାନ୍ତି । ଜନସାଧାରଣ କେମିତି କଣ ଭାବନ୍ତି ଯେ, ପୁରସ୍କାର-ବିଜେତା ହେଉଛି ଶାସକଦଳର ଏକ ଦୁର୍ନୀତି-ପରାୟଣ ବ୍ୟକ୍ତି ଓ ପୁରସ୍କାର-ବର୍ଜନକାରୀ ହେଉଛି ବିରୋଧୀ ଦଳର ଜଣେ କର୍ମୀ-ଖାଣ୍ଟି ସୁନା, ଅନ୍ୟାୟ ଓ ଅତ୍ୟାଚାରର ବହୁ ଊର୍ଦ୍ଧ୍ୱରେ !

ଅବଶ୍ୟ ଏହାର ବ୍ୟତିକ୍ରମ ଘଟି ବିସ୍ଫୋରକ ପରିସ୍ଥିତି ମଧ୍ୟ ସୃଷ୍ଟି ହୋଇଥାଏ । ବେଳେବେଳେ ପୁରସ୍କାର ଗ୍ରହଣକୁ କେନ୍ଦ୍ର କରି ସରକାର ଓ ପୁରସ୍କାର ବିଜୟୀ ମଧ୍ୟରେ ମନୋମାଳିନ୍ୟର ସୂତ୍ରପାତ ହୁଏ, ଯାହାକି କୌଣସି ଏକ ସ୍ତରରେ ଉତ୍କଟ ରୂପ ନେଇଥାଏ । ୧୯୩୫ ମସିହାରେ ନୋବେଲ ଶାନ୍ତି ପୁରସ୍କାର ପାଇଁ ଯେତେବେଳେ ଜର୍ମାନୀର ବିଶିଷ୍ଟ ଶାନ୍ତିକାମୀ ନେତା କାର୍ଲ ଓସିଝସ୍କିଙ୍କୁ ମନୋନୀତ କରାଗଲା, ସେତେବେଳେ ତାଙ୍କ ଉପରେ ତତ୍କାଳୀନ ନାଜି ସରକାର ଦ୍ୱାରା ଅକଥନୀୟ ଅତ୍ୟାଚାର କରାଗଲା । ଜର୍ମାନୀର ଶାସକ ହିଟଲାର୍ ଓସିଝସ୍କିଙ୍କୁ କନ୍‌ସେନ୍‌ଟ୍ରେସନ୍ କ୍ୟାମ୍ପରେ ବନ୍ଦୀ ରଖି ନୋବେଲ ଶାନ୍ତି ପୁରସ୍କାର ଗ୍ରହଣ ନ କରିବା ପାଇଁ ଅମାନୁଷିକ ଉପାୟରେ ବହୁ ଚାପ ପକାଉଥାନ୍ତି । ତଥାପି ସେ ପୁରସ୍କାର ଗ୍ରହଣ କରିବାକୁ ଜିଦ୍ ଧରିଲେ । ଅନ୍ୟ କୌଣସି ଉପାୟ ନ ପାଇ ହିଟଲରଙ୍କ ମୁଖ୍ୟ ସହଯୋଗୀ ଗୋରିଂ ଘୋଷଣା କଲେ ଯେ, ଏଣିକି କୌଣସି ଜର୍ମାନ୍ ନାଗରିକ ନୋବେଲ୍ ପୁରସ୍କାର ଗ୍ରହଣ କରି ପାରିବ ନାହିଁ । ସେ ଯାହା ହେଉ, ନାଜି ସରକାରର ଅତ୍ୟାଚାରଜନିତ ବିଷମୟ ପରିଣତି ଭାବେ ଓସିଝସ୍କି ୧୯୩୮ ସାଲ ମେ ମାସରେ ଶେଷ ନିଃଶ୍ୱାସ ତ୍ୟାଗ କରିବାକୁ ପଡ଼ିଥିଲା ।

ଅତ୍ୟନ୍ତ ଦୁର୍ଭାଗ୍ୟର ବିଷୟ ହେଉଛି ଯେ, ଏହି ଦୁଃଖଦ ଘଟଣାର ବହୁ ବର୍ଷ ଯାଏଁ ନୋବେଲ ଶାନ୍ତି ପୁରସ୍କାର କାହାରିକୁ ଦିଆଯାଇ ନଥିଲା—ପୁଣି ୧୯୪୪ ମସିହାରେ ଯେତେବେଳେ ଦିଆଗଲା, ତାହା କୌଣସି ବ୍ୟକ୍ତିଙ୍କୁ ନୁହେଁ; ଜେନେଭାସ୍ଥିତ ରେଡ୍‌କ୍ରସ୍ ଅନୁଷ୍ଠାନକୁ ଦିଆଯାଇଥିଲା । ବୋଧହୁଏ, ପୁରସ୍କାର ପ୍ରଦାନ ସଂପର୍କରେ ବାଦବିସମ୍ବାଦ ଏଡାଇବା ପାଇଁ ବ୍ୟକ୍ତି ପରିବର୍ତ୍ତେ ଅନୁଷ୍ଠାନକୁ ବାଛିବା ଏକ ବିକଳ୍ପ ଉପାୟ ।

ରୁଷିଆର ବିଶିଷ୍ଟ ବୈଜ୍ଞାନିକ ଆନ୍ଦ୍ରେ ସାଖାରୋଭଙ୍କୁ ନୋବେଲ ଶାନ୍ତି ପୁରସ୍କାର ଦିଆଯିବା ଘଟଣା ମଧ୍ୟ ସେତେବେଳେ ତୁମୁଳ ଆଲୋଡ଼ନ ସୃଷ୍ଟି କରିଥିଲା । ତେଣୁ ଗଣ୍ଡଗୋଳିଆ ପରିସ୍ଥିତିରୁ ରକ୍ଷା ପାଇବା ପାଇଁ ଜୀବିତ ବ୍ୟକ୍ତିକୁ ପୁରସ୍କାର ନଦେଇ

ମରଣୋତ୍ତର ପୁରସ୍କାର ପ୍ରଦାନ ପାଇଁ ନିଷ୍ପତ୍ତି ନେବା କ୍ରମେ କ୍ରମେ ଅଧିକ ସୁବିଧାଜନକ ଓ ନିରାପଦ ପନ୍ଥା ହେବ ?

ବିଭିନ୍ନ ଦୃଷ୍ଟାନ୍ତ ଅନୁଧ୍ୟାନ କରି ଆମେ ହୃଦୟଙ୍ଗମ କରୁଛୁ ଯେ, କେବଳ ପୁରସ୍କାର ପ୍ରତ୍ୟାଖ୍ୟାନ ଦ୍ୱାରା ହଇଚଇ, ହୋହଲ୍ଲା ସୃଷ୍ଟି ହୋଇ ନଥାଏ, ପୁରସ୍କାର ଗ୍ରହଣ କରିବା ପାଇଁ ଜିଦ୍ ଧରିଲେ ମଧ୍ୟ ପରିସ୍ଥିତି ଅନୁଯାୟୀ ଆହୁରି ଅଧିକ ହଲଚଲ ତୁମ୍ଭି ତୋଫାନ ଦୃଷ୍ଟିଗୋଚର ହୁଏ । ମୋଟାମୋଟି ଭାବେ କହିବାକୁ ଗଲେ ଏହା ସତ ଯେ, ସମସ୍ତେ ପୁରସ୍କାର—ବ୍ୟବସ୍ଥାକୁ ଧରି ଆତଯାତ । ପୁରସ୍କାର ବ୍ୟବସ୍ଥା ଯଦି ଉଚ୍ଛେଦ କରାଯିବ, ତେବେ କେବଳ ଗ୍ରହଣକାରୀମାନେ ଲୋପ ପାଇଯିବ ନାହିଁ; ବର୍ଜନକାରୀମାନେ ମଧ୍ୟ ଲୋପ ପାଇଯିବେ । ତେଣୁ ଉଭୟ ପକ୍ଷର ଲୋକେ ଆନ୍ତରିକ ଭାବେ ଚାହାନ୍ତି ଯେ, ପୁରସ୍କାର-ବନ୍ଦୋବସ୍ତ, ପଦବୀ ପ୍ରଦାନ ପ୍ରଥା ଚାଲୁ ରହୁ । ଏହା ଅଛି ବୋଲି ତ ଶ୍ରୀ ଶରତ କୁମାର ମହାନ୍ତି ଅଭିମାନବଶତଃ ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ଓଡ଼ିଆ ସାହିତ୍ୟକୁ ନିର୍ମଳ ରଖିବା ଉଦ୍ଦେଶ୍ୟ ନେଇ ସାରଳା ପୁରସ୍କାରକୁ ଅସ୍ତ୍ରଭାବେ ବ୍ୟବହାର କରିପାରିଲେ । ବିଭିନ୍ନ ବାଧାବିଘ୍ନ ତଥା ସାମୟିକ ପରାଭବ ସତ୍ତ୍ୱେ ଉପାଧି-ଉଚ୍ଛେଦ ହୋଇ ପାରିବ ନାହିଁ, ତାହା ଇତିହାସ ପୃଷ୍ଠାରୁ ସୁସ୍ପଷ୍ଟ । ୧୯୭୭ ସାଲରେ ଜନତା-ସରକାର ଗଣତନ୍ତ୍ର ଦିବସରେ ଦିଆଯାଉଥିବା ଭାରତ ରତ୍ନ, ପଦ୍ମଭୂଷଣ, ପଦ୍ମଶ୍ରୀ ପଦବୀମାନ ଉଠାଇ ଦେଇଥିଲେ ସୁଦ୍ଧା ୧୯୮୦ ସାଲରେ କଂଗ୍ରେସ ସରକାର ତା'ର ପୁନଃ ପ୍ରବର୍ତ୍ତନ କରିବା ତାତ୍ପର୍ଯ୍ୟପୂର୍ଣ୍ଣ ।

ବର୍ତ୍ତମାନ ଯାଏଁ ଆମେ କେବଳ ପୁରସ୍କାର ଗ୍ରହୀତାମାନଙ୍କ ବିଷୟରେ ବିଚାର କଲେ । ଏଠାରେ ମନେ ରଖିବାକୁ ପଡ଼ିବ ଯେ କେବଳ ସେମାନଙ୍କର ରୀତିନୀତି, ମାନ ଅଭିମାନ ଓ ମତିଗତି ସଂପର୍କରେ ବିଶ୍ଳେଷଣ କରିଦେଲେ ପ୍ରକୃତ କାମଟି ସଂପୂର୍ଣ୍ଣ ହୋଇଯିବ ନାହିଁ; କାରଣ ପୁରସ୍କାର-ଗ୍ରହୀତା ଯେମିତି ମୁଖ୍ୟ; ପୁରସ୍କାର ସୃଷ୍ଟି କରୁଥିବା ବ୍ୟକ୍ତିମାନେ ମଧ୍ୟ ସେମିତି ମୁଖ୍ୟ । ପୁରସ୍କାର ଦାନ କରିବା ପାଇଁ ସେମାନେ ମନସ୍ଥ କରିବା ଯୋଗୁଁ ହିଁ ଏହି ବ୍ୟବସ୍ଥା ସୃଷ୍ଟି ହୋଇ ପାରିଛି । ତେଣୁ ଗ୍ରହୀତାମାନଙ୍କ ସମ୍ବନ୍ଧରେ ଆଲୋଚନା ଯଦି ମହତ୍ତ୍ୱପୂର୍ଣ୍ଣ, ଦାତାମାନଙ୍କ ସଂପର୍କରେ ଗବେଷଣା ତା'ଠାରୁ କମ୍ ଉପାଦେୟ ହୋଇ ନପାରେ !

ପ୍ରଶ୍ନ ଉଠୁଛି ଯେ, ପୁରସ୍କାର ପରି ଏକ ବିବାଦୀୟ ବିଷୟ ପାଇଁ ଦାତାମାନେ କାହିଁକି ନିଜ କଷ୍ଟାର୍ଜିତ ଅଜସ୍ର ଅର୍ଥ ଅପବ୍ୟୟ କରନ୍ତି ? ଏହି ବାବଦରେ ଖର୍ଚ୍ଚ କରିବାବେଳେ ସେମାନେ କୌଣସି ମାନସିକ ଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇ ନାହାନ୍ତି ? ସେମାନଙ୍କ ବ୍ୟକ୍ତିଗତ କିମ୍ୱା ସାମାଜିକ ଜୀବନରେ ଏମିତି କିଛି ଘଟଣା ଘଟିଥାଏ କି, ଯାହାଦ୍ୱାରା ସେମାନଙ୍କର ଇଚ୍ଛା ଥାଉ ବା ନଥାଉ, ବାଧ ହୋଇ ପୁରସ୍କାର ଦେବା ପାଇଁ ସଂସ୍ଥା ଗଠନ କରିଥାନ୍ତି ? ଏହି

ପ୍ରସଙ୍ଗରେ ଆମେ ପୁରସ୍କାରଦାତାମାନଙ୍କର ମଉଡ଼ମଣି ମହାମାନ୍ୟ ଆଲଫ୍ରେଡ଼ ନୋବେଲଙ୍କ ସହିତ ଚିଠି ମାଧ୍ୟମରେ ଅଂତରଂଗ ସଂପର୍କ ସ୍ଥାପନ କରିବା ।

''ପ୍ରିୟ ମହାଶୟ !

ଆପଣଙ୍କ ଜୀବନୀ ପଢ଼ିବାର ଆମେ ସୁଯୋଗ ପାଇଛୁ । ନିଜ ଜୀବନରେ ହଁ ଓ ନାହିଁକୁ ଏପରି ବିଚିତ୍ରଭାବେ ଆପଣ ପରିଚାଳନା କରିଛନ୍ତି ଯେ, ପୁରସ୍କାର ଗ୍ରହୀତା ଓ ପୁରସ୍କାର ବର୍ଜନକାରୀ ବିପରୀତ ଧର୍ମୀ ହେଲେ ସୁଦ୍ଧା ପରସ୍ପର ସହିତ ଝଗଡ଼ା କରି ନାହାନ୍ତି ! ବରଂ ଦୁଇଟି ବିପରୀତ ଲିଙ୍ଗୀ ଜୀବ ପରି ପରସ୍ପର ସହିତ ନିବିଡ଼ ଆଲିଙ୍ଗନରେ ଆବଦ୍ଧ । ଏହା ଆମକୁ ଅତି ରହସ୍ୟମୟ ମନେ ହେଉଛି । ଆମେ ଜାଣୁଁ ଯେ ପୁରସ୍କାରର ପ୍ରଭାବ ରହସ୍ୟାଚ୍ଛନ୍ନ । କିନ୍ତୁ ତା'ଠାରୁ ଅଧିକ ରହସ୍ୟପୂର୍ଣ୍ଣ ହେଉଛନ୍ତି ପୁରସ୍କୃତ ବ୍ୟକ୍ତିମାନେ । ତେବେ ସବୁଠାରୁ ଅଧିକ ରହସ୍ୟାବୃତ ହେଉଛନ୍ତି ପୁରସ୍କାର ଦାତାମାନେ । ଏଥିପାଇଁ ଆପଣଙ୍କୁ କେନ୍ଦ୍ରକରି କେତୋଟି ସନ୍ଦେହ ଏଠାରେ ଅବତାରଣା କରୁଛୁଁ ।

ଆପଣ ସାରା ଜୀବନ ଗବେଷଣା କରି ଯେଉଁ ଡିନାମାଇଟ ଉଦ୍‌ଭାବନ କଲେ ତାର ଧ୍ୱଂସକାରୀ କ୍ଷମତା ଅତ୍ୟଧିକ । ତଥାପି ଆପଣ କାହିଁକି ଉଇଲ୍‌ନାମା କରି ଜଣାଇଲେ ଯେ, ପୃଥିବୀରେ ଶାନ୍ତି ସ୍ଥାପନା କରିବାକୁ ଯେଉଁ ବ୍ୟକ୍ତି କିମ୍ବା ଅନୁଷ୍ଠାନ ଉଦ୍ୟମ କରିବ, ତାକୁ ଆପଣ ନୋବେଲ ପୁରସ୍କାରରେ ସମ୍ମାନିତ କରିବେ —ପୁଣି ଏହି ପୁରସ୍କାର ପାଇଁ ମୂଳଧନ ଆସିବ ଧ୍ୱଂସ ସାଧନ କରିଥିବା ଡିନାମାଇଟ୍ ଦ୍ୱାରା ଅର୍ଜିତ ଧନ ରାଶିରୁ ?

ଅବଶ୍ୟ ଏହି ପ୍ରଶ୍ନ ରହସ୍ୟମୂଳକ ହୋଇଥିଲେ ସୁଦ୍ଧା ଆମେ ସେଥିପ୍ରତି ଗୁରୁତ୍ୱ ଆରୋପ କରୁ ନାହୁଁ କାରଣ ଆପଣଙ୍କ ପରି ମିଃ କର୍ଣ୍ଣେଗ୍‌ହେଗ୍‌ଠାରେ ଶାନ୍ତି-ପ୍ରସାଦର ଭିତ୍ତିସ୍ଥାପନ ପାଇଁ ଯେଉଁ ତିନି ଲକ୍ଷ ପାଉଣ୍ଡ ଅର୍ଥ ଦାନ କରିଥିଲେ, ତାହା କମାଣ ଓ ଯୁଦ୍ଧ ସାମଗ୍ରୀ-ଉତ୍ପାଦନ ଦ୍ୱାରା ସେ ଅର୍ଜନ କରିଥିଲେ ।

ତଥାପି ଏହି ପ୍ରଶ୍ନର ଅନ୍ୟ ଏକ ଦିଗ ଆମକୁ ବିଚଳିତ କରୁଛି । ଆପଣ ନିଜେ ପୁରସ୍କାର ଗ୍ରହଣ କରିବା ପାଇଁ ଆଦୌ ଆଗ୍ରହ ପ୍ରକାଶ କରୁ ନଥିଲେ । କେବଳ ଏକ ବ୍ୟତିକ୍ରମଭାବେ ୧୮୬୮ ସାଲରେ ଯେତେବେଳେ ସୁଇଡିସ୍ ଆକାଡେମୀ ଆଫ ସାଇନ୍‌ସ ଆପଣଙ୍କୁ ଡିନାମାଇଟ୍‌ର ଉଦ୍‌ଭାବନ ପାଇଁ ସ୍ୱର୍ଣ୍ଣପଦକ ଦେଲା, ଆପଣ ଗ୍ରହଣ କରିଥିଲେ । ସେ ଯାହାହେଉ, ପୁରସ୍କାର ପଦବୀ ଇତ୍ୟାଦି ପ୍ରତି ନିଜର ଆନ୍ତରିକ ଘୃଣା ଭାବ ଥିବା ସତ୍ତ୍ୱେ ଆପଣ ବହୁ କଷ୍ଟାର୍ଜିତ ଧନ ପୁରସ୍କାର ବାବଦରେ ଦାନ କରିବା ବେଳେ କ'ଣ ପ୍ରକୃତରେ ଖୁସୀ ହୋଇଥିବେ ?

ଆପଣ ଅପ୍ରତ୍ୟାଶିତଭାବେ ୧୦-୧୨-୧୮୯୬ ତାରିଖରେ ମୃତ୍ୟୁବରଣ କଲେ ଏବଂ ସେତେବେଳେ ଆପଣଙ୍କ ଟେବୁଲ୍ ଡ୍ରଏର୍‌ରୁ ଯେଉଁ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଦଲିଲ ଉଦ୍ଧାର

କରାଯାଇଥିଲା, ତନ୍ମଧ୍ୟରୁ ଗୋଟିଏ ଥିଲା ନୂତନ ଯୁଦ୍ଧାସ୍ତ୍ର ପାଇଁ ଏକ ସୁପରିକଳ୍ପିତ ଯୋଜନା ଏବଂ ଅନ୍ୟଟି ହେଉଛି ଆପଣଙ୍କ ଜୀବନର ଅନ୍ତିମ ଇଚ୍ଛାଭାବେ ଶାନ୍ତି ପାଇଁ ଦଲିଲ । ଏଥିରୁ ଅନୁମେୟ ଯେ, ଆପଣଙ୍କ ଶେଷନିଃଶ୍ୱାସ ଯାଏଁ ଆପଣ ସ୍ଥିର କରିପାରି ନଥିଲେ, ଯୁଦ୍ଧ ଏବଂ ଶାନ୍ତି ମଧ୍ୟରେ କେଉଁଟା ଅଧିକ ସ୍ୱାଗତଯୋଗ୍ୟ । ତେଣୁ ନୋବେଲ ଶାନ୍ତି-ପୁରସ୍କାର ସଂପର୍କରେ ଆପଣଙ୍କ ମନରେ କିଛି ସଂଶୟ ଥିଲା କି ?

ଆପଣଙ୍କ ଜୀବନର ଲକ୍ଷ୍ୟ ବିସ୍ତୃତ ଥିଲା । ଆପଣ କେବଳ ଜଣେ ପ୍ରତିଷ୍ଠିତ ବୈଜ୍ଞାନିକ ଓ ଉଦ୍‌ଭାବକ ନଥିଲେ; ଲେଖକ ହେବା ପାଇଁ ମଧ୍ୟ ଆପଣଙ୍କ ମନରେ ଗଭୀର ଇଚ୍ଛା ଥିଲା । ଏଥିପାଇଁ ଆପଣ ଲେଖନୀ ଚାଳନା କରିଥିଲେ । ଫଳସ୍ୱରୂପ, ଜୀବନର ଅନ୍ତିମ ଭାଗରେ ଗୋଟିଏ ନାଟକ ଲେଖିବା ପାଇଁ ଆପଣ ସମର୍ଥ ହୋଇ ପାରିଥିଲେ । କିନ୍ତୁ ଏହି ଲେଖାଟି ଏତେ କଦର୍ଯ୍ୟ ହୋଇଥିଲା ଯେ, କୌଣସି ସଂସ୍ଥା ତାକୁ ମଞ୍ଚସ୍ଥ କିମ୍ବା ପୁସ୍ତକ ଆକାରରେ ପ୍ରକାଶ କରିବାକୁ ସମ୍ମତ ହେଲେ ନାହିଁ । ଏହା ଆପଣଙ୍କ ମନରେ ହୀନମନ୍ୟତା କିମ୍ବା ସାହିତ୍ୟ ପ୍ରତି ବିଦ୍ୱେଷ ଭାବ ଜାଗରିତ ନ କରିଥିବା ଅବଶ୍ୟ ଆଶ୍ଚର୍ଯ୍ୟଜନକ । ସେ ଯାହାହେଉ ଏହି ପ୍ରତିକୂଳ ପୃଷ୍ଠଭୂମିରେ ଆପଣ ସାହିତ୍ୟ ବିଭାଗ ପାଇଁ ନୋବେଲ ପୁରସ୍କାର ପ୍ରଚଳିତ କରାଇଥିବା ଯୋଗୁଁ ଆମ ମନରେ କୌତୂହଳ ଜାତ ହୁଏ ଏବଂ ତା ପଛରେ ଲୁକ୍‌କାୟିତ କାରଣ କିଛି ଥାଇପାରେ ବୋଲି ମଧ୍ୟ ଆଶଙ୍କା ଜାତ କରାଏ ।

ସ୍ୱାର୍ଜିତ ଅଚଳାଚଳ ସଂପତ୍ତି ସତ୍ତ୍ୱେ ଆପଣ ସାରା ଜୀବନ ଅବିବାହିତ ରହିଥିଲେ । ଆପଣଙ୍କ ଚରିତ୍ର ଏତେ ନିର୍ମଳ ଯେ ନାରୀମାନଙ୍କ ସହିତ ଆପଣଙ୍କର ସେମିତି କିଛି ଅବୈଧ ପ୍ରେମ ସଂପର୍କ ନଥିଲା (ବୋଧହୁଏ ସୋଫିହେସଙ୍କ ବ୍ୟତୀତ) । ତେବେ ଆପଣଙ୍କୁ ତେୟାଳିଶି ବର୍ଷ ହୋଇଥିବା ବେଳେ ତେତିଶି ବର୍ଷ ବୟସ୍କା ସୁନ୍ଦରୀ, କର୍ମନିପୁଣା ସୁଟନେରଙ୍କ ସହିତ ସ୍ୱର୍ଗୀୟ ପ୍ରେମସଂପର୍କ ସୂତ୍ରପାତ ହୋଇଥିଲା । ଆପଣ ତାଙ୍କୁ ସେକ୍ରେଟରୀ ଭାବେ ନିଯୁକ୍ତ କରିଥିଲେ ଓ ପ୍ୟାରିସ୍ ନଗରୀରେ ନିଜ ଅଟ୍ଟାଳିକାର ପାର୍ଶ୍ୱରେ ଏକ ସୁରମ୍ୟ ପ୍ରକୋଷ୍ଠ ମଧ୍ୟ ନିର୍ମାଣ କରିଥିଲେ । ଅବସ୍ଥା ଚକ୍ରରେ ସୁଟନେର୍, ଆର୍ଥର ନାମକ ଏକ ଯୁବକକୁ ବିବାହ କରି ଆପଣଙ୍କ ନିକଟରୁ ଦୂରେଇ ଗଲେ । ସେମାନଙ୍କ ବିବାହର ଦଶବର୍ଷ ଯାଏଁ ଆପଣଙ୍କ ସହିତ ସଂପର୍କ ରଖିବା ତ ଦୂରର କଥା; ସାମାନ୍ୟ ଚିଠିପତ୍ରର ଆଦାନ ପ୍ରଦାନ ମଧ୍ୟ ଅତ୍ୟନ୍ତ ସୀମିତ ହୋଇଗଲା । ଇତ୍ୟବସରରେ ସୁଟନେର୍ ବିଶ୍ୱରେ ଯୁଦ୍ଧର ଅବସାନ ଘଟାଇ ଶାନ୍ତି ପ୍ରତିଷ୍ଠା ପାଇଁ ଆପ୍ରାଣ ଚେଷ୍ଟା କରୁଥିଲେ । ସେ ଆପଣଙ୍କୁ ଯେତେବେଳେ ବର୍ଣ୍ଣଠାରେ ଅନୁଷ୍ଠିତ ହେଉଥିବା ଚତୁର୍ଥ ବିଶ୍ୱଶାନ୍ତି କଂଗ୍ରେସର ଅଧିବେଶନକୁ ନିମନ୍ତ୍ରିତ କଲେ, ଆପଣ ଛଦ୍ମବେଶରେ ସେଠାରେ ଯୋଗ ଦେଇଥିଲେ ବୋଲି ଜଣାଯାଏ । ସେ ସେଠାରେ ଆପଣଙ୍କୁ ବିଶ୍ୱରେ ଶାନ୍ତି ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ କରିବାକୁ

ପ୍ରବର୍ତ୍ତାଇଥିଲେ ଏବଂ କୁଆଡ଼େ ସଫଳ ମଧ ହୋଇଥିଲେ । ଆପଣ ମଧ କୃତଜ୍ଞତାବଶତଃ ସ୍ଥିର କରିଥିଲେ ଯେ, ସୁଟ୍ନେର ପ୍ରଥମ ନୋବେଲ ଶାନ୍ତି ପୁରସ୍କାରଟି ପାଇବା ଉଚିତ ହେବ । ଅବଶ୍ୟ ଆପଣ ଅକାଳ ମୃତ୍ୟୁବରଣ କଲେ ଏବଂ ସୁଟ୍ନେର୍ ପ୍ରଥମ ବର୍ଷରେ ଶାନ୍ତି ପୁରସ୍କାର ନପାଇ କିଛି ବର୍ଷ ପରେ ୧୯୦୫ ମସିହାରେ ପାଇଲେ । ଫଳରେ ଆପଣଙ୍କ ଇଚ୍ଛା ଠିକ୍ ସମୟରେ ପୂରଣ ନ ହୋଇଥିଲେ ସୁଦ୍ଧା ବିଳମ୍ବରେ ଯେ ପୂର୍ଣ୍ଣ ହେଲା –ଏଥିରେ ଆପଣଙ୍କର ଅତୃପ୍ତ ଆତ୍ମା କିଛି ପରିମାଣରେ ଶାନ୍ତି ପାଇଥିବ ବୋଲି ଆମେ ଆଶା କରୁଁ ।

କୌଣସି ବଳିଷ୍ଠ ସାମାଜିକ ଚିନ୍ତାଧାରା ଯୋଗୁଁ ହେଉ କିମ୍ବା କ୍ଷୁଦ୍ର ବ୍ୟକ୍ତିଗତ କାରଣରୁ ହେଉ ଆପଣ ଯେ ନୋବେଲ ପୁରସ୍କାର ପ୍ରଚଳନ କଲେ; ତାହା ହେଉଛି ସବୁଠାରୁ ଉଲ୍ଲେଖନୀୟ ଘଟଣା । କିନ୍ତୁ ତାର ପରିଣାମ ଓ ଭବିଷ୍ୟତ କଣ ହେଲା, ସେଥିପ୍ରତି ଦୃଷ୍ଟି ଆପେ ଆପେ ଆକର୍ଷିତ ହୁଏ । ଏଠାରେ ସ୍ୱୀକାର କରିବାକୁ ହେବ ଯେ, ବହୁ ପୁରସ୍କୃତ ବ୍ୟକ୍ତି ତଥା ପ୍ରତିଭା ପୂଜା କରୁଥିବା ଲୋକେ ଏଥିପାଇଁ ଆପଣଙ୍କ ନିକଟରେ କୃତଜ୍ଞ । କିନ୍ତୁ ବେଳେବେଳେ ଏମିତି ଏକ ବ୍ୟତିକ୍ରମ ଘଟିଥାଏ ଯେ, ଏହା ତାର ଏକାକୀତ୍ୱ ଯୋଗୁଁ ପ୍ରଭାତୀ ତାରା ପରି ଖୁବ୍ ଜାଜ୍ୱଲ୍ୟମାନ ଏବଂ ସର୍ବସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିଥାଏ । ଏହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ହେଉଛି ଜର୍ଜ ବର୍ଣ୍ଣଡଶଙ୍କ ଦ୍ୱାରା ପୁରସ୍କାର ବର୍ଜନ ।

ବର୍ଣ୍ଣାଡଶ' ଯେତେବେଳେ ନୋବେଲ ପୁରସ୍କାର ପ୍ରତ୍ୟାଖ୍ୟାନ କଲେ, ବହୁ ବ୍ୟକ୍ତି, ବିଶେଷତଃ କେତେକ ଆମେରିକା-ବାସିନ୍ଦା, ତାଙ୍କୁ ବ୍ୟଙ୍ଗାତ୍ମକ ପ୍ରସ୍ତାବ ଦେଲେ ଯେ, ସେ ଖୁବ୍ ଧନୀ ହୋଇଥିବା ଯୋଗୁଁ କିଛି ଅର୍ଥ ସେମାନଙ୍କୁ ସାହାଯ୍ୟ ଆକାରରେ ଦିଅନ୍ତୁ । ଏହି ପ୍ରକାର ମନ୍ତବ୍ୟ ତାଙ୍କୁ ଅସହ୍ୟବୋଧ ହେଲା ଓ ସେ ଜଣାଇଲେ, ''ମୁଁ ଏକ ଜଟିଳ ମୁଖଭଙ୍ଗୀ ଦେଖାଉଛି; କାରଣ ସର୍ବସାଧାରଣଙ୍କ ଉପକାର କରିବା ପାଇଁ ମୋର ଇଚ୍ଛା ଥିଲେ ସୁଦ୍ଧା କୌଣସି ଧ୍ୱଂସମୁଖୀ ଆମେରିକୀୟଙ୍କୁ ପାଞ୍ଚଶହ ଡଲାର ଅର୍ଥ ସାହାଯ୍ୟ ଦେଇ ରକ୍ଷାରକ୍ଷଣ ନ କରିବାକୁ ମୁଁ ହିଂସ୍ରିକ ଭାବେ ବଦ୍ଧ ପରିକର ।'' ପୁରସ୍କାର-ବର୍ଜନ ସଂପର୍କରେ ସେ ପୁଣି କ୍ଷୋଭର ସହିତ ଜଣାଇଥିଲେ, ''ଆଲଫ୍ରେଡ ନୋବେଲଙ୍କୁ ଡିନାମାଇଟ ଉଦ୍ଭାବନ କରିଥିବା ଯୋଗୁଁ ମୁଁ କ୍ଷମା ଦେଇ ପାରିଛି; ... କିନ୍ତୁ ଜଣେ ନରରାକ୍ଷସ ହିଁ ନୋବେଲ ପୁରସ୍କାର ପ୍ରଥା ପ୍ରଚଳନ କରିବ !''

ସେ ଯାହା ହେଉନା କାହିଁକି, ପୁରସ୍କାର ବର୍ଜନ କରିବା ଯୋଗୁଁ ଏହି ବାବଦରେ ଥିବା ସାତ ହଜାର ଡଲାର ମୁଦ୍ରା ଏକ କିଂଭୂତକିମାକାର ପରିସ୍ଥିତିର ସମ୍ମୁଖୀନ ହେଲା । ଏହି ଅପ୍ରତ୍ୟାଶିତ ଓ ଅସମାହିତ ସମସ୍ୟାରୁ ରକ୍ଷା ପାଇବା ପାଇଁ ବର୍ଣ୍ଣାଡ'ଶ ବାଧ୍ୟ ହୋଇ ପୁରସ୍କାର-ଗ୍ରହୀତା ଭାବେ ଦସ୍ତଖତ କରିଥିଲେ । କିନ୍ତୁ ତତ୍‌କ୍ଷଣାତ ସେ ଏହି ଧନରାଶି ବାରେନ ପାମ୍‌ଷ୍ଟିର୍ଣ୍ଣ'ଙ୍କର ଆଂଗ୍ଲୋସୁଇଡିଶ ଲିଟାରାରି ଆଲାଏନ୍‌ସକୁ ଅର୍ପଣ କରିଥିଲେ ।

ଆମେ ସାଧାରଣ ଲୋକେ ଭାବିଥିଲୁ ଯେ, ହୁଏତ ଆପଣ ଡିନାମାଇଟ ଉଦ୍‌ଭାବନ କରି ପୃଥିବୀର ଧ୍ୱଂସ ସାଧନ କରିଥିବା ଯୋଗୁଁ, ଅନୁତପ୍ତ ହୋଇ ପ୍ରାୟଶ୍ଚିତ୍ତ ଭାବେ ନୋବେଲ ପୁରସ୍କାର ପ୍ରଚଳନ କରିଥିଲେ । କିନ୍ତୁ ବିଜ୍ଞ ବର୍ଣ୍ଣାଡଶ' ଓଲଟା ମତ ଦେଇ କହିଛନ୍ତି ଯେ, ଡିନାମାଇଟଠାରୁ ନୋବେଲ-ପୁରସ୍କାର ଅଧିକ ମାରାତ୍ମକ ! ଏହା ଫଳରେ ଆପଣ ଓ ସୃଷ୍ଟିନେର୍ ମାନବ ସମାଜ ପାଇଁ ଅତୁଳନୀୟ ଦାନ ଭାବେ ଯେଉଁ ନୋବେଲ ପୁରସ୍କାର ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ, ତାର ସ୍ଥିତି ଓ ସମ୍ମାନରେ ଆଞ୍ଚ ଆସିଲା ।

ଭାବିଲେ ଆଶ୍ଚର୍ଯ୍ୟ ଲାଗେ ଯେ, ଏମିତି ବି ବ୍ୟକ୍ତି ଅଛନ୍ତି, ଯେଉଁମାନେ ପୁରସ୍କୃତ ହେବା ପରେ କୃତଜ୍ଞତା ଜଣାଇବା ପରିବର୍ତ୍ତେ ପୁରସ୍କାରଦାତାଙ୍କୁ 'ନରରାକ୍ଷସ' ବୋଲି ଅଭିହିତ କରି ପାରନ୍ତି । ଅବଶ୍ୟ ବର୍ଣ୍ଣାଡ'ଶ 'ନରରାକ୍ଷସ' ବୋଲି କଟୁ ସମ୍ବୋଧନ କରିବା ବେଳେ ଆପଣ ପରଲୋକ ଗମନ କରିଥିଲେ । କିନ୍ତୁ ଯଦି ଆପଣ ଜୀବିତ ଥାଆନ୍ତେ— ତାହେଲେ ପରିସ୍ଥିତି କେଉଁ ରୂପ ଗ୍ରହଣ କରିଥାନ୍ତା; ନୋବେଲ ପୁରସ୍କାର ବ୍ୟବସ୍ଥାକୁ ଆପଣ ବିରକ୍ତି ଓ ଘୃଣାର ସହିତ ପ୍ରତ୍ୟାହାର କରିଥାଆନ୍ତେ ନା ନାହିଁ, ତାହା କିଏ କହିବ ? ଆପଣ ଇହଲୋକରୁ ଚାଲି ଯାଇଥିବା ଯୋଗୁଁ ବୋଧହୁଏ ପରିସ୍ଥିତି ବିଷାକ୍ତ ହେଲା ନାହିଁ । ତେବେ ଏଇ ପ୍ରସଙ୍ଗରେ ମନ୍ତବ୍ୟ ଦେଇ ହେବ ଯେ, ଜଣେ ବ୍ୟକ୍ତି ଯଦି ପୁରସ୍କାର ଦେବାକୁ ଚାହୁଁଛି, ତାହାହେଲେ ସେ ଜୀବିତାବସ୍ଥାରେ ପୁରସ୍କାରଦାତା ନହୋଇ, ଆପଣଙ୍କ ପରି, ଉଇଲନାମା କରିଆରେ, ମରିବା ପରେ ହିଁ ପୁରସ୍କାରଦାତା ହେବା ବାଞ୍ଛନୀୟ । କେବଳ ଏତିକି ନୁହେଁ, ପୁରସ୍କାର ମଧ୍ୟ ଜୀବିତ ଲୋକଙ୍କୁ ନଦେଇ ମୃତ ଲୋକଙ୍କୁ ଦେବା ଯଥାର୍ଥ ହେବ; ନଚେତ ବର୍ଣ୍ଣଡଶ'ଙ୍କ ପରି ବ୍ୟକ୍ତିଠାରୁ କେତେ କଣ କଟୁ ବାଣୀ ଶୁଣିବାକୁ ପଡ଼ିବ । ପୁଣି ପୁରସ୍କାର ମନୋନୟନକାରୀ ବିଚାରକ ମଣ୍ଡଳୀ ମଧ୍ୟ ମୃତ ହେଲେ ଖୁବ୍ ଭଲ ହୋଇ ପାରନ୍ତା ଏବଂ ପୁରସ୍କାର ବ୍ୟବସ୍ଥାର ସମସ୍ତ ଅଙ୍ଗ ପୂରାପୂରି ଗୋଟିଏ ପରଲୋକ-ବ୍ୟାପାରରେ ପରିଣତ ହୋଇ ଯାଇଥାନ୍ତା । ଯଦି ଏହା ବାସ୍ତବ କ୍ଷେତ୍ରରେ ସଂଭବ ହେଉ ନାହିଁ, ତାହାହେଲେ ଆମେ ବିଚାରକମାନଙ୍କୁ ପ୍ରାଣରେ ନ ମାରି ଅନ୍ତତଃ ସେମାନଙ୍କୁ ବିକଳାଙ୍ଗ କରିଦେବୁ ଯେମିତି ''ଆଖି ଥାଉ ଥାଉ ଅନ୍ଧ'' ! ଏମିତି କହିବା ବେଳେ ଆମେ ଅନ୍ଧ ପୁତୁଳି ବନ୍ଧା ଯାଇଥିବା ଅଦାଲତର ସେଇ ନାରୀ ଚିତ୍ରଟିକୁ ମନେ ପକାଉଛୁଁ, ଯିଏକି ନ୍ୟାୟର ମୂର୍ତ୍ତିଭାବେ ତରାଜୁଟିଏ ଧରିଛି !

ଚିଠିର ଉତ୍ତର ଆପଣଙ୍କଠାରୁ କିମ୍ବା ଅନ୍ୟ ଯେକୌଣସି ସୂତ୍ରରୁ ପାଇଲେ ଆମେ ଅବଶ୍ୟ କୃତଜ୍ଞ ହେବୁ ।''



# ଆଜିକାଲିର ପ୍ରେତ ପିଶାଚ

ଏମିତି ଗୋଟିଏ ଜୀବ ବିଷୟରେ କଳ୍ପନା କରନ୍ତୁ, ଯାହାର ହାତ ଗୋଡ଼ ବାଙ୍କବାଙ୍କୁଆ; ପ୍ରକାଣ୍ଡ ଶରୀର- ଖୁବ୍ ଲମ୍ବା ଚଉଡ଼ା; ଆକାର ଆୟତନ କେଉଁ ଦିଗରୁ ନ୍ୟୁନ ନୁହେଁ । ସୂର୍ଯ୍ୟ ବୁଡ଼ି ସଞ୍ଜ ମାଡ଼ି ଆସିବା ବେଳକୁ ଆପଣଙ୍କୁ ଏକୁଟିଆ ଦେଖିଲେ, କେଉଁଆଡୁ ଅଚାନକ ଆପଣଙ୍କ ଆଗରେ ଆସି ଛିଡ଼ା ହୋଇ ଯାଉଛି ଏବଂ ଦାନ୍ତ କଡ଼ମଡ଼ କରି ଆପଣଙ୍କୁ ବେଶ୍ ପ୍ରଚଣ୍ଡ ଆକ୍ରମଣ କରିବାକୁ ତତ୍ପର ହେଉଛି ସତେକି ଆପଣଙ୍କୁ ମୋଡ଼ମୋଡ଼ି କରି ଆପଣଙ୍କ ରକ୍ତ ପିଇଯିବ ହାଃ ହାଃ ଶବ୍ଦର କୋଳାହଳ ମଧ୍ୟରେ; ହୃଦୟ ସେତେବେଳେ ତାର ଆନନ୍ଦରେ ନାଚି ଉଠୁଥିବ ।

ଏଇ ଧରଣର ବର୍ଣ୍ଣନା ଶୁଣିବା ବେଳେ ଆପଣଙ୍କ ମନେ ହେବ— ଏଇ ଜୀବଟି ହୁଏତ ଗୋଟିଏ ରାକ୍ଷସ – ଆଈ ମା ଗପୁଥିବା କାହାଣୀମାନଙ୍କର ଦୁଷ୍ଟ ନାୟକ -କୌଣସି ଏକ ଅସୁର । କିନ୍ତୁ ଆଶ୍ଚର୍ଯ୍ୟ ଲାଗେ – ଆଜିକାଲି ମଧ୍ୟ ଏମିତି ଜୀବ ପରିଦୃଷ୍ଟ ହେବାର ଚାଞ୍ଚଲ୍ୟକର ଖବର ପ୍ରକାଶିତ ହେଉଛି ।

ଏଇ ମର୍ମରେ ଜୁଲାଇ ୧୯୮୫ର ଗୋଟିଏ ଅଜବ ସମ୍ବାଦ ମନେ ପଡ଼ୁଛି । କାକଟପୁର ଅଂଚଳର ଘଟଣା । ଜନୈକ ଗୁଣିଆ ଅଷ୍ଟଧାତୁର ଗୋଟିଏ ତେଉଁରିଆ ତିଆରି କରି କୌଣସି ଏକ ଗରାଖକୁ ପିନ୍ଧିବା ପାଇଁ ଦେଇଥିଲା । ତେଉଁରିଆ ବ୍ୟବହାର କରିବାର ଅଳ୍ପଦିନ ମଧ୍ୟରେ ବ୍ୟବହାରକାରୀର ଦୁଃଖଦ ହାଲଚାଲରୁ ଗୁଣିଆ ଜାଣି ପାରିଲା ଯେ, ତେଉଁରିଆ ତିଆରିରେ ହୁଏତ କିଛି ଗୁରୁତର ତ୍ରୁଟି ରହି ଯାଇଛି ! ତେଣୁ ସେ ତେଉଁରିଆଟିକୁ ପରୀକ୍ଷା କଲା ଓ ନିର୍ଣ୍ଣୟ କଲା ଯେ, ଶାସ୍ତ୍ରାନୁସାରେ ଅଷ୍ଟଧାତୁଗୁଡ଼ିକ ପରସ୍ପରଠାରୁ ଅଲଗା ଅଲଗା ହୋଇ ରହିବା କଥା । କିନ୍ତୁ ସେ ତିଆରି କରିଥିବା ତେଉଁରିଆଟିରେ ଦୁଇଟି ଧାତୁ ମିଶିଯାଇଥିବା ଯୋଗୁଁ ଏମିତି ବିପରୀତ ଫଳ ଦେଉଛି । ଏଇ ଦୋଷ ସୁଧାରିବା ପାଇଁ ସେ ତେଉଁରିଆଟି ମାଗି ନେଇ ଗୋଟିଏ କାରିଗରକୁ ଠିକ୍ ଭାବେ ସଜାଡ଼ିବା ପାଇ ନିର୍ଦ୍ଦେଶ ଦେଲା । ସେତେବେଳେ ସେ କାରିଗରକୁ ସତର୍କ କରାଇ ଦେଲା ଯେ, ତେଉଁରିଆଟି ମନ୍ତ୍ରା ହୋଇ ସାରିଛି । ତେଣୁ କେଉଁ ଉପାୟ ଓ ବିଧିବିଧାନ ଅନୁସାରେ ଧାତୁଗୁଡ଼ିକୁ ଖୋଲି ପୁଣି ସଜାଡ଼ି ଦେଇ ହେବ –ତାହା ତାକୁ ଆରମ୍ଭରୁ ସ୍ଥିର କରିବା ଜରୁରୀ; ନଚେତ୍ ,ଖୋଦ୍

କାରିଗରର ଘୋର ଅନିଷ୍ଟ ଘଟିବା ସମ୍ଭାବନା ରହିଛି । କିନ୍ତୁ କାରିଗରର ଏଇ ସବୁ କଥାରେ ବିଶ୍ୱାସ ନାହିଁ । ସେ ଚଟାପଟ୍ ବିନା ଚିନ୍ତାରେ ଡେଉଁରିଆଟି ଭଙ୍ଗାଭଙ୍ଗି କରି ସଜାଡ଼ି ଦେଲା ଓ ଗୁଣିଆଁକୁ ଦେଇଦେଲା ।

ପରବର୍ତ୍ତୀ ଘଟଣା । ଡେଉଁରିଆ ଭାଙ୍ଗିବା ଦିନ ହିଁ କୌଣସି ଏକ ଦୁର୍ଘଟଣାର ସମ୍ମୁଖୀନ ହୋଇ ଉକ୍ତ କାରିଗରର ବାମ-ହାତର ଆଙ୍ଗୁଠି-ହାଡ଼ ଭାଙ୍ଗିଗଲା । ଯେଉଁଥିପାଇଁ ତାକୁ ଡାକ୍ତରଖାନାରେ ଚିକିତ୍ସାଧୀନ ହେବାକୁ ପଡ଼ିଲା । କିଛି ଦିନ ପରେ ବଜାର ସଉଦା ସାରି ଘରକୁ ଫେରିବା ବାଟରେ ନଦୀ ପାର ହେଉଥିବା ବେଳେ, ସେଇ ସନ୍ଧ୍ୟାରେ ହଠାତ୍ ତାକୁ ଆକାଶଉଁଚା ଗୋଟିଏ ବିକିଟ୍ର ଜୀବ ରାସ୍ତା ଓଗାଳିଲା । ପ୍ରକାଶ ଥାଉକି, ଏଇ ଜୀବର ଶାରୀରିକ ଗଠନ ଓ ହାବଭାବ ଉପରବର୍ଣ୍ଣିତ ପ୍ରାଣୀଟି ସହ ସମାନ । ଏଇ ଭୟାନକ ପରିସ୍ଥିତିରେ କାରିଗରର ମୁଣ୍ଡ ଅକାମି ହୋଇଗଲା । କୌଣସି ନିକଟସ୍ଥ ଗାଁରେ ପହଞ୍ଚିଲା ଓ ସେଠାରେ ରାତି କଟାଇ ତା ପରଦିନ ଘରକୁ ଫେରିଲା । କିନ୍ତୁ ଅତ୍ୟନ୍ତ ଅସ୍ୱାଭାବିକ ଅବସ୍ଥାରେ । ତାର ମୁଣ୍ଡ ଚକ୍କର କାଟୁଥାଏ । ତାର ମନେ ହେଉଥାଏ —କାହାରି ଗୋଟିଏ ଅଜଣା ବାଲୁଆ ହାତତାକୁ ଭିଡ଼ି ଧରିବା ପାଇଁ ତାର ଚାରିପଟେ ଘୂରି ବୁଲୁଛି । ସେତେବେଳେ ସେ ଅନୁଭବ କଲା ଯେ, ମନ୍ତ୍ରା ଯାଇଥିବା ଡେଉଁରିଆ ପ୍ରତି ବେଖାତିର ଭାବ ପୂର୍ବେ ପ୍ରଦର୍ଶନ କରି ଭାଙ୍ଗି ଦେଇଥିବା ଯୋଗୁଁ ସେ ଏମିତି ଅଯଥାରେ ଦୁଃଖ ଯନ୍ତ୍ରଣାର ସମସ୍ୟା ଭିତରେ ପଡ଼ିଯାଇଛି ।ଶେଷରେ ଗୁଣିଆ ଡକାଯାଇ ଝଡ଼ା ଫୁଙ୍କା କରିବା ପରେ ସେ ସୁସ୍ଥ ସବଳ ହୋଇ ପାରିଲା । ଏଇ ଘଟଣା ପରେ ସେ ପ୍ରତିଜ୍ଞା କଲା ଯେ, ସେ ଏଣିକି ଆଉ ଏମିତି ଦୁଃସାହସିକ କର୍ମରେ ହାତ ପୂରାଇବ ନାହିଁ ।

କାକଟପ୍ର-ଘଟଣା ପରି ଅନେକ କିଛି ଅସ୍ୱାଭାବିକତା ଆମ କାନରେ ବେଳେ ପଡ଼ିଥାଏ । ଏଇ ସବୁ ସତ ନାଁ ମନଗଢ଼ା-ଆମେ ସ୍ଥିର ନିଶ୍ଚିତ ନୋହୁଁ । ପ୍ରକୃତରେ ଏହା ବିଶ୍ୱାସଯୋଗ୍ୟ ବୋଲି ଆମେ ଦୃଢ ଦାବୀ କରିବା ପାଇଁ ସାହସ କରୁ ନାହୁଁ । ଏଇ ବିଜ୍ଞାନ-ଯୁଗରେ ଏହା ସମସ୍ତଙ୍କ ଗ୍ରହଣୀୟ ହେବ ବୋଲି ଆମେ ଘୋଷଣା କରିବା ସମୀଚୀନ ନୁହେଁ । ବାସ୍ତବିକ, ଘଟଣାଟି ସେତେବେଳେ ସତ ବୋଲି ଆମେ ମାନି ନେବୁ, ଯଦି ତାହାର କିଛି ନିର୍ଦ୍ଦିଷ୍ଟ ପ୍ରମାଣ ଆମ ଆଗରେ ପେଶ୍ କରାଯାଇ ପାରିବ । ଉଦାହରଣ ସ୍ୱରୂପ:- ଯଦି ସେଇ ପିଶାଚଟିର ଗୋଟିଏ ଫୋଟେ କୌଶଳ କ୍ରମେ ନିଆଯାଇ ପାରିଥାନ୍ତା, ହୁଏତ କେହି କେହି ମତ ଦେଇ ପାରନ୍ତି ଯେ, ଏତାଦୃଶ ଫୋଟୋ ଉତ୍ତୋଳନ କରିବା କସ୍ମିନ୍ କାଳେ ସମ୍ଭବ ନୁହେଁ । କିନ୍ତୁ ଫେବୃଆରୀ ୧୯୯୯ରେ କେନ୍ଦ୍ରୀୟ ଇଂଲଣ୍ଡର ବେଲ୍‌ଗ୍ରେଡ୍‌ସ୍ଥିତ ହଲ୍-ମ୍ୟୁଜିଅମ୍‌ର କର୍ମ-କର୍ତ୍ତାମାନେ ଏହା ସମ୍ଭବ ବୋଲି ପ୍ରମାଣ କରି ପାରିଛନ୍ତି ।

ଇଂଲଣ୍ଡର ମଧ୍ୟଭାଗରେ ଥିବା ଲିସେଷ୍ଟର ଜନ-ବସତିରେ ଜନ୍ ଏଲିସ୍ ନାମଧେୟ ଜଣେ ବିଶିଷ୍ଟ ଶିଳ୍ପପତି ଅଷ୍ଟାଦଶ ଶତାବ୍ଦୀରେ ବସବାସ କରୁଥିଲେ ।ଏଲିସ୍‌ଙ୍କ ସହିତ ତାଙ୍କ

ଭଉଣୀ କାର୍ଲୋଟ ସେଇ ବାସ ଭବନରେ ରହୁଥିଲେ । କୌଣସି ରହସ୍ୟଜନକ କାରଣରୁ ଶ୍ରୀମତୀ କାର୍ଲୋଟଙ୍କ ମୃତ୍ୟୁ ସେଠାରେ ହୋଇଥିଲା । ସେଇଦିନ ଠାରୁ ସେଠାରେ କୁଆଡ଼େ କାର୍ଲୋଟଙ୍କ ପ୍ରେତାତ୍ମା ସେଇ ଘରେ ଅସ୍ଥିର ଭାବେ ଚଲାବୁଲା କରୁଥିବା ବିଷୟ ହଲ୍ ମ୍ୟୁଜିୟମ୍‌ର କେତେକ କର୍ମଚାରୀଙ୍କ କାନରେ ପଡ଼ିଲା । ସେମାନେ ଏହାର ସତ୍ୟତା ପରୀକ୍ଷା କରିବା ପାଇଁ ଆଗ୍ରହୀ ହେଲେ । ଏଇ ଉଦ୍ଦେଶ୍ୟରେ ୧୯୯୮ ସାଲରେ ଖ୍ରୀଷ୍ଟମାସ ବେଳେ ସେମାନେ କ୍ୟାମେରା ଧରି ସେଠାରେ ପସ୍ତୁତ ହୋଇ ରହିଲେ । ଘରର ସବୁ କବାଟ ଓ ଅନ୍ୟ ରାସ୍ତା ବନ୍ଦ କରା ଯାଇଥିବା ସତ୍ତ୍ୱେ ଥରେ ଅଚାନକ ଗଭୀର ରାତିରେ ଧଳା ଲୁଗା ପିନ୍ଧିଥିବା ଛଅ ଫୁଟ ଉଚ୍ଚର ଗୋଟିଏ ନାରୀର ପ୍ରତିରୂପ ଦୃଷ୍ଟି ଗୋଚର ହେଲା । ଏଇ ପ୍ରତିମୂର୍ତ୍ତିଟି ଯେ କାର୍ଲୋଟଙ୍କ ପ୍ରେତାତ୍ମା-ଏଥିରେ ଫୋଟୋ ଉତ୍ତୋଳନକାରୀମାନଙ୍କ ମନରେ କୌଣସି ସନ୍ଦେହ ନ ଥିଲା ସେମାନେ ତୁରନ୍ତ ତାର ଆଲୋକଚିତ୍ର ଗ୍ରହଣ କରିବାରେ ସଫଳ ହେଲେ । ଭୂତର ଯାତାୟାତ ପାଇଁ ଯେ, କୌଣସି ପ୍ରକାର ପ୍ରବେଶ ବା ପ୍ରସ୍ଥାନ ପଥ ଆବଶ୍ୟକ ନୁହେଁ ଏବଂ ଏହା ହଠାତ୍ ଶୂନ୍ୟରୁ ଆବିର୍ଭୂତ ହୋଇ କ୍ଷଣିକ ମଧ୍ୟରେ ଶୂନ୍ୟରେ ଅନ୍ତର୍ହିତ ହୋଇଯାଇପାରେ—ଏଇ ବିଷୟଟି ହଲ୍ ମ୍ୟୁଜିୟମ୍‌ର ମ୍ୟାନେଜିଂ କ୍ୟୁରେଟ୍‌ର ଷ୍ଟୁଆର୍ଟ ୱାରବର୍ଟନ ସେତେବେଳେ ପ୍ରକାଶ କରିଥିଲେ ।

ହଲ ମ୍ୟୁଜିୟମ୍‌ର କର୍ତ୍ତୃପକ୍ଷଙ୍କ ଦ୍ୱାରା ଭୂତର ଫୋଟୋ ବହୁ ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ । ବିଶେଷତଃ ଭୂତ-ଫୋଟୋରୁ ଯେ ଲିଙ୍ଗ ନିର୍ଣ୍ଣୟ କରିବା ସମ୍ଭବପର ହେଉଛି-ତାହା ସବୁଠାରୁ ଉଲ୍ଲେଖନୀୟ । ଭୂତମାନଙ୍କ ମଧ୍ୟରେ ଯେ ଅଣ୍ଡିରା ଓ ମାଈ ରହିପାରନ୍ତି-ତାହାର ସୁଦୂରପ୍ରସାରୀ ପରିଣାମ ରହିଛି । ପ୍ରସଙ୍ଗ କ୍ରମେ ଜାନୁଆରୀ ୧୯୯୯ର ଗୋଟିଏ ବିବାଦୀୟ ଘଟଣା ଏଠାରେ ଉପସ୍ଥାପନ କରାଯାଇପାରେ ।

ଆଣ୍ଡ୍ରୁ ତାଙ୍କର ୩୬ ବର୍ଷ ବୟସ୍କା ପତ୍ନୀ ସ୍ମିଥ୍‌ଙ୍କ ସହିତ ଇଂଲଣ୍ଡର ଉତ୍ତର ପଶ୍ଚିମାଞ୍ଚଳ—ସ୍ଥିତ ଅପର୍ ମେଫିଲ୍‌ଡ୍‌ଠାରେ କଟେଜ୍‌ଟିଏ ଭଡ଼ାରେ ନେଇ ରହନ୍ତି । ସେମାନେ ଘର-ମାଲିକକୁ ଘର-ଭଡ଼ା ନିୟମିତ ପୈଠ ନ କରିବାରୁ ୩୦୦୦ପାଉଣ୍ଡ ଯାଏଁ ଧନରାଶି ବକେୟା ରହିଲା । ଫଳରେ ଘର ମାଲିକ ଉକ୍ତ ଦମ୍ପତି ବିରୁଦ୍ଧରେ ଘରଭଡ଼ା ଅସୁଲ କରିବା ପାଇଁ ଗୋଟିଏ ମକଦ୍ଦମା ଦାଏର କଲେ । ଏହାର ଜବାବରେ ଭଡ଼ାଟିଆ ସ୍ୱାମୀ-ସ୍ତ୍ରୀ ଅଦାଲତରେ ଜବାବ୍ ପେଶ୍ କଲେ ଯେ, ସେ ଘରେ ଗୋଟିଏ ଭୂତ ରହୁଛି । ଭୂତଟି ନାନା ପ୍ରକାର ଉପଦ୍ରବ କରି ସେମାନଙ୍କ ହଇରାଣ ହରକତ କରୁଛି । ଏଇ ଭୂତଟିର ରୂପ ଅସ୍ପଷ୍ଟ ହେଲେ ମଧ୍ୟ, ଏହାର ଅସ୍ତିତ୍ୱ କେହି ଅସ୍ୱୀକାର କରି ପାରିବେ ନାହିଁ ।

ସେ କୁଆଡ଼େ ସେଇ ଘରେ ଏପଟ ସେପଟ ହୋଇ ଚଲାବୁଲା କରେ ଏବଂ ତାର ପଦଚାଳନା ବେଳେ ମଧ୍ୟ ମୃଦୁ ଶବ୍ଦ ସୃଷ୍ଟି ହୁଏ । ଏକଦା ଶ୍ରୀମତୀ ଜୋସି ସ୍ମିଥ ଶୋଇଥିବାବେଳେ ଭୂତଟି ତାଙ୍କୁ ଛୁଇଁବା ଯୋଗୁଁ ଶୀତଳ ସ୍ପର୍ଶରେ ତାଙ୍କ ନିଦ ହଠାତ

ଭାଙ୍ଗିଗଲା ଓ ସେ ପାଟି କରି ଭୂତକୁ ' ନାଁ ନାଁ' ବୋଲି କହିଲେ । ଭୂତଟି ତତ୍‌କ୍ଷଣାତ୍ ସେତେବେଳେ ଅଦୃଶ୍ୟ ହୋଇଗଲା । କିନ୍ତୁ ଅଳ୍ପ ସମୟ ଭିତରେ ପୁଣି ଫେରି ଆସି ଶ୍ରୀମତୀ ଜୋସି ସ୍ମିଥ୍‌ଙ୍କ ରାତ୍ରୀକାଳୀନ ପୋଷାକ ଖୋଲି ଜବରଦସ୍ତ ଧର୍ଷଣ କଲା । ଏଇ ଯୌନକ୍ରିୟାରେ ଶ୍ରୀମତୀ ସ୍ମିଥ୍ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ । ସେତେବେଳେ ଭୂତଟି ପ୍ରତି ତାଙ୍କ ମନରେ ଅତିଶୟ ଘୃଣା ଓ କ୍ରୋଧ ଭାବ ଜାତ ହେଉଥାଏ । ଘରମାଲିକ ଭଡ଼ା ନେବା ସମୟରେ ଏଇ ଭୂତ- ଭୟ ସଂପର୍କରେ ପୂର୍ବସୂଚନା ଦେଇ ନ ଥିବା ଯୋଗୁଁ ଘର-ମାଲିକ କ୍ଷତିପୂରଣ ଦେବା ଆବଶ୍ୟକ ବୋଲି କୋର୍ଟରେ ଭଡ଼ାଟିଆ ସ୍ମିଥ୍ ଯୁକ୍ତି ବାଢ଼ିଛନ୍ତି । ପୁଣି ତାଙ୍କ ଦାବୀକୁ ଯଥାର୍ଥ ବୋଲି ସିଦ୍ଧ କରିବାକୁ ସେ ଭୂତ-ପ୍ରେତ ବିଶେଷଜ୍ଞ ଜଣେ ଧର୍ମଯାଜକଙ୍କୁ ନିଜ ସପକ୍ଷରେ ସାକ୍ଷୀ ଭାବେ ଅଦାଲତରେ ପେଶ୍ ହେବାପାଇଁ ଆବେଦନ କରିଛନ୍ତି ।

ଭୂତମାନଙ୍କର ଜନନେନ୍ଦ୍ରିୟ ଅଛି, ସେମାନେ କାମୁକ ହୋଇ ପାରନ୍ତି ଏବଂ ନିଜ ଯୌନ ପିପାସା ମେଣ୍ଟାଇବାକୁ ଧର୍ଷଣ କରିବା ସକାଶେ ଆଗେଇ ଆସନ୍ତି ବୋଲି ଆମେ ଜାଣିବା ପରେ ଯେତେ ବିଚଳିତ ନୋହୁଁ, ତାହା ଅପେକ୍ଷା ଆମେ ଅଧିକ ଉଦ୍‌ବିଗ୍ନ ଏଥିପାଇଁ ଯେ, ସେମାନେ କେବଳ ଅଶରୀରୀଙ୍କ ସହିତ ଯୌନ-ସମ୍ଭୋଗ କରିବାକୁ ଆଗ୍ରହୀ ନୁହନ୍ତି; ଆମ ପରି ଜୀବିତ ରକ୍ତ-ମାଂସଧାରୀ ମଣିଷମାନଙ୍କ ପ୍ରତି ମଧ ସେମାନଙ୍କ ଯୌନ-ପିପାସୁ, ଲୋଲୁପ ଦୃଷ୍ଟି ପଡୁଛି । ଏହା ଯଦି ସତ ହୁଏ, ତାହାହେଲେ ଆମର ସମସ୍ତ ପ୍ରଚଳିତ ଆଇନ କାନୁନ ଅଚଳ ହୋଇଯିବ । ପୁଣି ଏହି ଧର୍ଷଣ ଯୋଗୁଁ ଯଦି ନାରୀମାନେ ଦୈବାତ୍ ଗର୍ଭଧାରଣ କରିବା ପରି ବିପତ୍ତି ଦେଖା ଦେବ, ତାହାହେଲେ ଆମ ଜୀବନ ଯାପନ ପ୍ରଣାଳୀରେ ନାନା ପ୍ରକାର ଅଦ୍‌ଭୁତ ଓ ଉଦ୍‌ବେଗଜନକ ବିଭ୍ରାଟର ସୂତ୍ରପାତ ହେବ । ଅବଶ୍ୟ ଉପରୋକ୍ତ ଦୃଷ୍ଟାନ୍ତରେ ଘର ମାଲିକଙ୍କ ଓକିଲ ପ୍ରତିବାଦ ସ୍ୱରୂପ ଦର୍ଶାଇ ଥିଲେ ଯେ, ଭଡ଼ାଟିଆ ଶ୍ରୀମତୀ ସ୍ମିଥ୍ ଘରଭଡ଼ା ନ ଦେବା ପାଇଁ ଭୂତ-ଭେଳିକି ସୃଷ୍ଟି କରିଛନ୍ତି ଏବଂ ଏହା ତାଙ୍କ ଚଞ୍ଚକତାପୂର୍ଣ୍ଣ ଠକାମିର ଗୋଟିଏ ନଗ୍ନ ନମୁନା ମାତ୍ର ।

ଅଶରୀରୀ ଭୂତ ସମ୍ବନ୍ଧରେ ଏମିତି ନାନାପ୍ରକାର ବାଦବିସମ୍ବାଦମୂଳକ ପ୍ରତିକ୍ରିୟାମାନ ପ୍ରକାଶ ପାଇ ଆସୁଛି । ଭୂତ ପ୍ରେତକୁ ଆଧାର କରି ବହୁ କାହାଣୀ, ଟିଭି ସିରିଅଲ୍ ଗଢ଼ା ଯାଇଛି । ତେବେ ଅନେକ ବିଶିଷ୍ଟ ବ୍ୟକ୍ତି ଅଶରୀରୀର ଅସ୍ତିତ୍ୱକୁ ସ୍ୱୀକାର କରି ଦୃଢ଼ ମତ ବ୍ୟକ୍ତ କରିଛନ୍ତି । ଏଇ ପ୍ରସଙ୍ଗରେ ପ୍ରତିଷ୍ଠିତ ଲେଖିକା ଶ୍ରୀମତୀ ଗୀତା ହୋତାଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ ।

''ଏପରି (ଭୂତ ପ୍ରେତ ସଂପର୍କୀୟ) ଅନୁଭବ ଯେ କେବଳ ଗୋଟିଏ ଦୁଇଟି ଜାଗାରେ ହେଉଛି, ତାହା ନୁହେଁ । ଅଲୌକିକ ଘଟଣା ଘଟିବା ପଛରେ ଯେପରି କୌଣସି ପ୍ରମାଣ ନ

ଥାଏ, ସେପରି ଏସବୁ ଭୂତ ପ୍ରେତଙ୍କ କଥା ବିଜ୍ଞାନାଗାରରେ ପରୀକ୍ଷାର ବସ୍ତୁ ନୁହେଁ । କିନ୍ତୁ ବାସ୍ତବ । ଅଶରୀରୀ ଆତ୍ମାମାନେ କେଉଁଠି କିପରି ପ୍ରତିକ୍ରିୟା ପ୍ରକାଶ କରନ୍ତି, ତାହା କେବଳ ଅନୁଭବ କରିଥିବା ବ୍ୟକ୍ତି ହିଁ କହି ପାରିବ ଏବଂ ସେହି ବ୍ୟକ୍ତିମାନେ ଯେ ସମସ୍ତେ ଗୁଲିଖଟି ଗପ କରନ୍ତି ନାହିଁ, ଏହା ବିଶ୍ୱାସ କରିବାକୁ ପଡ଼ିବ । ସବୁ ବିଶ୍ୱାସ ଯେ ଅନ୍ଧ ବିଶ୍ୱାସ ନୁହେଁ —ଏହା ମଧ୍ୟ ସ୍ୱୀକାର କରିବାକୁ ପଡ଼ିବ ।'' (ସବୁ ସ୍ମୃତି ମଧୁର —୨୦.୧୦.୧୯୯୮ — ଭୂତ ପ୍ରେତର ପୃଥିବୀ) ।

ବାସ୍ତବିକ ବହୁ ସମାଲୋଚନାର ଶରବ୍ୟ ହୋଇଥିବା ଭୂତ-ତତ୍ତ୍ୱର କିଛି ପରିମାଣରେ ପ୍ରାସଙ୍ଗିକତା ରହିଥିବା ବିଷୟକୁ ଏଡାଇ ଦେଇ ହେବ ନାହିଁ । ହୁଏତ ଶ୍ରୀମତୀ ସ୍ମିଥ୍‌ଙ୍କ ପରି ବ୍ୟକ୍ତିମାନେ ଭୂତ-ଭୟ ଦେଖାଇ ଘର-ଭଡ଼ା ଠକିବାକୁ ଓ ଅନ୍ୟ ନିନ୍ଦନୀୟ ଯୋଜନା ଚରିତାର୍ଥ କରିବାକୁ ଉଦ୍ୟମରତ ହୋଇ ପାରନ୍ତି । ତେବେ ଆମ ମଧ୍ୟରେ ଏମିତି ଅନେକ ବିଶିଷ୍ଟ ବ୍ୟକ୍ତି ଅଛନ୍ତି, ଯେଉଁମାନେ ଭୂତର ଅସ୍ତିତ୍ୱ ଓ କାର୍ଯ୍ୟକଳାପ ସଂପର୍କରେ ନିର୍ଦ୍ଦିଷ୍ଟ ସୂଚନା ଦେଇଥାନ୍ତି । ଉଦାହରଣ ସ୍ୱରୂପ, ବିଶିଷ୍ଟ ସାହିତ୍ୟିକ ନୃସିଂହ ଚରଣ ପଣ୍ଡା ଏବଂ ତାଙ୍କର ପରଲୋକଗତ ବନ୍ଧୁ ଗାଳ୍ପିକ କୃଷ୍ଣପ୍ରସାଦ ମିଶ୍ରଙ୍କ ପ୍ରେତାତ୍ମା ସଂପର୍କିତ ଗୋଟିଏ ଘଟଣା ।

ଉତ୍କଳ ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗରେ ଏକଦା କାର୍ଯ୍ୟରତ ଥିବା ଶ୍ରୀ ମିଶ୍ରଙ୍କର ଅପେକ୍ଷାକୃତ କମ୍ ବୟସରେ ମୃତ୍ୟୁ ଘଟିଥିଲା । ତେବେ ତାଙ୍କ ମୃତ୍ୟୁର ଅଳ୍ପ କିଛି ମାସ ପରେ ସେ ଶ୍ରୀ ପଣ୍ଡାଙ୍କ ଘରେ ଦିନେ ହଠାତ୍ କୌଣସି ଏକ ରାତିରେ ପହଞ୍ଚି ନିଜ 'ସ୍ୱାଭାବିକ ଢଙ୍ଗ'ରେ ଚା' ମାଗିଲେ । ବରାଦ ମୁତାବକ ଡ୍ରଇଂରୁମ୍‌ରେ ଚା' ପରସାଯିବା ପରେ ମିଶ୍ରଙ୍କ ପ୍ରେତାତ୍ମା କପ୍‌ରୁ ଚା' ଶେଷ କରି ଦେଇ ତୁରନ୍ତ ଅଦୃଶ୍ୟ ହୋଇଗଲା । ଏହି ବର୍ଣ୍ଣନା ହୁଏତ ଆମକୁ କପୋଳକଳ୍ପିତ ମନେ ହୋଇ ପାରେ । କିନ୍ତୁ ତନ୍ତ୍ରସାଧନା କରିବା ଶ୍ରୀ ପଣ୍ଡାଙ୍କ ମନରେ ଏଥି ନେଇ ସେମିତି କିଛି ସନ୍ଦେହ ଜାତ ନ ହେବାର ଯଥେଷ୍ଟ ସମ୍ଭାବନା ରହିଛି ।

ଏମିତି ଅସ୍ୱାଭାବିକ ଘଟଣା ସେଇମାନେ ସହଜରେ ଗ୍ରହଣ କରି ପାରନ୍ତି, ଯେଉଁମାନେ କେବଳ ନିଜର ପଞ୍ଚେନ୍ଦ୍ରିୟ ଖୋଲା ରଖି ନ ଥାନ୍ତି; ନିଜର ଷଷ୍ଠେନ୍ଦ୍ରିୟକୁ ଆବଶ୍ୟକତାନୁଯାୟୀ ଆହ୍ୱାନ କରିବାକୁ ପଛେଇ ଯାଇ ନ ଥାନ୍ତି । ଉଲ୍ଲେଖନୀୟ ଯେ, ଆମ ମଧ୍ୟରୁ ଅଧିକାଂଶଙ୍କର ଷଷ୍ଠେନ୍ଦ୍ରିୟ ବିକଶିତ ଓ ଉଜ୍ଜୀବିତ ହୋଇ ନଥାଏ କିମ୍ବା, ହୋଇଥିବା ସ୍ଥଳେ, ସର୍ବଦା ସଜାଗ ଓ ଜାଗ୍ରତ ରହି ନ ଥାଏ । ତେଣୁ ଅଶରୀରୀମାନେ ଆମ ଅଭିଜ୍ଞତାର ପରିସରଭୁକ୍ତ ହୋଇ ନଥାନ୍ତି । ତେବେ ଯେଉଁ କେତେକ ମୁଷ୍ଟିମେୟ ବ୍ୟକ୍ତି ଏଥିର ବ୍ୟତିକ୍ରମ, ସେମାନଙ୍କ ମନୋବୃତ୍ତି ଉଭୟ ଜାଗତିକ ଓ ଭୌତିକ ରହସ୍ୟ ଉନ୍ମୋଚନ କରିବାରେ ସହାୟତା କରେ । ଏମିତି ଜଣେ ବ୍ୟକ୍ତି ହେଉଛନ୍ତି ପ୍ରତିଷ୍ଠିତ ମନସ୍ତତ୍ତ୍ୱବିତ୍ କାର୍ଲୟଙ୍ଗ୍ । ସେ ଏକଦା ଜଣେ ବନ୍ଧୁଙ୍କ ଅନ୍ତ୍ୟେଷ୍ଟି କ୍ରିୟାରେ ଯୋଗ ଦେବା ପରେ ଆସି ନିଜ ଘରେ ବିଶ୍ରାମ

ନେଉଥିଲେ । ସେତେବେଳେ ସ୍ୱର୍ଗତ ବନ୍ଧୁଙ୍କ ସ୍ମୃତି ତାଙ୍କ ମନକୁ ବାରମ୍ବାର ଆନ୍ଦୋଳିତ କରୁଥାଏ । ହଠାତ ତାଙ୍କ ମୃତ ବଂଧୁ ତାଙ୍କ ଆଖି ସାମନାରେ ଆବିର୍ଭୂତ ହେଲେ ଓ ତାଙ୍କୁ ଅନୁସରଣ କରିବା ପାଇଁ ଠାରିଲେ । ଏଇ ପ୍ରେତାତ୍ମା ପଛରେ ଯାଉ ଯାଉ ଯଙ୍ଗ ମୃତ ବନ୍ଧୁଙ୍କ ବ୍ୟକ୍ତିଗତ ପାଠାଗାରରେ ପହଞ୍ଚିଲେ । ସେତେବେଳେ ପ୍ରେତାତ୍ମାଟି ଗୋଟିଏ ଛୋଟ ଟେବୁଲ୍ ଉପରେ ଠିଆ ହୋଇ ବହି-ଥାକରେ ଥିବା ନାଲି ବହିଟିଏ ଦେଖାଇ ଅଦୃଶ ହୋଇଗଲା ।

ତା ପରଦିନ ଯଙ୍ଗ ବନ୍ଧୁଙ୍କ ବିଧବା ପତ୍ନୀଙ୍କୁ ଏଇ ଘଟଣାଟି କହିବା ପରେ ଉଭୟେ ପାଠାଗାରକୁ ଗଲେ ଓ ପୂର୍ବବର୍ଣ୍ଣିତ ଟେବୁଲ୍ ଉପରେ ଠିଆ ହୋଇ ନାଲି ରଂଗର ବହିଟି ବାହାର କଲେ । ସେଥିରୁ ସେ ଜାଣିଲେ ଯେ, ବହିଟି ହେଉଛି ଏମିଲି ଜୋଲାଙ୍କ 'ଲି ଲିଗାସି ଅଫ ଡେଥ୍' । ପ୍ରକାଶ ଥାଉକି, ଯଙ୍ଗ ମୃତ୍ୟୁ ପରବର୍ତ୍ତୀ ଜୀବନ ଉପରେ ଗବେଷଣା କରୁଥାନ୍ତି ଏବଂ ତାଙ୍କ ସ୍ୱର୍ଗତ ବନ୍ଧୁ କିଛି ଆନୁସଂଗିକ ସହାୟକ- ବହି ଯୋଗାଇ ଦେବା ଉଦ୍ଦେଶ୍ୟରେ ହୁଏତ ପ୍ରେତ ରୂପରେ ଏମିତି ଉପଯୋଗୀ ଘଟଣାଟିଏ ଘଟାଇ ପାରିଥାନ୍ତି ।

ପାରସ୍ପରିକ ବ୍ୟକ୍ତିଗତ ସଂପର୍କରେ ଭୂତର ଯେଉଁ ଭୂମିକା ଆମେ ବର୍ତ୍ତମାନ ଏ ଯାବତ୍ ଉଲ୍ଲେଖ କରିଛେ, ତାହା ଏକ ସୀମିତି ଆଲୋଚନା ମାତ୍ର । ଏତଦ୍‌ବ୍ୟତୀତ୍ ଭୂତପ୍ରେତର ଆମ ପାଇଁ ବହୁ ଭିନ୍ନ ଧରଣର ଅବଦାନ ମଧ୍ୟ ରହିଛି । ଏଇ ପରିପ୍ରେକ୍ଷୀରେ ଏକ ସଂପୂର୍ଣ୍ଣ ଅଜବ ଧରଣର ଖବର ଉପସ୍ଥାପନ କରାଯିବା ସମୀଚୀନ ହେବ । ଏହା ଦ୍ୱାରା କେମିତି ସାମାଜିକ ଉପକାର ସାଧିତ ହୋଇଥାଏ, ତାହା ବିଚାର୍ଯ୍ୟ । ପ୍ରକାଶ ଥାଉ କି, ଏତାଦୃଶ ଗୋଷ୍ଠୀଗତ ଉନ୍ନତି ହାସଲ କରିବାରେ ଏମିତି ଲୋକ ଆମ ଭିତରେ, ଆମ ରାଜ୍ୟ ମଧ୍ୟରେ ହିଁ, ଚଳପ୍ରଚଳ ହେଉଥିବା ବିଷୟ ଆମ କାନରେ ପଡୁଛି ।

ଜୁନ୍ ୧୯୯୧ର ଘଟଣା । ବଲାଙ୍ଗୀର ଜିଲାର କୌଣସି ଏକ ଗ୍ରାମର ହରିଜନ ବସ୍ତିରେ ଯେଉଁ ଶିକ୍ଷକ ଜଣକ କାର୍ଯ୍ୟ କରୁଥାନ୍ତି, ତାଙ୍କର ଭୂତ ପ୍ରେତରେ ଆଦୌ ବିଶ୍ୱାସ ନ ଥାଏ । ଏକଦା ସେଠାକାର ବାସିନ୍ଦା ଅନୁଭବ କଲେ ଯେ, ସେମାନଙ୍କୁ ଭୂତ ଅଥୟ କରି ଦେଉଛି । ଏଇ ଭୂତ-ଭୟ ଯୋଗୁଁ କାହାରି କାହାରି ଦେହ ଅସୁସ୍ଥ ହେଲା, କେତେକଙ୍କୁ ଅତର୍କିତ ତୁହାକୁ ତୁହା ଝାଡ଼ା ହେଲା । ଏଥିରୁ ରକ୍ଷା ପାଇବା ପାଇଁ ସେମାନେ ଗାଁ ଚାରିକଡ଼କୁ ବାଡ଼ ଦ୍ୱାରା ଘେରାଇ ରଖିଲେ । କିନ୍ତୁ ଏଇ ବାରଣକୁ ଭୂତ କାହିଁକି ମାନନ୍ତା ? ତାର ଉପଦ୍ରବ ପୂର୍ବବତ୍ ଚାଲୁ ରହିଲା । ଶେଷରେ ଗାଁ-ଲୋକେ ଶିକ୍ଷକଙ୍କ ନିକଟକୁ ଗଲେ ଓ ଭୂତକୁ ଗାଁରୁ ତଡ଼ିବା ପାଇଁ ତାଙ୍କ ପରାମର୍ଶ ଲୋଡ଼ିଲେ । ଶିକ୍ଷକ ସେମାନଙ୍କୁ ଭୂତ ଆମ ମାନସିକ ଦୁର୍ବଳତା ଯୋଗୁଁ ଜାତ ହୋଇଥାଏ ବୋଲି ବୁଝାଇଲେ ସୁଦ୍ଧା ସେମାନେ ମାନିବାକୁ ନାରାଜ । ପରିଶେଷରେ ସେ ଗୋଟିଏ ଉପାୟ ଚିନ୍ତା କଲେ । ସେ ସେମାନଙ୍କୁ କହିଲେ, ''ଦେଖ ! ଯେଉଁ ସ୍ଥାନ ସଫା ଥାଏ, ସେଠାରେ ଦେବତାମାନେ ବିଚରଣ କରନ୍ତି । ସେମାନେ

ମଙ୍ଗଳକାରୀ ଅଟନ୍ତି... ଆଉ ଯେଉଁ ସ୍ଥାନ ଅପରିଷ୍କାର ତଥା ଦୁର୍ଗନ୍ଧପୂର୍ଣ୍ଣ ଥାଏ, ସେଠି ଦେବତା ପରିବର୍ତ୍ତେ ଭୂତ ପ୍ରେତ ବିଚରଣ କରନ୍ତି । ତମ ବସ୍ତିଟି ଅତ୍ୟନ୍ତ ମଇଳାପୂର୍ଣ୍ଣ ହୋଇଛି । କେହି ସଫାସୁତରା ରହୁନାହାନ୍ତି । ତେଣୁ ଭୂତପ୍ରେତ ବିଚରଣ ନ କରି ଆଉ କଣ ଦେବତା ବିଚରଣ କରନ୍ତେ ? ଯଦି ପ୍ରେତକୁ ତଡ଼ିବା ପାଇଁ ଇଚ୍ଛା ଥାଏ, ତେବେ ସମସ୍ତ ଘର ଦ୍ୱାରା ଆଉ ଗାଁ ଚାରିପଟ ସଫା କର । ମୁଁ ରାତିରେ ଆସି ପ୍ରେତ ଘଉଡ଼ାଇବି ।''

ଲୋକେ ତାଙ୍କ କଥା ମାନି ଗାଁ ସାରା ନିର୍ମଳ କରିବା ପରେ ଶିକ୍ଷକ ମହାଶୟ ଲୋକଙ୍କ ମନରେ ବିଶ୍ୱାସ ଜାତ କରାଇବା ପାଇଁ ସେଦିନ ରାତିରେ ଧୂପଦୀପ ଝୁଣା ଇତ୍ୟାଦି ଦେଇ ଗାୟତ୍ରୀ ମନ୍ତ୍ର ଜପ କଲେ ଓ ବିଭିନ୍ନ ଶ୍ଳୋକ ପାଠ କଲେ । ପରିଶେଷରେ ସେ ଲୋକଙ୍କୁ ସତର୍କତାମୂଳକ ଉପଦେଶ ଦେଲେ, ''ମୁଁ ପ୍ରେତକୁ ବର୍ତ୍ତମାନ ମନ୍ତ୍ର ପଢ଼ି ତଡ଼ି ଦେଇଛି । କିନ୍ତୁ ତୁମମାନଙ୍କୁ ସାବଧାନ କରାଇ ଦେଉଛି ଯେ, ଏଣିକି ବସ୍ତିକୁ ମଇଳା କରିବ ନାହିଁ । ଖାଇବା ବେଳେ ଓ ରାତିରେ ଶୋଇବା ପୂର୍ବରୁ ହାତ ଗୋଡ଼ ଧୋଇବ । ଗାଁରେ ମଦ ପୂରାଇ ଦେବ ନାହିଁ । ଆଉ କିଏ ଯଦି ଏହାର ବ୍ୟତିକ୍ରମ କରାଏ, ତେବେ ମୋ ମନ୍ତ୍ର ଆଦୌ ଲାଗୁ ହେବ ନାହିଁ ।'' ସେତେବେଳେ ବସ୍ତିବାଲାଏ ସର୍ବସମ୍ମତି କ୍ରମେ ଶିକ୍ଷକଙ୍କୁ ମାନିବେ ବୋଲି ପ୍ରତିଶ୍ରୁତି ଦେଲେ । ସୁଖର ବିଷୟ ଯେ, ସେଦିନ ରାତିରେ ସମସ୍ତେ କୌଣସି ଭୂତ-ଉପଦ୍ରବର ସୂଚନା ପାଇଲେ ନାହିଁ ଓ ବେଶ୍ ଆରାମରେ ରାତି ସାର ଶୋଇ ପାରିଲେ ।

ଏଇ ସମ୍ବାଦଟି ସତ ନାଁ ମିଛ-ଆମେ ତଦନ୍ତ କରି ନାହୁଁ । କିନ୍ତୁ ଆମର କାମନା,ଏହା ସତ ହୋଇଥାଉ ।

ଆମେ ଜାଣିବାରେ ଆଗ କାଳରେ ଭୂତ ଭୟ ଯୋଗୁଁ ଲୋକମାନେ ତୁହାକୁ ତୁହା ଝାଡ଼ା ଯାଇ ପ୍ରାଣ ହରାଉ ଥିଲେ । ମାତ୍ର ପୂର୍ବୋକ୍ତ ଗାଁ ପରି ଜନବସତିମାନଙ୍କରେ ଆଜିକାଲିର ଭୂତ-ଭୟରୁ ଲୋକେ ଯତ୍ରତତ୍ର ଝାଡ଼ା ଫେରି ଯିବା ବଂଦ କରି ଅକାଳ ମୃତ୍ୟୁକୁ ଏଡ଼ାଇ ପାରୁଛନ୍ତି ! ଏଇ ଶୁଭଙ୍କର ପରିସ୍ଥିତିକୁ ଲକ୍ଷ୍ୟ କରି ସମାଜର ଶୁଭଚିନ୍ତକ ଜ୍ଞାନୀ ଓ ବିଜ୍ଞାନୀମାନେ କହିବା ଆରମ୍ଭ କଲେଣି ଯେ, ଭୂତ ବହୁତ-ବହୁତ ଅଧିକ ବର୍ଷ ବଂଚୁ ଓ ମଣିଷ ପରି ତାର ଆୟୁଷ ସୀମିତ ହୋଇ ନ ଯାଉ !



# କୋଇଲି କଣ୍ଠରେ କା' କା'

ଆଗାମୀ ଦିନରେ ସୁର-ସାମ୍ରାଜ୍ଞୀ କିଏ ହେବ ?

ଆମେ ଜାଣୁଁ ଯେ ବର୍ତ୍ତମାନ ଲତା ମଂଗେଶକର ଏଇ ସ୍ଥାନ ଅଧିକାର କରିଛନ୍ତି । ଏହା ପଛରେ ରହିଛି ତାଙ୍କର ସୁଲଳିତ ସ୍ୱର-ଯାହାକି କୋଇଲିର କୁହୁ ତାନ ସହିତ ତୁଳନୀୟ । ଏଇ କାରଣରୁ ବହୁ ଶ୍ରୋତା ତାଙ୍କୁ ନିଃସନ୍ଦେହରେ କୋକିଳ-କଣ୍ଠୀ ବୋଲି ବିବେଚନା କରୁଛନ୍ତି ।

ବାସ୍ତିବିକ ସୁର-ସାମ୍ରାଜ୍ଞୀ ପଦବୀର ଦାବିଦାର ହେବା ପାଇଁ ଜଣେ କୋଇଲିର ଶ୍ରୁତି ମଧୁର କଣ୍ଠସ୍ୱର ଅକ୍ତିଆର କରିବା ଉଚିତ ବୋଲି ସର୍ବସାଧାରଣ ମତ ଦେବେ । କିନ୍ତୁ ପ୍ରଶ୍ନ ଉଠୁଛି: ଆମର ଏଇ ଧାରଣା କଣ ବାସ୍ତବରେ ସଂପୂର୍ଣ୍ଣ ଭାବେ ଦୋଷମୁକ୍ତ ? ପ୍ରକୃତରେ ଭବିଷ୍ୟତର କୋଇଲି କଣ ତାର ପୂର୍ବଜଙ୍କ ପରି କୁହୁତାନ କରିବାରେ ସକ୍ଷମ ହେବ ? ଯଦି ଆଗାମୀ ଦିନ କୋଇଲି କାଉ ପରି କର୍କଶ ସ୍ୱର ଆପଣେଇବ, ତାହାହେଲେ ସୁର-ସାମ୍ରାଜ୍ଞୀ ହେବାକୁ ଏଇ ପତନୋନ୍ମୁଖୀ କୋକିଳ- କଣ୍ଠ କଣ ଗ୍ରହଣୀୟ ହେବ ?

ତେବେ ଭବିଷ୍ୟତରେ କୋଇଲି ପରି ମଣିଷ ସମେତ ବହୁ ସୁର ପ୍ରଧାନ ଜୀବଜନ୍ତୁଙ୍କର ସ୍ୱରରେ ମଧୁରତା ହ୍ରାସ ପାଇବା ସଂପର୍କରେ ଆମ ମନରେ ଏଇ ଯେଉଁ ଆଶଙ୍କା ଜନ୍ମୁଛି, ତାରି ପଛରେ କିଛି ନିର୍ଦ୍ଦିଷ୍ଟ ପୃଷ୍ଠଭୂମି ଅବଶ୍ୟ ରହିଛି । ସେଇ ବିଷୟରେ କିଛି ଆଲୋଚନା କରାଯାଇପାରେ ।

ଏହି ମର୍ମରେ ଆମେ କାକ-ଦ୍ୱୀପ (କ୍ରୋ-ଆଇଲ୍ୟାଣ୍ଡ) ପ୍ରସଙ୍ଗ ଉତ୍‌ଥାପନ କରିବା । ଭାରତ ମହାସାଗରସ୍ଥିତ, କଲମ୍ବୋ ନିକଟସ୍ଥ ଏହି ଭୂଖଣ୍ଡରେ ଏକଦା କାଉମାନେ ବହୁ ସଂଖ୍ୟାରେ ବସବାସ କରୁଥିଲେ । କିନ୍ତୁ ଲୋକସଂଖ୍ୟା ବୃଦ୍ଧିଜନିତ ସ୍ଥାନାଭାବରୁ ଶ୍ରୀଲଙ୍କାରେ ଅନେକ ବାସିନ୍ଦା ବର୍ତ୍ତମାନ କାକ ଦ୍ୱୀପରେ ଜନବସତି ବସାଇବା ଆରମ୍ଭ କରିଛନ୍ତି । ଫଳରେ କାଉମାନଙ୍କର ସ୍ଥିତି ସେମାନଙ୍କର ଯୁଗ ଯୁଗର ଭିଟାମାଟି କାକଦ୍ୱୀପରେ ସଂକଟାପନ୍ନ ହେଲାଣି । କାଉମାନେ ବାଧ ହୋଇ କଲମ୍ବୋ ସହର ମଧକୁ କ୍ରମଶଃ ପ୍ରବେଶ କରି ସହରରେ ନିଜ ଆଡ୍‌ଡା ବର୍ତ୍ତମାନ ଜମାଇଲେଣି । କଲମ୍ବୋ ପକ୍ଷୀକ୍ଲବର ମୁଖପାତ୍ର ୫୫ ବର୍ଷ ବୟସ୍କ ଉସମେଥ୍ ରହମ୍‌ଙ୍କ କହିବା ଅନୁସାରେ ୫ ବର୍ଷ ପୂର୍ବେ ଏକ ଲକ୍ଷ କୁଆ କଲମ୍ବୋରେ

ବସବାସ କରୁଥିଲେ । କିନ୍ତୁ କ୍ରୋ-ଆଇଲ୍ୟାଣ୍ଡରେ ସେମାନଙ୍କ ବାସସ୍ଥାନ ନଷ୍ଟଭ୍ରଷ୍ଟ ହୋଇଯିବା ଯୋଗୁଁ ମୋନଙ୍କ ସଂଖ୍ୟା ୫ ଗୁଣ ବଢ଼ି ବର୍ତ୍ତମାନ କଲମ୍ବୋରେ ୫ ଲକ୍ଷରେ ପହଞ୍ଚିଲାଣି । ଫଳରେ ଏଇ ସହରରେ ସେମାନଙ୍କ ଉପଦ୍ରବ କ୍ରମଶଃ ଅସହ୍ୟ ହେବାରେ ଲାଗିଛି । ଯଥା: ୧୯୯୮ ରେ ଏକଦା କଲମ୍ବୋର ଏକ ଷ୍ଟାଡିୟମ୍‌ରେ କ୍ରିକେଟ ଖେଳ ଚାଲିଥିଲା । ସେତେବେଳେ ଶତାଧିକ କାଉ ପଡ଼ିଆରେ ପ୍ରବେଶ କରି, ସେଠାରେ ଇତସ୍ତତଃ ଭାବେ ପଡ଼ିଥିବା ଅଧାଖିଆ ପାଉଁରୁଟି, ଅନ୍ୟ ଖାଦ୍ୟାବଶେଷ ଖାଇବାରେ ବ୍ୟସ୍ତ ରହିଲେ । ତେଣୁ ବାଧ ହୋଇ କର୍ତ୍ତୃପକ୍ଷ କିଛି ସମୟ ଯାଏଁ ଖେଳ ସ୍ଥଗିତ ରଖିଲେ ।

ଅନ୍ୟ ଏକ ଅଭାବନୀୟ ଘଟଣା ଘଟିଥିଲା—ଯେତେବେଳେ ସେଓ ଇତ୍ୟାଦି ପାଚିଲା ଫଳ ବୋଝେଇ ଆଷ୍ଟ୍ରେଲିଆର ଗୋଟିଏ ଜାହାଜ ସମୁଦ୍ର କୂଳରେ ଲାଗିଲା । ସେଇ ସମୟରେ ଏଇ ଅବାଧ କାକବାହିନୀ ଜାହାଜକୁ ଘେରି ଯାଇ ଫଳପ୍ୟାକେଟଗୁଡ଼ିକ ଖୋଳି ତାଡ଼ି ଧ୍ୱସ୍ତବିଧ୍ୱସ୍ତ କରି ପକାଇଲେ, ଯେଉଁଥିପାଇଁ ନିରାପତ୍ତା ରକ୍ଷୀମାନଙ୍କୁ ଏକାଧିକବାର ଫାଙ୍କା ଗୁଳିଚାଳନା କରିବାକୁ ପଡ଼ିଥିଲା । ଏତଦ୍‌ବ୍ୟତୀତ ଏଇ ଖାଦ୍ୟଲୋଭୀ ଦୁଷ୍ଟ ନିର୍ଦ୍ଦୟ କାଉଗୁଡ଼ିକ ଅନ୍ୟ ପକ୍ଷୀମାନଙ୍କର ବସାରେ ପ୍ରବେଶ କରି ସେମାନଙ୍କ ଅଣ୍ଡା ଓ ଛୁଆଗୁଡ଼ିକୁ ଖାଇ ଦିଅନ୍ତି କିମ୍ବା ମାରି ପକାନ୍ତି । ବିଶେଷତଃ ବିଭିନ୍ନ ବଗିଚା ଓ ପାର୍କମାନଙ୍କରେ ଉଡ଼ିବୁଲୁଥିବା ରଂଗବେରଂଗ ଝିଣ୍ଟିକା ଓ କୀଟ ପତଙ୍ଗ ସେମାନଙ୍କର ସହଜ ଶୀକାର ହୋଇଥାନ୍ତି । ଏପରିକି ଠେକୁଆ, ନେଉଳ, ବିରାଡ଼ି ଛୁଆ ମଧ୍ୟ ସେମାନଙ୍କ ଆକ୍ରମଣରୁ ରକ୍ଷା ପାଉ ନାହାନ୍ତି ।

ଏହି କାଉମାନେ କଲମ୍ବୋରୁ ଶୀଘ୍ର ବିଦାୟ ନେବାର କୌଣସି ସୂଚନା ମିଳୁନାହିଁ । ବିଶେଷତଃ ସେମାନଙ୍କୁ ଅଢ଼େଇ ମିଲିଅନ୍ କଲମ୍ବୋବାସୀଙ୍କ ଦ୍ୱାରା ଫୋପଡ଼ା ଯାଉଥିବା ଖାଦ୍ୟ ସାମଗ୍ରୀ ପ୍ରଚୁର ପରିମାଣରେ ମିଳୁଥିବାରୁ ସେମାନେ ଆକଣ୍ଠ ଭୋଜନ କରି ସମଗ୍ର ନଗରୀକୁ କର୍କଶ କା' କା' ରାବରେ ଥରକୁ ଥର ଥରହର କରି ଦେଉଛନ୍ତି ।

ସେଠାକାର ସ୍ଥାନୀୟ ପରିବେଶର ଏତାଦୃଶ ଅସନ୍ତୁଳନର ମୂଳ କାରଣ ହେଉଛି କ୍ରୋ-ଆଇଲ୍ୟାଣ୍ଡରେ ଲକ୍ଷାଧିକ ଲୋକଙ୍କର ଇତ୍ୟବସରରେ ନୂତନ ବସତି ନିର୍ମାଣ । ଯାହାହେଉ, ଏହାର ସୁଦୂର ପ୍ରସାରୀ କୁପରିଣାମ ସଦୃଶ ମଣିଷର ଅନ୍ୟ ବହୁଦିଗରୁ ଅବମୂଲ୍ୟାୟନ ଘଟିଛି । ଦିନ ରାତି ବେଳ ଅବେଳରେ ଏଇ ଅସଂଖ୍ୟ ଅନୁପ୍ରବେଶକାରୀ କାଉମାନଙ୍କର ରୁକ୍ଷ କା' କା ଶବ୍ଦରେ ସହରବାସୀଙ୍କର ଶ୍ରବଣେନ୍ଦ୍ରିୟ ଓ ଶବ୍ଦଶକ୍ତି ଉପରେ ଚାପ ଓ କୁପ୍ରଭାବ ପଡୁଛି । କର୍କଶ ଶବ୍ଦ ସହିତ ଇତ୍ୟବସରରେ ଅଭ୍ୟସ୍ତ ହେବା ଯୋଗୁଁ ମଧୁର ସ୍ୱରର ସଂଜ୍ଞା ଓ ପ୍ରତ୍ୟକ୍ଷ ସ୍ୱରୂପ ବୋଧହୁଏ ସେମାନେ ଭୁଲିବାରେ ଲାଗିଲେଣି । କର୍କଶ ସ୍ୱର ହିଁ ମଣିଷ ପାଇଁ ସ୍ୱାଭାବିକ ଓ ଆବଶ୍ୟକ ବୋଲି ଦିନେ ସେମାନେ ସ୍ୱୀକାର କରିବାକୁ ଉଚିତ ମନେ କରିବେ ।

ଏତାଦୃଶ ଅଶୁଭ ପରିଣତିର ପରୋକ୍ଷ ପ୍ରମାଣ ଆମେ ଅନ୍ୟାନ୍ୟ ଦୃଷ୍ଟାନ୍ତରୁ ମଧ ପାଉଁ । ଜଂଗଲ ଓ ପ୍ରକୃତି ସଂପର୍କରେ କୌଣସି ଏକ ଡଚ୍ ପ୍ରତିଷ୍ଠାନରେ ଡକ୍‌ଟର ପିଟ୍ ବର୍ଗରସ ଗବେଷଣାରତ । ସେ ବ୍ରିଟେନ୍‌ର ରାସ୍ତା କଡ଼ ଅଞ୍ଚଳରେ ଥିବା ପକ୍ଷୀମାନଙ୍କ ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିବାକୁ ଗୋଟିଏ ଯୋଜନା କଲେ । ତଦନୁସାରେ ସେ ରାସ୍ତାକଡ଼ ଇଲାକାକୁ ତିନି ଭାଗରେ ବିଭକ୍ତ କଲେ । ଯଥା: (୧) ଜନ ଗହଳିପୂର୍ଣ୍ଣ ରାସ୍ତା (୨) ଅପେକ୍ଷାକୃତ କମ୍ ଗହଳିପୂର୍ଣ୍ଣ ରାସ୍ତା (୩) ଜନଗହଳି ମୁକ୍ତ ଶାନ୍ତ ରାସ୍ତା ।

ଜାନୁଆରୀ ୧୯୯୯ରେ କରାଯାଇଥିବା ଉକ୍ତ ସର୍ବେକ୍ଷଣରୁ ଡକ୍ଟର ବର୍ଗରସ୍ ଜାଣିପାରିଲେ ଯେ, ପ୍ରଥମ ବିଭାଗୀୟ ଭିଡ଼ ରାସ୍ତାରେ ଅତ୍ୟଧିକ ଯାନବାହାନ ଚଳାଚଳ ଯୋଗୁଁ ଶବ୍ଦ ପ୍ରଦୂଷଣର ମାତ୍ରା ଅଧିକ ହୁଏ । ତେଣୁ ହଳଦୀବସନ୍ତ, ବଣକୁଜନ ପରି ଗାୟକ ପକ୍ଷୀମାନେ ଅତିଶୟ କ୍ଷତିଗ୍ରସ୍ତ ହେଉଛନ୍ତି । ସେମାନେ ନିଜର ସୁମଧୁର ସ୍ୱର ଭୁଲି ଯାଇ ଯାନବାହନର ଉତ୍କଟ ରୁକ୍ଷ ସ୍ୱରକୁ ଅନୁକରଣ କରୁଛନ୍ତି କିମ୍ବା ତାକୁ ତୀବ୍ରତାରେ ବଳିଯିବା ପାଇଁ ଚେଷ୍ଟା କରୁଛନ୍ତି । ଫଳରେ ସେମାନଙ୍କ ସ୍ୱରତନ୍ତ୍ରୀ କେବଳ ବିକୃତ ହେଉନାହିଁ; ସେମାନେ ଯୌନ ସମ୍ଭୋଗର ସୁଖରୁ ମଧ ବଂଚିତ ହେଉଛନ୍ତି, କାରଣ ପକ୍ଷୀମାନେ ସାଧାରଣତଃ ନିଜ ସ୍ୱର ଦ୍ୱାରା ପରସ୍ପରକୁ ଯୌନ ସଂପର୍କ ପାଇଁ ନିବେଦନ କରିଥାନ୍ତି । ସହରାଂଚଳର ଭିଡ଼ରେ ଧ୍ୱନି-ବିଶୃଙ୍ଖଳା ଉତ୍କଟ ହେଉଥିବା ଯୋଗୁଁ ପକ୍ଷୀମାନଙ୍କର ଈଶ୍ୱର ଦତ୍ତ ଚିରାଚରିତ ସ୍ୱରରେ ବିଭ୍ରାଟ ଘଟେ, ତେଣୁ ସେମାନେ ସ୍ୱର-ବିକୃତି ଓ ତତ୍‌ସଂପର୍କିତ ମାତ୍ରା ବୃଦ୍ଧିରେ ଭିନ୍ନତା କାରଣରୁ ନିଜ ଜାତିର ପକ୍ଷୀମାନଙ୍କୁ ଚିହ୍ନଟ କରି ପାରି ନ ଥାନ୍ତି ଏବଂ ଶାରୀରିକ ମିଳନରୁ ବଂଚିତ ହୁଅନ୍ତି ।ଡକ୍ଟର ବର୍ଗରସ୍‌ଙ୍କ ସୂଚନା ଅନୁଯାୟୀ ଦୈନିକ ଦଶହଜାର କାର୍ ଚଳାଚଳ କରୁଥିବା ରାସ୍ତାରେ ଦୁଇ କଡ଼ର ଦୁଇ ମାଇଲ ବ୍ୟାପୀ ଇଲାକାରେ ରହୁଥିବା ପକ୍ଷୀମାନଙ୍କର ବଂଶବୃଦ୍ଧି ଆଶାନୁରୂପ ହୋଇ ନଥାଏ । ଯଦି ଏଇ ଗାଡ଼ି ସଂଖ୍ୟା ୬୦ ହଜାରକୁ ବୃଦ୍ଧି ପାଏ, ତାହାହେଲେ ପକ୍ଷୀ-ଜନ୍ମହାରରେ ହ୍ରାସ ସମେତ ସେମାନଙ୍କ ସ୍ୱାଭାବିକ ଚାଲିଚଳନ ଓ ଆଚାର ବ୍ୟବହାର ମଧ ସଂକଟାପନ୍ନ ହେବ ।

ଆମ ସମାଜରେ ଗଡ଼ି ଓ ପାଟିତୁଣ୍ଡର ବର୍ଦ୍ଧିଷ୍ଣୁ ହାର ଯୋଗୁଁ କେବଳ ପକ୍ଷୀମାନଙ୍କର ସ୍ୱରରେ ରୁକ୍ଷତା ବଢୁ ନାହିଁ; ମଣିଷର ମଧ ସୁର-ବିବେଚନା-ଶକ୍ତି ବା ସାମର୍ଥ୍ୟରେ ଅଧୋଗତି ଘଟୁଛି, ଯାହାଦ୍ୱାରା ମଣିଷ ରୁକ୍ଷଗଳା ସହିତ କେବଳ ଅଭ୍ୟସ୍ତ ହେଉ ନାହିଁ; ନିଜେ କର୍କଶ ଭାବେ କହିବା ଓ ଶୁଣିବା ପାଇଁ ବିନା ଦ୍ୱିଧାରେ ଆଗଭର ହୋଇ ଯାଉଛି ।

ଯୁଗ-ଅବକ୍ଷୟର ଏତାଦୃଶ ସୂଚନା ଜନ୍ ଲେନନ ଯଦି ପୂର୍ବରୁ ପାଇଥାନ୍ତେ ତାହା ହେଲେ ତାଙ୍କ କାର୍ଯ୍ୟକଳାପ ହୁଏତ ସଂପୂର୍ଣ୍ଣ ଭାବେ ଓଲଟା ମୋଡ଼ ନେଇଥାନ୍ତା । ପ୍ରକାଶ ଥାଉକି, ଲେନନ ହେଉଛନ୍ତି ବିଂଶ ଶତାବ୍ଦୀର ଜଣେ ଗାୟକ । ଏଇ ଦିବଂଗତ ସୁର-ସମ୍ରାଟ ଜଣକ ୧୯୮୦ରେ ନ୍ୟୁୟର୍କ ସହରରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

ପ୍ରସିଦ୍ଧ ମ୍ୟାଗାଜିନ "ମୋଜୋ" ତରଫରୁ ୧୪.୪.୧୯୯୯ ତାରିଖରେ ଏଇ ଶତାବ୍ଦୀର ଶ୍ରେଷ୍ଠ ଶହେ ଜଣ ଗାୟକଙ୍କର ସୂଚୀ ପ୍ରସ୍ତୁତ କରିବା ପାଇଁ ଯେଉଁ ସର୍ଭେ କରାଯାଇଥିଲା, ସେଥିରେ ଆରେଥା ଫ୍ରାଙ୍କଲିନ୍ ଫ୍ରାଙ୍କ୍ ସିନେତ୍ରା, ଓ ରେ' ଚାର୍ଲ୍ସ ପ୍ରଥମ ତିନୋଟି ସ୍ଥାନ ହାସଲ କରିଥିଲେ। ଚତୁର୍ଥ ସ୍ଥାନ ୨୦ ବର୍ଷ ପୂର୍ବରୁ ପରଲୋକଗତ ଜନ୍‌ଲେନନଙ୍କୁ ମିଳିଥିଲା। ଲେନନଙ୍କ ନାମ ଏଥି ପାଇଁ ସ୍ୱତନ୍ତ୍ର ଭାବେ ଉଲ୍ଲେଖଯୋଗ୍ୟ ଯେ, ବାଲ୍ୟାବସ୍ଥାରେ ତାଙ୍କ କଣ୍ଠସ୍ୱର ଅତି ରୂକ୍ଷ ଥିଲା। ସେ ଗୀତ ଗାଇବା ମାତ୍ରେ ତାଙ୍କର ଖୁଡ଼ି ନିଜ କାନରେ ଆଙ୍ଗୁଠି ପୂରାଇ, ପାଟି କରି ଲେନନଙ୍କୁ ଶୀଘ୍ର ଚୁପ୍ ରହିବାକୁ ଆଦେଶ ଦେଉଥିଲେ; କାରଣ ଲେନନଙ୍କ କଣ୍ଠ ଫଟା ବାଇଦଠାରୁ ମଧ୍ୟ ଅଧିକ କର୍କଶ ଥିଲା। ଜ୍ଞାତି କୁଟୁମ୍ବ, ସାହି ପଡ଼ୋଶୀଙ୍କ କଟୁ ଆଲୋଚନା ସତ୍ତ୍ୱେ କିଶୋର ଲେନନ ହତୋତ୍ସାହିତ ନ ହୋଇ କଠିନ ପରିଶ୍ରମ ଓ ନିରବଚ୍ଛିନ୍ନ ସାଧନାରେ ନିମଜ୍ଜିତ ରହିଲେ। ଫଳରେ ପରବର୍ତ୍ତୀ କାଳରେ ସେ ନିଜ ସ୍ୱରର କର୍କଶତାକୁ ବିଲୋପ କରି ତାକୁ ଆକର୍ଷଣୀୟ ତଥା କୋମଳ ସୁରରେ ରୂପାନ୍ତରିତ କଲେ, ଯାହା ଦ୍ୱାରା ସେ ବିଶ୍ୱର ଶ୍ରେଷ୍ଠ ଗାୟକଙ୍କ ମଧ୍ୟରେ ନିଜ ପାଇଁ ଶୀର୍ଷ ସ୍ଥାନ ସୃଷ୍ଟି କରିପାରିଲେ।

କିନ୍ତୁ ଏକବିଂଶ ଶତାବ୍ଦୀରେ ଜନ୍ମ ହୋଇଥିଲେ ନିଜ ବାଲ୍ୟ-ସ୍ୱରକୁ ଓଲଟାଇବାକୁ ତାଙ୍କୁ ହୁଏତ ଆଦୌ ଆପ୍ରାଣ ଚେଷ୍ଟା କରିବାକୁ ପଡ଼ି ନଥାନ୍ତା। ସେ କେବଳ ନିଜ ଜନ୍ମଗତ ରୂକ୍ଷ କଣ୍ଠସ୍ୱରର ରୂକ୍ଷତାର ମାତ୍ରାକୁ ସହଜରେ ବଢ଼ାଇ ଚାଲି ଥାନ୍ତେ ଏବଂ ଦିନେ ସାମାନ୍ୟ ପରିଶ୍ରମରେ ଶ୍ରେଷ୍ଠ ଗାୟକ ହୋଇ ପାରିଥାନ୍ତେ।

ପ୍ରିୟ ପାଠକେ ! ଆଗାମୀ ଦିନର ସଂଗୀତ-ଆସରର ପରିକଳ୍ପନା କରିବା ପାଇଁ ବର୍ତ୍ତମାନ ବେଳ ଉପନୀତ ହେଲାଣି। ଆପଣମାନେ ଭାବନ୍ତୁ ଯେ, ଏଇ ଆସର ପାଇଁ ଏମିତି ଗୋଟିଏ ଷ୍ଟେଜ୍ ଦରକାର ଯେଉଁଠି କୋଇଲି ନିଜ କୁହୁତାନ ଭୁଲି ଯାଇ କାଉପରି କା' କା' ଶବ୍ଦରେ ଚତୁର୍ଦ୍ଦିଗ ହୁଲସ୍ଥୁଲ କରି ପକାଉଥିବ। ତାକୁ ଉତ୍ତମ ସହଯୋଗ ଦେବା ପାଇଁ ଦୁଇ ଚାରୋଟି ଗଧ ଥରକୁ ଥର ରଡ଼ି ଛାଡ଼ି ଗଗନ-ପବନ ମୁଖରିତ କରୁଥିବେ। ଆଗାମୀ ଦିନର ସୁରସାମ୍ରାଜ୍ଞୀ କାଉ ଓ ସୁରସମ୍ରାଟ ଗଧକୁ ଅପଣ ଆଜିଠୁଁ ସମ୍ମାନ ଦିଅନ୍ତୁ।

ପାଠକମାନେ ହୁଏତ ମନେ କରି ପାରନ୍ତି ଯେ ଉକ୍ତ ଅର୍କେଷ୍ଟ୍ରାର ପରିବେଶରେ ଦର୍ଶକ-ଗ୍ୟାଲେରୀ କିମ୍ବା ଶ୍ରୋତା-ମଣ୍ଡଳୀରେ ସମସ୍ତେ ତ୍ରାହି ତ୍ରାହି ଡାକଛାଡ଼ି ହଲ୍ ଛାଡ଼ି ତୁରନ୍ତ ପଳାଇ ଯିବେ। କିନ୍ତୁ ଆମର ମତ ଓଲଟା। ଆମେ ଅନୁମାନ କରୁଛୁ ଯେ, କା' କା' ତଥା ଗଧରଡ଼ିର ଅପୂର୍ବ କୋଳାହଳ ମଧ୍ୟରେ ଦର୍ଶକମାନଙ୍କ ମଧ୍ୟରୁ ଅବଶ୍ୟ କେତେକ ଗଜା ଟୋକା ଅପୂର୍ବ ଉତ୍ସାହରେ ଉତ୍‌ଫୁଲ୍ଲିତ ହୋଇ ନାଚିବା ଓ କୁଦିବା ଆରମ୍ଭ କରିବେ ଯାହା ବର୍ଣ୍ଣନା କରିବା ପାଇଁ 'ମିଶ୍ରରାଗ' ସ୍ତମ୍ଭର ଲେଖକ ଶ୍ରୀ ବିଭୂତି ମିଶ୍ରଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ :

"ଆଜି କାଲି ନାଚ ବୋଇଲେ ବେକକୁ କଇଁଚ ଭଳି ଦୁଇଚାରି ଥର କାଢ଼ିବା; ଭିଡ଼ି ମୋଡ଼ି ହେବା, ହାତକୁ ବିଭିନ୍ନ ପ୍ରକାରେ ହଲାଇବା ଯେମିତିକି କେମ୍ପା ଲୋକଟାଏ; ଗୋଡ଼କୁ ଛାଟିବା ଯେମିତିକି ଛୋଟାଟାଏ; ଦେହର ବିଭିନ୍ନ ଅଂଶରେ ଭାଙ୍ଗ ପକାଇବା ଓ ମୁହଁକୁ ବିକୃତ କରିବା ଯେମିତିକି ମନେ ହେବ ଲୋକଟିର ମସ୍ତିଷ୍କ ବିକୃତି ଅଛି । ପାଶ୍ଚାତ୍ୟରୁ ଆମଦାନୀ ବ୍ରେକ୍ ଡ୍ୟାନ୍ସ- ବୋଧହୁଏ ଡ୍ୟାନ୍ସକୁ ବ୍ରେକ୍ କରେ ବୋଲି ।" (୨୪.୧.୯୬) ।

ତେବେ ଅନ୍ୟ ଶ୍ରୋତା-ଦର୍ଶକମାନଙ୍କ ହାଲତ୍ ସେତେବେଳେ କଣ ହୋଇପାରେ ? ପ୍ରଖ୍ୟାତ ବଂଶୀବାଦକ ହରିପ୍ରସାଦ ଚୌରାଶିଆଙ୍କ ସୁଯୋଗ୍ୟ ଶିଷ୍ୟ ପଶୁପତି ନାଥ ଆର୍ଯ୍ୟ ନଭେମ୍ବର ୧୯୯୭ରେ ନିଜ ଅଭିଜ୍ଞତା ଓ ଅନୁଧ୍ୟାନକୁ ଭିତ୍ତି କରି ସୂଚନା ଦେଇଥିଲେ ଯେ, ଯେଉଁମାନେ ଆଧ୍ୟାତ୍ମିକ ସଂଗୀତର ସୁଲଳିତ କଣ୍ଠ ଶୁଣନ୍ତି, ସେମାନେ ସୁନ୍ଦର ସ୍ୱାସ୍ଥ୍ୟ ଲାଭ କରନ୍ତି । ଅବଶ୍ୟ ଉଚ୍ଚସ୍ୱରର ସଂଗୀତ ଶ୍ରବଣ ଶ୍ରୋତାଙ୍କ ସ୍ୱାସ୍ଥ୍ୟ ବିପନ୍ନ କରିଥାଏ ବୋଲି ମଧ୍ୟ ସେ ଦୃଢ଼ ମତ ବ୍ୟକ୍ତ କରିଥିଲେ ।

ତେଣୁ ଆଗାମୀ ଦିନର ଉପରୋକ୍ତସଂଗୀତ-ଆସରରେ ଶ୍ରୋତାଙ୍କର ସ୍ୱାସ୍ଥ୍ୟୋନ୍ନତି ସଂପର୍କରେ କୁହାଯାଇ ପାରେ ଯେ, ଅନ୍ୟମାନଙ୍କର ଯାହା କିଛି ହେଉ ନାଁ କାହିକି, ସେମାନଙ୍କ ମଧ୍ୟରୁ ଯେଉଁମାନେ ଦାନବ କିମ୍ୱା ଅନ୍ତତଃ ପକ୍ଷେ ମଣିଷ ରୂପୀ ଦାନବ, ସେମାନଙ୍କ କ୍ଷେତ୍ରରେ ସ୍ୱାସ୍ଥ୍ୟୋନ୍ନତି ନିଶ୍ଚିତ ଘଟିବ ।



